ରବି ରାୟଙ୍କ ୯୦ତମ ଜନ୍ମଦିବସ ଉପଲକ୍ଷେ



# ରବି ରାୟ :

## ମୁଁ ଯେପରି ଜାଣେ

ଲୋହିଆ ଏକାଡେମୀ ଟ୍ରଷ୍ଟ, ଭୁବନେଶ୍ୱର

# ରବି ରାୟ : ମୁଁ ଯେପରି ଜାଣେ

(ରବି ରାୟଙ୍କ ୯୦ତମ ଜନ୍ମଦିବସ ଉପଲକ୍ଷେ)

ସମ୍ପାଦନା

ଅଧ୍ୟାପକ ସମୀର କୁମାର ରାଉତ

ଲୋହିଆ ଏକାଡ଼େମୀ ଟ୍ରଷ୍ଟ

ଭୁବନେଶ୍ୱର

# ରବି ରାୟ : ମୁଁ ଯେପରି ଜାଣେ
(ରବି ରାୟଙ୍କ ୯୦ତମ ଜନ୍ମଦିବସ ଉପଲକ୍ଷେ)

**ସମ୍ପାଦନା**
ଅଧ୍ୟାପକ ସମୀର କୁମାର ରାଉତ

*ପ୍ରକାଶକ :*
**ଲୋହିଆ ଏକାଡ଼େମୀ ଟ୍ରଷ୍ଟ**
ପ୍ଲଟ୍ ନଂ : ଏ/୩, ୟୁନିଟ-୯
ଭୁବନେଶ୍ୱର-୨୨

ପ୍ରଥମ ପ୍ରକାଶନ : ୨୦୧୫

*ପ୍ରଚ୍ଛଦ :*
**କୁନା ସରୋଜ**

*ଅକ୍ଷରସଜ୍ଜା ଓ ମୁଦ୍ରଣ :*
ଗ୍ରାଫିକ୍ ଆର୍ଟ୍ ଅଫ୍‌ସେଟ୍ ପ୍ରେସ୍
ନୂଆପାଟଣା, କଟକ

*ମୂଲ୍ୟ :* ୧୮୦/- ଟଙ୍କା

**RABI RAY : MU JEPARI JANE**
On the occasion of
Rabi Ray's 90th Birthday

Edited by
**Samir Kumar Rout**

*Published By*
**Lohia Academy Trust**
Plot No. : A/3, Unit-9
Bhubaneswar-22

First Edition : 2015

*Cover Design*
**KUNASAROJ**

*D.T.P. & Printed By*
**Graphic Art Offset Press**
Nuapatna, Cuttack

**Price : Rs. 180/-**



ପଦ ପଦବୀର ଲାଳସା ମୋର କେବେ ନଥିଲା, ଏବେ ମଧ୍ୟ ନାହିଁ। ମୋ ଭଳି ଜଣେ ସାଧାରଣ ବ୍ୟକ୍ତି, ସବୁବେଳେ ମୁଁ ନିଜକୁ ତର୍ଜମା କରେ, ମୁଁ ଯେଉଁ ଆଦର୍ଶରେ ବିଶ୍ୱାସ କରୁଛି ସେ ଆଦର୍ଶକୁ ମୁଁ କେତେଦୂର କାର୍ଯ୍ୟକାରୀ କରୁଛି। ମୁଁ ଆଦର୍ଶବାଦରେ ବିଶ୍ୱାସ କରେ। ଏହା ବାଦ୍ ଆଉ ସବୁ କଥା ମୋ ପାଇଁ ତୁଚ୍ଛ।

– ରବି ରାୟ

# ସୂତ୍ରଧରର ସଂଳାପ...

୨୦୦୫ ମସିହାରେ ପ୍ରକାଶିତ ରବି ରାୟଙ୍କ 'ଅନ୍ୱେଷାର ଆକାଶ' ଗ୍ରନ୍ଥ ପ୍ରସ୍ତୁତି କାଳରେ ମୋର ପ୍ରମୁଖ ଭୂମିକା ଥିଲା ଶ୍ରୀଯୁକ୍ତ ରାୟଙ୍କ ସ୍ମୃତି ସମ୍ବଳିତ ବକ୍ତବ୍ୟଗୁଡ଼ିକୁ ଟେପ୍‌ରେକର୍ଡ଼ର ଜରିଆରେ ଲିପିବଦ୍ଧ କରିବା। ମହାଭାରତ ଗ୍ରନ୍ଥ ରଚନା କାଳରେ ବ୍ୟାସ ଓ ଗଣେଶଙ୍କ କାର୍ଯ୍ୟଭଳି ଯଦିଓ ଆମ କାର୍ଯ୍ୟ ନୁହେଁ ତଥାପି ପଦ୍ଧତିଟିକୁ ଏକାଭଳି ମନେ କରାଯାଇପାରେ। ସେ ଗ୍ରନ୍ଥ ଲିଖନ ସମୟରେ ବିଘ୍ନରାଜ ଗଣେଶ ବ୍ୟାସଙ୍କୁ ପାଠ ବର୍ଣ୍ଣନା ମଧ୍ୟରେ ଆଦୌ ନ ଅଟକିବା ପାଇଁ ସର୍ତ୍ତ ରଖିଥିଲେ; ମାତ୍ର ଏ କ୍ଷେତ୍ରରେ ଆମେ ସ୍ୱୟଂ ଗଣେଶରୂପୀ ମନୁଷ୍ୟ ଲିପିବଦ୍ଧ ଯନ୍ତ୍ରଟିକୁ ପରଖିବା ପାଇଁ ବକ୍ତାଙ୍କୁ ବକ୍ତବ୍ୟର ଯେକୌଣସି ସ୍ଥଳରେ ଅଟକାଇ ରଖି ପାରିବାର ଅଧିକାର ପାଇଥିଲୁ। ଆଉ ସେଇ ଆଶୀର୍ବାଦପୂର୍ଣ୍ଣ ଅଧିକାର ବଳରେ ପୁସ୍ତକଟିର ସୂଚୀକ୍ରମଟି ସମ୍ପୂର୍ଣ୍ଣରୂପେ ନିଜ ଇଚ୍ଛା ଅନୁସାରେ ପ୍ରସ୍ତୁତ କରିବାପାଇଁ ଦୁଃସାହସ କରିଥିଲୁ।

ତଥ୍ୟ ସଂଗ୍ରହ କାଳରେ ଶ୍ରୀଯୁକ୍ତ ରାୟ ତାଙ୍କର ଗୋଟିଏ ବକ୍ତବ୍ୟରେ କହିଥିଲେ ଯେ, ସେ ଯେକୌଣସି ଲୋକଙ୍କୁ ଥରେ ଦେଖିଥାନ୍ତି ବା ତା' ସହିତ ତାଙ୍କର କୌଣସି ଭାଗବତ ଆଦାନପ୍ରଦାନ ହୋଇଥାଏ, ତେବେ ଯେତେବର୍ଷ ପରେ ତାକୁ ଦେଖିଲେ ମଧ୍ୟ ସେ ତାହା ବିଷୟରେ କହିଦେଇପାରିବେ ବା ତାକୁ ଚିହ୍ନିଦେଇପାରିବେ। କୌତୂହଳବଶତଃ ମୁଁ ପଚ୍ଚରିଥିଲି କିପରି ? ସେ କହିଥିଲେ ଏହା ହେଉଛି 'ଥିଓରି ଅଫ୍ ଆସୋସିଏଟେଡ୍ ମେମୋରି'। ପରମୁହୂର୍ତ୍ତରେ ମୁଁ ଏହି ପ୍ରସଙ୍ଗଟିର ନାମକରଣ କରିଥିଲି 'ଲୋକ ଚିହ୍ନିବାର ଯାଦୁ' (ଅନ୍ୱେଷାର ଆକାଶ, ପୃ-୮୫)।

ବାସ୍ତବରେ ଭାଷଣରେ ସେ ଜଣେ ଯାଦୁକର। ସ୍ୱୟଂ ନିଜର ମାତୃଭାଷାକୁ ମାଧ୍ୟମ କରି ସେ ଯେପରି ଅନର୍ଗଳ କହିପାରନ୍ତି, ରାଷ୍ଟ୍ରଭାଷା ହିନ୍ଦୀରେ ମଧ୍ୟ ସେହିପରି ସେ ଚମତ୍କାର କଥନଶୈଳୀ ପ୍ରୟୋଗ କରିଥାନ୍ତି। ନିଜର ବାକ୍‌ଚତୁରୀ ପଟୁତା ଯୋଗୁଁ ସିଏ ଦିନେ ବିଶ୍ୱର ବୃହତ୍ ଗଣତନ୍ତ୍ର ରାଷ୍ଟ୍ରର ମର୍ଯ୍ୟାଦାଜନକ ବାଚସ୍ପତି ଆସନ ମଣ୍ଡନ କରିପାରିଥିଲେ। ଜାତି, ବର୍ଣ୍ଣ, ଧର୍ମ, ବୟସ ନିର୍ବିଶେଷରେ ସମସ୍ତଙ୍କୁ ଭଲପାଇବା ତାଙ୍କର ଏକ 'ନିଆରାପଣ'। ସାମାଜିକ ଜୀବନରୁ ଆରମ୍ଭ କରି ନିଜର ରାଜନୈତିକ

ଜୀବନ ପର୍ଯ୍ୟନ୍ତ ସେ ଯେପରି ଏକ ନିଷ୍କଳଙ୍କ ଚରିତ୍ର; କେନ୍ଦ୍ରୀୟ ରାଜନୀତିରେ ସେ ସେହିପରି ଏକ ସମ୍ମାନିତ ବ୍ୟକ୍ତିତ୍ୱ । ନିଜ ଜୀବନରେ ଅନ୍ୟକୁ ନିବିଡ଼ ଭାବେ ଭଲପାଇବା, ଅନ୍ୟ ବିଷୟରେ ଭଲ କରି ଜାଣିବା, ଅନ୍ୟକୁ ବୁଝିବାରେ ସର୍ବଦା ବିଶେଷ ଆଗ୍ରହ ପ୍ରକାଶ କରୁଥିବା ରବି ରାୟ ନିଜ ଜୀବନର ଚଲାପଥ ଅତିକ୍ରମ କଲାବେଳେ ବହୁ ବ୍ୟକ୍ତିଙ୍କ ସଂପର୍କରେ ଆସିଛନ୍ତି । କାହାକୁ କେତେବେଳେ ସେ ପ୍ରଭାବିତ କରିଛନ୍ତି ତ କାହାଦ୍ୱାରା ନିଜେ ପ୍ରଭାବିତ ହୋଇଛନ୍ତି । ତାଙ୍କ ଆଦର୍ଶରେ କେଉଁମାନେ ଅନୁପ୍ରାଣିତ ହୋଇଛନ୍ତି ତ, କିଏ ତାଙ୍କ ଆତିଥ୍ୟତାରେ ମୁଗ୍ଧ ହୋଇଛି । ଏହିଭଳି ରବି ରାୟଙ୍କ ପ୍ରତ୍ୟକ୍ଷ ସାନିଧ ଓ ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି ସେମାନଙ୍କ ଦୃଷ୍ଟିରେ ରବି ରାୟ କିପରି ସେମାନଙ୍କ ହୃଦୟର ଏହି ଅନାଲୋଚିତ ବକ୍ତବ୍ୟକୁ ସାର୍ବଜନୀନ କରିବା ଏ ପୁସ୍ତକ ପରିକଳ୍ପନାର ମୂଳପିଣ୍ଡ ।

ଏକଦା ସନ୍ଧ୍ୟା ସମୟରେ 'ନିହାର୍ଡ଼' ଲାଇବ୍ରେରୀକୁ ଆସିଥିବା ବିଶିଷ୍ଟ ସମାଜବାଦୀ ତଥା ସାହିତ୍ୟିକ ରବୀନ୍ଦ୍ରନାଥ ସାହୁ (କବି ଶୈଳଜ ରବି)ଙ୍କ ସହିତ ଏ ବିଷୟରେ ଆଲୋଚନା ହେବାରୁ ସେ ଅତ୍ୟନ୍ତ ଆଗ୍ରହର ସହିତ ଏ କାର୍ଯ୍ୟ ଜରୁରୀକାଳୀନ ଭିତ୍ତିରେ କରାଯିବା ଉଚିତ ବୋଲି ଦୃଢ଼ମତ ଦେଲେ ଏବଂ ତତ୍‌କ୍ଷଣାତ୍ ଏଥିପାଇଁ ନିଜ ହାତରେ ଏହାର ଏକ 'ବ୍ଲୁପ୍ରିଣ୍ଟ' ପ୍ରସ୍ତୁତ କରି ମୋ ହାତରେ ଧରାଇଦେଲେ । ପ୍ରସ୍ତୁତ ନକ୍‌ସା ଅନୁଯାୟୀ ଲେଖକ/ଲେଖିକାମାନଙ୍କ ଠିକଣା ସଂଗ୍ରହ କରିବା, ଫୋନ୍ ମାଧ୍ୟମରେ ଯୋଗାଯୋଗ କରିବା ଏବଂ ସର୍ବୋପରି ଏକ ଲିଖିତ ଅନୁରୋଧ ପତ୍ର ମାଧ୍ୟମରେ ଲେଖକ/ଲେଖିକାମାନେ ଜୁଲାଇ ୧୫, ୨୦୧୫ ସୁଦ୍ଧା ନିଜର ଲେଖା ପଠାଇବାକୁ ଜଣାଇଦିଆଯାଇଥିଲା; ମାତ୍ର ପରିତାପର ବିଷୟ ବାରମ୍ବାର ଯୋଗାଯୋଗ ସତ୍ତ୍ୱେ ରବିବାବୁଙ୍କ ବହୁ ପରିଚିତ, ରାଜନୈତିକ ବନ୍ଧୁ, ନିକଟ ସଂପର୍କୀୟ ତଥା ପରିବାର ପକ୍ଷରୁ ମଧ୍ୟ ଲେଖାଗୁଡ଼ିକ ଆସିପାରିଲା ନାହିଁ । ଯେଉଁ କେତୋଟି ଲେଖା ଆମର ହସ୍ତଗତ ହେଲା ତା' ପୁଣି ବହୁ ବିଳମ୍ବରେ । ଅବଶ୍ୟ ଏହା ଆମେ ସ୍ୱୀକାର କରୁଛୁ ଯେ ରବିବାବୁଙ୍କ ସଂପର୍କରେ ଲେଖା ଦେବାପାଇଁ ପ୍ରାୟ ଯେତେ ଜଣଙ୍କୁ ଯୋଗାଯୋଗ କରାଯାଇପାରିଛି ବା ଯେତେକ ଲେଖା ଆମର ହସ୍ତଗତ ହୋଇଛି, ତାହା ସମୁଦ୍ରକୁ ଶଙ୍ଖେ ଭଳି । ଏହା ବାହାରେ ତାଙ୍କର ବହୁ ଘନିଷ୍ଠ ବନ୍ଧୁମାନେ ଅଛନ୍ତି, ଯେଉଁମାନଙ୍କୁ ସୂଚନା ସଂଗ୍ରହଜନିତ ଅଭାବରୁ ଆମେ ଯୋଗାଯୋଗ କରିପାରିନାହୁଁ ଏବଂ ସେଥିପାଇଁ ଆମେ କ୍ଷମାପ୍ରାର୍ଥୀ ।

ସେହିପରି ଏଥିରେ ପ୍ରକାଶ ପାଇଥିବା କେତେକ ଲେଖାରେ ଆବଶ୍ୟକତା ଦୃଷ୍ଟିରୁ ଆମେ କିଛି କିଛି ସଂଶୋଧନ କରିବାର ଧୃଷ୍ଟତା ମଧ୍ୟ କରିଛୁ । ଯେପରିକି ରବି ରାୟଙ୍କ

କଲେଜ ଛାତ୍ରଜୀବନ, ରବି ରାୟଙ୍କ ମନ୍ତ୍ରୀ ସମୟର କାର୍ଯ୍ୟାବଳୀ ତଥା ବାଚସ୍ପତି ସମୟର କେତେକ ଐତିହାସିକ ନିଷ୍ପତ୍ତି ଇତ୍ୟାଦି ସଂପର୍କରେ ଲେଖାଗୁଡ଼ିକରେ ବାରମ୍ବାର ବର୍ଣ୍ଣନାକୁ ଆମେ ସ୍ଥଳବିଶେଷରେ ବାଦ୍‌ଦେବାକୁ ବାଧ ହୋଇଛୁ।

ଖାଲି ସେତିକି ନୁହେଁ, ପୁସ୍ତକ ପ୍ରସ୍ତୁତିକାଳରେ ସନ୍ନିବେଶିତ ଲେଖାଗୁଡ଼ିକର ଦୈନତା ଉପଲବ୍ଧି କରି ରବି ରାୟଙ୍କ ସଂପର୍କରେ ପୂର୍ବରୁ ପ୍ରକାଶପାଇଥିବା କିଛି ଲେଖାକୁ ମଧ୍ୟ ଏଥିରେ ସ୍ଥାନିତ କରିବାକୁ ବାଧ ହୋଇଛୁ। ଏହି ଅବସରରେ ସଂପୃକ୍ତ ଲେଖକ/ ଲେଖିକା ତଥା ପ୍ରକାଶିତ ପତ୍ରପତ୍ରିକାର ସମ୍ପାଦକ ମହାଶୟଙ୍କୁ ଆମର କୃତଜ୍ଞତା ଜଣାଉଛୁ। ପାଣ୍ଡୁଲିପିରୁ ପୁସ୍ତକ ରୂପ ପାଇବା ପର୍ଯ୍ୟନ୍ତ ଯେଉଁ ଟେକ୍‌ନିସିଆନ ଭାଇ ତଥା ଅନ୍ୟାନ୍ୟ ବ୍ୟକ୍ତିବିଶେଷ ଆମକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସାହାଯ୍ୟ ସହଯୋଗ ଯୋଗାଇ ଦେଇଛନ୍ତି ସମସ୍ତଙ୍କୁ ଆମେ ସାଧୁବାଦ ଜଣାଉଛୁ। ବିଶେଷକରି ଲୋହିଆ ଏକାଡ଼େମୀର ଆନ୍ତରିକ ଉଦ୍ୟମ ଯୋଗୁଁ ଏ ପ୍ରକାଶନ ସମ୍ଭବ ହୋଇପାରିଛି। ଏ ସାରସ୍ୱତ କର୍ମରେ ଆମର ଶ୍ରମ ନୁହେଁ, ବରଂ ଧର୍ମ ସାର୍ଥକ ହୋଇଛି। ଆଶା ରଖିଥିବା ପାଠକୀୟ ଆଦର ଓ ପ୍ରଶଂସା ସବୁ ଲେଖକମାନଙ୍କର, ଆଉ ସବୁ ନିନ୍ଦା ଏ ଅଧମ ସୂତ୍ରଧରର।

ପ୍ରଣାମାନ୍ତେ

**ସମୀର**

# ପରିଚୟ ସୂତ୍ରରେ ଆମ ଲେଖକ/ଲେଖିକା

**ଭରମ ଦାସ** — ରବି ରାୟଙ୍କୁ ଛାତ୍ର ଜୀବନରୁ ଭଲରୂପେ ଜାଣିଥିଲେ। ପରବର୍ତ୍ତୀ କାଳରେ ତାଙ୍କର ଘନିଷ୍ଠ ସଂସ୍ପର୍ଶରେ ମଧ୍ୟ ଆସିଥିଲେ। ଶିକ୍ଷକତା ସହ ସମାଜ ସେବାକୁ ନିଜର ବ୍ରତ ଭାବରେ ଗ୍ରହଣ କରିଛନ୍ତି। ଖୋର୍ଦ୍ଧା ଜିଲ୍ଲାର ବନମାଳୀପୁର ତାଙ୍କର ପୈତୃକ ବାସସ୍ଥାନ।

**ପ୍ରଫେସର କୃଷ୍ଣନାଥ** — ପ୍ରଫେସର କୃଷ୍ଣନାଥ ଜଣେ ପ୍ରସିଦ୍ଧ ଚିନ୍ତକ, କାଶୀ ବିଦ୍ୟାପୀଠ ଓ ବାରାଣସୀର ପ୍ରାକ୍ତନ ପ୍ରଧାପକ। ପ୍ରାୟ ପାଞ୍ଚ ଦଶନ୍ଧିର ଊର୍ଦ୍ଧ୍ୱକାଳ ରବି ରାୟଙ୍କ ସହିତ ତାଙ୍କର ସଂପର୍କ।

**ଜନେଶ୍ୱର ମିଶ୍ର** — ପୂର୍ବତନ କେନ୍ଦ୍ରମନ୍ତ୍ରୀ, ସଞ୍ଚାର ମନ୍ତ୍ରୀଭାବେ ଓଡ଼ିଶାରେ ଟେଲିଫୋନ୍ ସେବାପାଇଁ ତାଙ୍କର ଅବଦାନ ଅବିସ୍ମରଣୀୟ ତାହା ସମ୍ଭବ ହୋଇଥିଲା ରବିରାୟଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ଯୋଗୁଁ।

**ଡଳି ରାୟ** — ରବି ରାୟଙ୍କ ସାନ ପୁତୁରାବୋହୂ। ଦୀର୍ଘଦିନ ରବି ରାୟଙ୍କ ପାଖରେ ରହିଛନ୍ତି ଏବଂ ଖୁବ୍ ନିକଟରୁ ତାଙ୍କୁ ଲକ୍ଷ୍ୟ କରିବାର ସୌଭାଗ୍ୟଲାଭ କରିଛନ୍ତି। ସଂପ୍ରତି ରବି ରାୟଙ୍କ ନିଜ ପୈତୃକଗୃହ ଭଅଁରାଗଡ଼ରେ ନିଜ ପରିବାର ସହ ଅବସ୍ଥାନ କରୁଛନ୍ତି।

**ତୁଷାରକାନ୍ତ** — ସାମାଜିକ ଅନ୍ୟାୟ ବିରୁଦ୍ଧରେ ସର୍ବଦା ସଂଗ୍ରାମ ଚଳାଇରଖିଥିବା ଜଣେ ବୌଦ୍ଧିକ ବ୍ୟକ୍ତିତ୍ୱ। ରବି ରାୟଙ୍କ ରାଜନୈତିକ ଆଦର୍ଶ ସହିତ ତାଙ୍କ ଜୀବନରେ ବହୁ ବିଘ୍ନର ଏବେ ସ୍ମୃତିର ସନ୍ତକ ହୋଇ ରହିଛି। ଜଗତସିଂହପୁର ଜିଲ୍ଲାସ୍ଥ ବାଗଲପୁର ଗ୍ରାମର ଜଣେ ଅନ୍ୟତମ ବରିଷ୍ଠ ନାଗରିକ ଭାବେ ଜୀବନ ବିତାଉଛନ୍ତି।

**ଦେବପ୍ରସାଦ ରାୟ ପୀତାମ୍ବର ମହାପାତ୍ର :** ବୌଦ୍ଧିକ ଚର୍ଚ୍ଚା ଆଲୋଚନାରେ ରୁଚି ରଖୁଥିବା ଜଣେ ସ୍ୱାଧୀନଚେତା ବ୍ୟକ୍ତିତ୍ୱ। ବିଶେଷ କରି ସାମାଜିକ ଅନ୍ୟାୟ ବିରୁଦ୍ଧରେ ସ୍ୱରଉତ୍ତୋଳନ ଏବଂ ସମାଜବାଦୀ ଆଦର୍ଶର ଏକ ସଫଳ ଅନୁଗାମୀ। ସଂପର୍କରେ ରବି ରାୟଙ୍କ ଜ୍ୟେଷ୍ଠ ପୁତୁରା। ସଂପ୍ରତି ଭୁବନେଶ୍ୱର ପଳାସପଲ୍ଲୀଠାରେ ନିଜର ପରିବାର ସହ ରହୁଛନ୍ତି।

**ନିର୍ମଳା ଦେଶପାଣ୍ଡେ :** ବରିଷ୍ଠ ଗାନ୍ଧିବାଦୀ ଓ ପୂର୍ବତନ ସାଂସଦ। ରବି ରାୟଙ୍କ ଆଦର୍ଶ ଓ ମୂଲ୍ୟବୋଧକୁ ସମ୍ମାନ ଜଣାଉଥିବା ବଳିଷ୍ଠ ବ୍ୟକ୍ତିତ୍ୱ।

**ନୀଳକଣ୍ଠ ରଥ** ସ୍ୱନାମଧନ୍ୟ ଅର୍ଥନୀତିଜ୍ଞ। ଦୈନିକ 'ସମାଜ'ର ବର୍ଷୀୟାନ ସମ୍ପାଦକ ସ୍ୱର୍ଗତଃ ଡଃ. ରାଧାନାଥଙ୍କ ସୁଯୋଗ୍ୟ ସନ୍ତାନ। ଜାତୀୟ, ଆନ୍ତର୍ଜାତୀୟ ଓ ଅର୍ଥନୈତିକ ସମସ୍ୟା ଉପରେ ଉଚ୍ଚକୋଟୀର ପ୍ରବନ୍ଧ ଓ ପୁସ୍ତକ ପ୍ରକାଶିତ କରିଛନ୍ତି। ସଂପ୍ରତି ପୁଣେଠାରେ ଅବସ୍ଥାପିତ।

**ପଦ୍ମଚରଣ ନାୟକ** ସମାଜବାଦୀ ଆଦର୍ଶର ଏକ ସଫଳ, ନିଷ୍ଠାପର ବ୍ୟକ୍ତିତ୍ୱ। ଉଚ୍ଚକୋଟୀର ଲେଖକ। ନବକୃଷ୍ଣ ଚୌଧୁରୀଙ୍କ ଉପରେ ତାଙ୍କ ରଚିତ 'ଅନିର୍ବାଣ' ଏକ ବହୁଚର୍ଚ୍ଚିତ ପୁସ୍ତକ। ବୟସାଧିକ୍ୟ ସତ୍ତ୍ୱେ ଏବେ ବି ବହୁ ଜନଆନ୍ଦୋଳନ ସହିତ ସେ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ। ନିଜର କଲେଜ ଜୀବନରୁ ସେ ରବି ରାୟଙ୍କ ସଂସ୍ପର୍ଶରେ ଆସିଛନ୍ତି।

**ପୀତାମ୍ବର ଜେନା** ରବି ରାୟଙ୍କ ଦୂର ସଂପର୍କୀୟ ଭଣଜା। ଓଡ଼ିଶା ସରକାରଙ୍କ ପୂର୍ବତନ ପ୍ରଶାସନିକ ଅଧିକାରୀ ଭାବରେ ସଫଳତାର ସହିତ କାର୍ଯ୍ୟ କରିଛନ୍ତି। ସଂପ୍ରତି କଟକ ଗନ୍ଧିନୀଚୌକ ସ୍ଥିତ ବିହାରୀବାଗ କଲୋନିରେ ଅବସ୍ଥାନ କରୁଛନ୍ତି।

**ପ୍ରଭାକର ସ୍ୱାଇଁ** ବିଶିଷ୍ଟ ସାହିତ୍ୟିକ ଓ ସଂଗଠକ। 'ସାରଳା ସାହିତ୍ୟ ସଂସଦ'ର ପ୍ରତିଷ୍ଠାତା ଓ ସଭାପତି। ପାରିବାରିକ ସମ୍ବନ୍ଧ ଅନୁସାରେ ରବି ରାୟଙ୍କ ଝିଆରୀ ଜ୍ୱାଇଁଙ୍କ ବଡ଼ଭାଇ। ସଂପ୍ରତି କଟକର ମହାନଦୀ ବିହାରରେ ଅବସ୍ଥାନ କରୁଛନ୍ତି।

**ପ୍ରତାପ କୁମାର ଜଗଦେବ ମହାପାତ୍ର :** ସଂପର୍କରେ ରବି ରାୟଙ୍କ ଭଣଜା। ସଂପ୍ରତି ଆଇ.ଆଇ.ଟି ଭୁବନେଶ୍ୱରରେ କର୍ତ୍ତବ୍ୟରତ।

**ପ୍ରତୀକ୍ଷା ସ୍ୱାଇଁ (ମାମାଲି) :** ରବି ରାୟଙ୍କ ପ୍ରିୟ ନାତୁଣୀ। ସଂପ୍ରତି ଭୁବନେଶ୍ୱରର ଆଇ.ଟି.ଇ.ଆର ଶିକ୍ଷାନୁଷ୍ଠାନର ଇଲେକ୍ଟ୍ରିକାଲ ବିଭାଗର ତୃତୀୟ ବର୍ଷ ଛାତ୍ରୀ।

**ପ୍ରମିଳା ସ୍ୱାଇଁ** ଡାକ୍ତରୀ ବୃତ୍ତିରୁ ଅବସର ପରେ ଚିକିତ୍ସା ବିଜ୍ଞାନ ସମ୍ବନ୍ଧୀୟ 'ଚକ୍ରଧର ଇନ୍‌ଷ୍ଟିଚ୍ୟୁଟ୍' ନାମରେ ଏକ ସଂସ୍ଥାର ପରିଚାଳନା କରୁଛନ୍ତି। ଶ୍ରୀଯୁକ୍ତ ରାୟ ତାଙ୍କର ସଂପର୍କରେ ବଡ଼ଭିଣୋଇ ଅଟନ୍ତି।

**ପ୍ରସନ୍ନକୁମାର ରାଉତରାୟ :** ରବି ରାୟଙ୍କ ବଡ଼ଭଉଣୀଙ୍କ ପୁଅ। ସଂପର୍କରେ ଭଣଜା। ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗରୁ ଅବସର ଗ୍ରହଣ କରିଛନ୍ତି। ଘର ନଂ-୩୩, ରୁଦ୍ରପୁର, ନହରକଣ୍ଟା, ବାଲିଅନ୍ତା, ଜିଲ୍ଲା - ଖୋର୍ଦ୍ଧା।

**ବାସୁଦେବ ପାତ୍ର** ବୃତ୍ତିରେ ଡାକ୍ତର। ରବି ରାୟଙ୍କ ରାଜନୈତିକ ଜୀବନ ଆରମ୍ଭରୁ ତାଙ୍କ ସହିତ ପରିଚିତ।

**ବିଜୟ କୁମାର ସ୍ୱାଇଁ :** ମହର୍ଷି କଲେଜରୁ ଅଧ୍ୟକ୍ଷ ପଦରୁ ଅବସର ଗ୍ରହଣ କଲାପରେ, ଏବେ ଓଡ଼ିଶାର ବିଭିନ୍ନ ସାମାଜିକ ଆନ୍ଦୋଳନ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଅଛନ୍ତି। ଦୀର୍ଘଦିନ ଧରି ରବି ରାୟଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିବା ଡଃ. ସ୍ୱାଇଁ ସଂପର୍କରେ ରବି ରାୟଙ୍କ ସାନଶାଳକ।

**ବିଭୂତି ପଟ୍ଟନାୟକ** ବିଶିଷ୍ଟ ଔପନ୍ୟାସିକ ତଥା ସାହିତ୍ୟ ସମାଲୋଚକ। ଛାତ୍ର ଜୀବନରୁ ରବି ରାୟଙ୍କ ଆଦର୍ଶ ଓ ଚିନ୍ତାଧାରା ସହିତ ବେଶ୍ ପରିଚିତ। ଅଧୁନା ଭୁବନେଶ୍ୱରରେ ଅବସ୍ଥାପିତ।

**ବିଶ୍ୱନାଥ ଧଳ** ରବି ରାୟଙ୍କ ରାଜନୈତିକ ଜୀବନ ସହିତ ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ସଂପୃକ୍ତ। ଘର - ପଟ୍ଟାମୁଣ୍ଡାଇ, କେନ୍ଦ୍ରାପଡ଼ା - ଜିଲ୍ଲା।

**ବିଶ୍ୱନାଥ ସାମଲ** ରବି ରାୟଙ୍କ ଆଦର୍ଶକୁ ସମ୍ମାନ ପ୍ରଦାନ କରୁଥିବା ଜଣେ ବରିଷ୍ଠ ସାମ୍ବାଦିକ। ବାସ ଠିକଣା - ଚନ୍ଦ୍ରଶେଖରପୁର, ଭୁବନେଶ୍ୱର।

**ବୀରେନ୍ଦ୍ର ନାୟକ** : ଗଣିତ ବିଭାଗର ପୂର୍ବତନ ପ୍ରଫେସର, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର। ରବି ରାୟଙ୍କ ମୂଲ୍ୟବୋଧଭିତ୍ତିକ ରାଜନୀତି ଓ ଆଦର୍ଶକୁ ଶ୍ରଦ୍ଧା ଓ ସମ୍ମାନ କରୁଥିବା ଜଣେ ବିଶିଷ୍ଟ ବୁଦ୍ଧିଜୀବୀ।

**ବ୍ରଜକିଶୋର ପ୍ରଧାନ** : ବାଲ୍ୟ ସମୟରେ ରବି ରାୟଙ୍କ ଆଦର୍ଶରେ ଅନୁପ୍ରାଣିତ ସଂପର୍କୀୟ। ଠିକଣା - ବେଞ୍ଚକ୍ଲର୍କ, ସି.ବି.ଆଇ କୋର୍ଟ ନଂ-୧, ଭୁବନେଶ୍ୱର।

**ଭଗବାନ ସାହୁ** : ଖୁବ୍ ସ୍ୱଳ୍ପ ସମୟ ସେ ରବି ରାୟଙ୍କ ସଂସ୍ପର୍ଶରେ ଆସିଛନ୍ତି। ତଥାପି ତାଙ୍କ ପ୍ରତି ପ୍ରଗାଢ଼ ଅନୁରକ୍ତି ଭାବ ରହିଛି। ବାସସ୍ଥାନ ଠିକଣା - ସମ୍ପାଦକ, 'ସମୟର ପ୍ରାଚୀଧାରା', ତୁରିନ୍ତରା, ବାଲିପାଟଣା, ଭୁବନେଶ୍ୱର।

**ମହାପାତ୍ର ନୀଳମଣି ସାହୁ** : ବିଶିଷ୍ଟ ସାହିତ୍ୟିକ ତଥା ବକ୍ତା। ରବି ରାୟଙ୍କ ପିଲାଦିନର ବନ୍ଧୁ। ସଂପ୍ରତି ଭୁବନେଶ୍ୱରରେ ବାସ କରୁଛନ୍ତି।

**ମନୋରଞ୍ଜନ ମହାନ୍ତି** : ଦିଲ୍ଲୀ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ପ୍ରାକ୍ତନ ପ୍ରଫେସର ଓ ଓଡ଼ିଶା ଗବେଷଣା ଚକ୍ରର ସଭାପତି। ବୌଦ୍ଧିକ ଚର୍ଚ୍ଚା ଓ ଆଲୋଚନାରେ ରବି ରାୟଙ୍କ ଜଣେ ଦୃଢ଼ ପ୍ରଶଂସକ।

**ରଘୁ ଠାକୁର** : ରବି ରାୟଙ୍କ ରାଜନୈତିକ ଜୀବନର ଘନିଷ୍ଠ ବନ୍ଧୁ। ଦୀର୍ଘ ୩୫ ବର୍ଷ ଧରି ସେ ରବି ରାୟଙ୍କ ସଂସ୍ପର୍ଶରେ ଆସିଛନ୍ତି।

**ରବି ରଥ** : ରବିରାୟଙ୍କ ସହିତ ପାରିବାରିକ ସଂପର୍କ ଥିଲା। ଗଞ୍ଜାମ ଜିଲ୍ଲାକୁ ଗଲେ ରବି ରାୟ ଏହାଙ୍କ ଘରେ ରହନ୍ତି। ସମ୍ବାଦ ପତ୍ରିକା 'ନବୀନ'ର ସମ୍ପାଦକ, ନବୀନ ଭବନ, ବ୍ରହ୍ମପୁର, ଗଞ୍ଜାମ।

**ରବୀନ୍ଦ୍ରନାଥ ସାହୁ (ଶୈଳଜ ରବି)** : ଜଣେ ବିଶିଷ୍ଟ ସମାଜକର୍ମୀ ତଥା କବି। ରବି ରାୟଙ୍କ ଆଦର୍ଶକୁ ସମ୍ମାନ କରନ୍ତି। ରବି ରାୟଙ୍କ ପରିବାର ସହିତ ଘନିଷ୍ଠ ଭାବେ ସଂପୃକ୍ତ। ବାସ ଠିକଣା - ବନମାଳୀ ଭବନ, ଖାନନଗର, କଟକ।

**ରମେଶ ଚନ୍ଦ୍ର ରଥ (ଚେତନା):** ରବି ରାୟଙ୍କ ସହିତ ପରୋକ୍ଷ ଭାବେ ସଂପୃକ୍ତ ଓ ତାଙ୍କ ପ୍ରତି ଗଭୀର ଅନୁରକ୍ତ। ବାସ ଠିକଣା - ଗ୍ରଉକିଆଗଞ୍ଜ, ମଠସାହି, କଟକ।

**ରାଜକୁମାର ଜୈନ** ପ୍ରଫେସର ରାଜକୁମାର ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ ଓ ବରିଷ୍ଠ ସମାଜବାଦୀ ନେତା। ଦୀର୍ଘବର୍ଷ ଧରି ସେ ରବି ରାୟଙ୍କୁ ଖୁବ୍ ନିବିଡ଼ ଭାବରେ ଜାଣିଛନ୍ତି।

**ଶାନ୍ତନୁ କୁମାର ପ୍ରଧାନ:** ରବି ରାୟଙ୍କ ବ୍ୟକ୍ତିଗତ ସହାୟକ ଭାବେ ବହୁବର୍ଷ କାର୍ଯ୍ୟ କରିଛନ୍ତି। ସଂପ୍ରତି ଦିଲ୍ଲୀ ପାର୍ଲାମେଣ୍ଟ ଭବନର କମଗ୍ରରୀ।

**ସତ୍ୟ ରାୟ** ବରିଷ୍ଠ ସାମ୍ବାଦିକ ତଥା 'ସମାଜ'ର ପୂର୍ବତନ କାର୍ଯ୍ୟକାରୀ ସମ୍ପାଦକ।

**ସତ୍ୟପ୍ରକାଶ ମାଲବ୍ୟ :** ପୂର୍ବତନ କେନ୍ଦ୍ରମନ୍ତ୍ରୀ, ରବି ରାୟଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନରେ ଯାହାଙ୍କର ମଥା ନଇଁଯାଏ।

**ସତ୍ୟନାରାୟଣ ରେଡ୍ଡୀ:** ରବି ରାୟଙ୍କର ପରମ ମିତ୍ର। ଓଡ଼ିଶା ଓ ଉତ୍ତରପ୍ରଦେଶର ପୂର୍ବତନ ରାଜ୍ୟପାଳ।

**ସତ୍ୟନାରାୟଣ ରାୟ ପିଟାମ୍ବର ମହାପାତ୍ର :** ରବି ରାୟଙ୍କ ପୌତ୍ର। ବର୍ତ୍ତମାନର ଠିକଣା - ପ୍ରଭିଡେନ୍ସ, ରୋଡ୍ ଆଇଲାଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା।

**ସରସ୍ୱତୀ ସ୍ୱାଇଁ** ରବି ରାୟଙ୍କ ଧର୍ମପତ୍ନୀ ଓ ତାଙ୍କ ପ୍ରେରଣାର ଉତ୍ସ।

**ସମୀର କୁମାର ରାଉତ :** ଦୀର୍ଘ ୧୫ ବର୍ଷ ଧରି ରବି ରାୟଙ୍କ ପ୍ରତ୍ୟକ୍ଷ ଜୀବନଧାରା ସହିତ ଘନିଷ୍ଠ ଭାବେ ସଂପୃକ୍ତ ଓ ତାଙ୍କ ଆଦର୍ଶରେ ପ୍ରଭାବିତ। ଘର ଠିକଣା - ହଳଦିଆପଡ଼ା, ପୋ - ଅଲାଣ୍ଡୋ, ଜିଲ୍ଲା - ଜଗତସିଂହପୁର।

**ସୁରେନ୍ଦ୍ର ପ୍ରଧାନ** କଲେଜ ଜୀବନରୁ ରବି ରାୟଙ୍କ ସହିତ ପରିଚୟ ଓ ପରେ ରବି ରାୟଙ୍କ ସହିତ ସମାଜବାଦୀ ଦଳରେ କାର୍ଯ୍ୟ କରିଥିଲେ ଏବଂ ପରେ ବିଧାୟକ ହୋଇଥିଲେ।

**ସୁରେନ୍ଦ୍ର ମୋହନ** ବରିଷ୍ଠ ସମାଜବାଦୀ ନେତା ଓ ଧର୍ମ ନିରପେକ୍ଷ ଜନତା ଦଳର ଅଖିଳଭାରତୀୟ ସଭାପତି। ରବି ରାୟଙ୍କ ସହିତ ଏକାଠି ମିଶି କାର୍ଯ୍ୟ କରିଛନ୍ତି।

| | |
|---|---|
| **ସୁଶାନ୍ତ ଷଡ଼** | ରବି ରାୟଙ୍କୁ ନିଜର ରାଜନୈତିକ ନେତା ବୋଲି ଜ୍ଞାନ କରନ୍ତି । ଦୀର୍ଘଦିନ ଧରି ରବି ରାୟଙ୍କ ଘରେ ରହି ତାଙ୍କର ସାନିଧ୍ୟଲାଭ କରିଛନ୍ତି । ଭୋଗରାଇର ପୂର୍ବତନ ବିଧାୟକ । ସା/ପୋ - ଫୁଲବାଣୀ, ଜିଲ୍ଲା - ବାଲେଶ୍ୱର । |
| **ସୁଲଗ୍ନା ଭାରତୀ** | ସଂପର୍କ ସୂତ୍ରରେ ରବି ରାୟଙ୍କ ନାତୁଣୀ । ରବି ରାୟ ତାଙ୍କ ପାଇଁ ପ୍ରେରଣା ବୋଲି ସେ ସ୍ୱୀକାର କରନ୍ତି । |
| **ସୁଲୋଚନା ଦାସ** | ବିଶିଷ୍ଟ ଲେଖିକା, ଓଡ଼ିଆ ଭାଷା ସାହିତ୍ୟକୁ ତାଙ୍କର ବଳିଷ୍ଠ ଅବଦାନ ରହିଛି । ରବି ରାୟଙ୍କ ପାରିବାରିକ ବନ୍ଧୁ ଏବଂ ତାଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିଛନ୍ତି । |
| **ହିମାଂଶୁ କୁଅଁର** | ନିଜର ଛାତ୍ର ଜୀବନରୁ ରବି ବାବୁଙ୍କୁ ଜାଣିବାର ଏବଂ ତାଙ୍କ ପ୍ରତି ଆକର୍ଷିତ ହେବାର ସୁଯୋଗ ପାଇଥିଲେ, ପରବର୍ତ୍ତୀ ଜୀବନରେ ରବି ରାୟଙ୍କ ଅଧିକାଂଶ ଘଟଣାକ୍ରମରେ ସେ ଜଡ଼ିତ ହୋଇଥିଲେ । ସଂପ୍ରତି କେନ୍ଦୁଝରର ନାଗରିକ ମଞ୍ଚର ସାଧାରଣ ସମ୍ପାଦକ ଅଛନ୍ତି । |
| **ହୃଷିକେଶ ପଣ୍ଡା** | ବରିଷ୍ଠ ପ୍ରଶାସକ ତଥା ସୁସାହିତ୍ୟିକ । ରବି ରାୟ ବାଚସ୍ପତି ଥିବା ସମୟରେ ସେ ତାଙ୍କର ସଚିବ ଭାବରେ ଯୋଗଦେଇଥିଲେ ଏବଂ ବାଚସ୍ପତିଙ୍କ ପ୍ରତ୍ୟେକ ନିଷ୍ପତ୍ତିରେ ମଧ୍ୟ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । |
| **ହୁସେନ୍ ରବି ଗାନ୍ଧୀ** | ବିଶିଷ୍ଟ କବି ଓ ସମାଜସେବୀ । ଛାତ୍ରାବସ୍ଥାରୁ ରବି ରାୟଙ୍କ ସହିତ ପରିଚୟ ହୋଇଥିଲା ଏବଂ ପରବର୍ତ୍ତୀ ସମୟରେ ସେ ତାଙ୍କ ବିଚାରଧାରା ସହିତ ମିଶି କାର୍ଯ୍ୟ କରିଥିଲେ । ବାସ ଠିକଣା - ଆଜମ୍ ଖାନ୍ ବଜାର, କଟକ । |
| **ଲକ୍ଷ୍ମୀପ୍ରିୟା ମହାନ୍ତି** | ବାଲ୍ୟ ଅବସ୍ଥାରୁ ରବି ରାୟଙ୍କ ଆଦର୍ଶ ପ୍ରତି ଅନୁପ୍ରାଣିତ ଏବଂ ତାଙ୍କ ବିଚାରଧାରାରେ କର୍ତ୍ତବ୍ୟରତ । ବିଶିଷ୍ଟ ସମାଜସେବୀ । ବାସ ଠିକଣା - ଖଇରାଗଡ଼, ଜଗତସିଂହପୁର । |

■ ■ ■

# ଯେଉଁମାନେ ଯେପରି ଜାଣିଛନ୍ତି

▮▮▮



ବାଲ୍ୟ ବନ୍ଧୁ ନରେନ୍ଦ୍ରନାଥ ଜେନାଙ୍କ ସହିତ ରବି ରାୟ



ଧର୍ମପତ୍ନୀ ଡାକ୍ତର ସରସ୍ୱତୀ ସ୍ୱାଇଁଙ୍କ ସହ



ତରୁଣ ରବି ରାୟ ନିଜର ରାଜନୈତିକ ଗୁରୁ ଡକ୍ଟର ରାମମନୋହର ଲୋହିଆଙ୍କ ସହ ଏକ ବିରଳ ମୁହୂର୍ତ୍ତରେ



ସ୍ୱାସ୍ଥ୍ୟମନ୍ତ୍ରୀ ଭାବେ କର୍ଣ୍ଣାଟକ ଗସ୍ତ ସମୟରେ ବିଭିନ୍ନ ରାଜନୈତିକ ନେତୃବୃନ୍ଦ ଓ ପଦାଧିକାରୀଙ୍କ ଗହଣରେ ରବି ରାୟ



ପୂର୍ବତନ ପ୍ରଧାନମନ୍ତ୍ରୀ ଚରଣ ସିଂହଙ୍କ ସହ



ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ବୈଠକରେ ଉଦ୍‌ବୋଧନ ଦେଉଛନ୍ତି ରବି ରାୟ



ପାର୍ଲାମେଣ୍ଟାରୀ ପ୍ରତିନିଧି ଦଳରେ ଚୀନ ଗସ୍ତ କାଳରେ
ପୂର୍ବତନ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ସହ



କୋରିଆ ସାଧାରଣତନ୍ତ୍ରର ସଂସଦୀୟ ପ୍ରତିନିଧିଙ୍କ ସହିତ ରବି ରାୟ



ନବମ ଲୋକସଭାର ବାଚସ୍ପତି ଭାବେ ନିଜ କାର୍ଯ୍ୟାଳୟରେ ରବି ରାୟ



ପୂର୍ବତନ ପ୍ରଧାନମନ୍ତ୍ରୀ ଭି.ପି. ସିଂହଙ୍କ ସହିତ



ଓଡ଼ିଶାର ପୂର୍ବତନ ରାଜ୍ୟପାଳ ମୂରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ରବି ରାୟଙ୍କୁ ରେଭେନ୍‌ସା
ବିଶ୍ୱବିଦ୍ୟାଳୟ ପକ୍ଷରୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ପ୍ରଦାନ କରୁଛନ୍ତି



ଲୋହିଆ ଏକାଡ଼େମୀ ଉଦ୍‌ଘାଟନ ଉତ୍ସବରେ ରବି ରାୟ ପ୍ରଖ୍ୟାତ ସାମ୍ବାଦିକ
କୁଳଦୀପ ନାୟାର ଓ ଡଃ. ବାଳଚନ୍ଦ୍ର ମୁଙ୍ଗେକରଙ୍କ ସହିତ ପ୍ରଦୀପ ପ୍ରଜ୍ଜ୍ୱଳନ



ଚିଟାଗଙ୍ଗ ଅସ୍ତ୍ରାଗାର ଲୁଣ୍ଠନର ନେତା, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ
ଦିନେଶ ଦାସଗୁପ୍ତ (ଦିନେଶ ଦା')ଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି



ଜୀବନୀ ପୁସ୍ତକ 'ମାଟିରୁ ଆକାଶ' ଲୋକାର୍ପଣ ଉତ୍ସବରେ ଓଡ଼ିଶାର ପୂର୍ବତନ
ରାଜ୍ୟପାଳ ରାମେଶ୍ୱର ଠାକୁର, ପ୍ରଖ୍ୟାତ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ
ଓ ମଞ୍ଚାସୀନ ଅନ୍ୟାନ୍ୟ ଅତିଥିମାନଙ୍କ ଗହଣରେ



ଜ୍ୟେଷ୍ଠଭ୍ରାତା ମର୍ଦ୍ଦରାଜ ରାୟ ପୀତାମ୍ବର ମହାପାତ୍ରଙ୍କ ସହ




ରବି ରାୟଙ୍କ ମାନସ ସନ୍ତାନ "ଲୋହିଆ ଏକାଡେମୀ"

# ଶ୍ରୀମାନ୍ ରବି ରାୟଙ୍କୁ ମୁଁ ଯେପରି ଜାଣେ

**ଶ୍ରୀ ଉତ୍ତମ ଦାସ**

ଲୋହିଆ ଏକାଡ଼େମୀ ପକ୍ଷରୁ ଅଳ୍ପଦିନ ପୂର୍ବେ ଚିଠିଟିଏ ମୁଁ ଏକାଡ଼େମୀର ସମ୍ପାଦକ ଶ୍ରୀ ଶାରଦା ମହାନ୍ତିଙ୍କଠାରୁ ପାଇଲି। ରବି ରାୟଙ୍କ ସଂପର୍କରେ କିଛି ଲେଖା ଦେବାକୁ ସେ ଉକ୍ତ ଚିଠିରେ ମୋତେ ଅନୁରୋଧ କରିଛନ୍ତି। ଶ୍ରୀ ରାୟଙ୍କ ସଂପର୍କରେ ତାଙ୍କର ଅନୁଗତ, ଅନ୍ତରଙ୍ଗ, ଅନୁଗାମୀ, ବନ୍ଧୁ, ସହକର୍ମୀ ଓ ସହଯୋଗୀମାନେ ନିକଟରୁ ଓ ଦୂରରୁ ଯେତେ ଓ ଯେଉଁଭଳି ଭାବେ ଜାଣିଥିବେ ସେମାନଙ୍କ ଲେଖା ତୁଳନାରେ ମୁଁ ବା କ'ଣ କେତେ ଲେଖିବି ସେସବୁ ଭାବିଲାବେଳକୁ ମୋର ଚିନ୍ତା ଓ ଚେତନା କେଉଁଆଡ଼େ ହଜିଯାଉଛି। ତଥାପି ସେମାନେ ଜାଣିଥିବା ଲେଖା ରୂପକ ସେତୁବନ୍ଧରେ ମୋ ଲେଖାଟି ଗୁଣ୍ଡୁଚିମୂଷାର ବାଲି ଝାଡ଼ିବା ଭଳି ପ୍ରତୀୟମାନ ହେବ; ହଉ ପଛେ ତାଙ୍କ ବିଷୟରେ ମୁଁ କିଛି ଲେଖୁଛି। ୧୯୪୯-୫୦ ମସିହା ବେଳର କଥା। ନବଗଠିତ ବନମାଳୀପୁର ହାଇସ୍କୁଲର ପ୍ରଥମ ବ୍ୟାଚ୍ ହିସାବରେ ମୋର ଦଶମଶ୍ରେଣୀ। ରବି ରାୟଙ୍କ ପିତୃପ୍ରତିମ ବଡ଼ଭାଇ ସ୍ୱର୍ଗୀୟ ମର୍ଦ୍ଦରାଜ ରାୟ ପୀତାମ୍ବର ମହାପାତ୍ର ମୋର ନବମ ଶ୍ରେଣୀବର୍ଷ ସମ୍ବଲପୁରରୁ ସରକାରୀ ଚାକିରି ଛାଡ଼ି ପ୍ରଧାନ ଶିକ୍ଷକ ରୂପେ ସ୍କୁଲରେ ଯୋଗ ଦେଇଥାନ୍ତି। ମୋର ଯାହା ମନେପଡୁଛି ରବି ରାୟ ସେତେବେଳେ ବି.ଏ. ପାସ୍ କରି ଲ' କଲେଜର ଛାତ୍ର। ସ୍କୁଲଠାରୁ ତାଙ୍କ ନିଜଘର ୩/୪ କି.ମି. ଦୂର ଭଅଁରାଗଡ଼। ଘରକୁ ଆସିବା ହେବ, ସ୍କୁଲରେ ଆମ୍ଭମାନଙ୍କୁ କିଛି ପାଠ ପଢ଼ାଇବା ଛଳରେ ଭାବର ଆଦାନ ପ୍ରଦାନ ହେବ ଏହା ଥିଲା ତାଙ୍କର ଲକ୍ଷ୍ୟ। ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ ସମୟ। କଂଗ୍ରେସ ଶାସନାଧୀନ ସମଗ୍ର ଭାରତ। କିନ୍ତୁ ଆମେ ଯାହା ଲକ୍ଷ୍ୟ କରୁ କଂଗ୍ରେସ ବିରୋଧୀ ସାମ୍ୟବାଦ ଓ ସମାଜବାଦ ତାଙ୍କର ଥାଏ ଜୀବନର ମୂଳ ଲକ୍ଷ୍ୟ। ଓଡ଼ିଶାର ବିଭିନ୍ନ ସ୍ଥାନରେ ସଭାସମିତି ଗଠନ କରି ଲୋକମାନଙ୍କୁ ବିଶେଷ କରି କଲେଜପଢୁଆ ଛାତ୍ରମାନଙ୍କୁ ପ୍ରଲୋଭିତ ଓ ପ୍ରଭାବିତ କରୁଥାନ୍ତି। ତାଙ୍କର ଦୀକ୍ଷା ଗୁରୁ ଥା'ନ୍ତି ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ବିରୋଧୀ ସ୍ୱର୍ଗତ ରାମମନୋହର ଲୋହିଆ, ଯାହାଙ୍କ ନାମରେ ଭୁବନେଶ୍ୱର ନଅ ନମ୍ବର ୟୁନିଟ୍‌ରେ 'ଲୋହିଆ ଏକାଡ଼େମୀ' ସୁପ୍ରତିଷ୍ଠିତ।

କିଛିଦିନ ବନମାଳୀପୁରରେ ଆମ୍ଭମାନଙ୍କୁ ପଢ଼ାଇବା ପରେ (ସେତେବେଳେ ଶିକ୍ଷକ ଅଭାବ ଥାଆନ୍ତି) ଆଇନ କଲେଜରୁ ଶିକ୍ଷା ସମାପ୍ତ କରି କି ଅଧାରୁ କଲେଜ ଛାଡ଼ି ସକ୍ରିୟ ସାମ୍ୟବାଦ ପ୍ରତିଷ୍ଠା ପାଇଁ ରାଜନୀତିରେ ଯୋଗଦିଅନ୍ତି ସେ କଥା ମୋର ଠିକ୍‌ରୂପେ ମନେନାହିଁ। ତାହାପରେ କିଛିଦିନ ପାଇଁ ମୋ ସଙ୍ଗେ ତାଙ୍କର ଦେଖାସାକ୍ଷାତ ହୋଇନାହିଁ।

୧୯୫୬-୫୭ ମସିହା କଥା। ଆଇ.ଏ. ପରୀକ୍ଷା ଦେବାପାଇଁ ୧୦/୧୫ ଦିନ ସକାଶେ ମୁଁ କଟକ ଗଲି। ରବି ରାୟ ଓ ତାଙ୍କ ଘନିଷ୍ଠ ସାଙ୍ଗ ଶ୍ରୀ ନରେନ୍ଦ୍ର ଜେନା ଓ ଅନ୍ୟମାନଙ୍କ ସଙ୍ଗେ କାଠଯୋଡ଼ି କୂଳରେ ରହୁଥିବା ଗୋଟିଏ ଘରେ ରହିଲି। ଡକ୍ଟର ସରସ୍ୱତୀ ସ୍ୱାଇଁ ସେତେବେଳେ ଆଇ.ସି. କି ମେଡ଼ିକାଲ ପାଠ ପଢୁଥାନ୍ତି, ସେ କଥା ଜାଣିବାର ମୋର ଅବକାଶ ନଥିଲା। କିନ୍ତୁ ସେଠାକୁ ସେ ଆସି ବେଳେ ବେଳେ ରହନ୍ତି। ସେତେବେଳର ସାକ୍ଷାତ ପରବର୍ତ୍ତୀ କାଳରେ ଉଭୟଙ୍କୁ ଏକ ଆଦର୍ଶ ଓ ନିରଳସ ଦମ୍ପତି ରୂପେ ଦୁନିଆ ଆଗରେ ଠିଆ କରାଇଛି।

ମୋର ମନେଅଛି ସ୍ୱାଇଁଘର ଝିଅ ଓ ରାୟଘର ପୁଅ ଏ ଦୁହିଁଙ୍କ ବାହାଘର ନେଇ ତାଙ୍କ ଭଅଁରାଗଡ଼ ଗାଁରେ ଏକ ଝଡ଼ ସୃଷ୍ଟିହେଲା କିନ୍ତୁ ତାଙ୍କ କକା ସ୍ୱର୍ଗତ କୃଷ୍ଣଚନ୍ଦ୍ର ରାୟ ଓ ଭାଇ ମର୍ଦ୍ଦରାଜ ରାୟଙ୍କ ଅପ୍ରତିଦ୍ୱନ୍ଦ୍ୱୀ ପ୍ରଭାବ ଯୋଗୁଁ ଗାଁର ସେହି ଝଡ଼ ଆସ୍ତେ ଆସ୍ତେ କମିଗଲା।

କିଛିଦିନ ପରେ ସମାଜବାଦ ପ୍ରସାର ଓ ପ୍ରଚାର ସମ୍ପର୍କରେ ରବିବାବୁ ବନମାଳୀପୁର ଆସନ୍ତି। ବନମାଳୀପୁର ହାଟକୁ ଲାଗି ତାଙ୍କ ପରିବାରର ୪/୫ ବଖରା ଘର ଥାଏ। ସେହି ବଖରା ଭିତରୁ ଗୋଟିଏ ବଖରାରେ ସ୍ୱର୍ଗତ ମହମ୍ମଦ ସମସୁର ଏକ ହୋମିଓପାଥି ଦୋକାନ କରିଥାନ୍ତି। ନାମକୁ ମାତ୍ର ଦୋକାନ କିନ୍ତୁ ସେ ଆସିଲେ ରାଜନୀତି ଚର୍ଚ୍ଚା ଜୋର ଧରେ। ଚର୍ଚ୍ଚାରେ ଥାଆନ୍ତି ରଘୁନାଥ ପାତ୍ର, ମହମ୍ମଦ ସମସୁର ଓ ଭ୍ରମରବର ଜେଠୀ, ହରମୋହନ ପଟ୍ଟନାୟକ ସହିତ ଅନ୍ୟମାନେ। ଓଡ଼ିଶାରେ ରାଜନୈତିକ ବିବାଦରେ ଲିପ୍ତ ନ ରହି ଦେଶର ରାଜନୈତିକ ପ୍ରତିନିଧିତ୍ୱ କରିବାକୁ ଶ୍ରେୟ ମଣିଲେ। ଶ୍ରୀ ରାୟ ଦିନେ ମୋ ପକେଟ୍‌ରେ ଏକ Swanpen ଥିବାର ଦେଖିଲେ ଓ କହିଲେ, "ମୋତେ ସେ କଲମଟା ଦେଇ ଦେ।" ଏ କଥା ଶୁଣି ମତେ ଭାରି ଖୁସି ଲାଗିଲା ଓ ସେ କଥା ଏବେ ମଧ୍ୟ ମୋର ମନେପଡୁଛି ଓ ଭାବେ କାହିଁ ରବି ରାୟ ଓ କାହିଁ ମୁଁ।

'ଲୋହିଆ ଏକାଡ଼େମୀ' ଆଜି ଯେଉଁଭାବରେ ପ୍ରତିଷ୍ଠାଲାଭ କରିଛି ତାହା କେବଳ ରବି ରାୟଙ୍କ ପ୍ରତ୍ୟକ୍ଷ ସହଯୋଗ ଓ ନିରନ୍ତର କାର୍ଯ୍ୟକୁଶଳତା ଯୋଗୁଁ ସମ୍ଭବ ହୋଇଛି।

ପ୍ରାୟ ଦୁଇ ତିନି ମାସରେ ଭିନ୍ନ ଭିନ୍ନ ପ୍ରତିଷ୍ଠିତ ବକ୍ତାମାନଙ୍କ ଭିନ୍ନ ଭିନ୍ନ ସମସ୍ୟା ସଂପର୍କରେ ଭାଷଣ ପ୍ରତିଷ୍ଠିତ ହୁଏ। ଆଗ୍ରହୀ ଶୁଭେଚ୍ଛୁ ବ୍ୟକ୍ତିମାନେ ବକ୍ତାମାନଙ୍କ ଭାଷଣ ଶୁଣିବାକୁ ଆସନ୍ତି। ଅନେକଥର ସମ୍ପାଦକଙ୍କଠାରୁ ଚିଠି ପାଇ ମୁଁ ମଧ୍ୟ ବୈଠକରେ ଯୋଗଦେଇଛି। ବର୍ଷେ ଦୁଇବର୍ଷ ତଳର କଥା। ରବି ରାୟ ଲୋହିଆ ଏକାଡ଼େମୀକୁ ଆସିଥିଲେ। ସଙ୍ଗରେ ଡକ୍ଟର ସରସ୍ୱତୀ ସ୍ୱାଇଁ ମଧ୍ୟ। ଏକାଡ଼େମୀର ବାହାର ଅଗଣାରେ ମୁଁ ତାଙ୍କୁ ନମସ୍କାର କରି ପଚାରିଲି, "ସାର୍ ଆପଣଙ୍କ ବୟସ କେତେ ?" ସେ ମୋତେ କହିଲେ, "ତୁ ଅନୁମାନ କଲୁ ମୋର ବୟସ କେତେ ହୋଇଥିବ", ମୁଁ ଉତ୍ତର ଦେଲି ମୋ ବୟସ ଯେତିକି ଆପଣ ମୋଠାରୁ ୬/୭ ବର୍ଷ ବୟସ ବଡ଼ ହେବେ। ଏବେ କୁହନ୍ତୁ କେତେ ହୋଇଥିବ। ସେ କହିଲେ "ଆରେ ତୁ ଏକବାରେ ଠିକ୍ କହିଲୁ।" ଅନ୍ୟ କଥାବାର୍ତ୍ତା ହେଲା - ସେଦିନ କଥା ଏତିକି।

ଜୀବନରେ ମୁଁ ତାଙ୍କୁ ମୋ ସଂପର୍କରେ କିଛି ମାଗି ନାହିଁ କିନ୍ତୁ ଗୋଟିଏ ଘଟଣାରେ ସେ ଯେପରି ମୋତେ ସାହାଯ୍ୟ କଲେ ସେକଥା ମୋର ଆଜୀବନ ମନେ ରହିବ। କଥାଟି ହେଉଛି ମୋର ଜଣେ ସଂପର୍କୀୟା ଶଳା ଭୁବନେଶ୍ୱରରେ ଥିବା Weavers Service Centreରେ କାମ କରୁଥିଲେ। ହଠାତ୍ ତାଙ୍କର ମଟର ଦୁର୍ଘଟଣାରେ ମୃତ୍ୟୁ ହେଲା। Rehabilitation ଯୋଜନାରେ ତାଙ୍କ ସ୍ତ୍ରୀଙ୍କୁ ଚାକିରି ମିଳିବା କଥା। ଉପରିସ୍ଥ କର୍ମଚାରୀଙ୍କୁ ବହୁ ଆବେଦନ କରାଗଲା କିନ୍ତୁ ସବୁ ଆବେଦନ ପତ୍ର ନାଲିଫିତା ତଳେ ଚାପି ହୋଇ ରହିଗଲା। ସେ କଥା ତାଙ୍କ ସ୍ତ୍ରୀ ମୋ କାନକୁ ଆଣିଲେ ଓ ମୋତେ ଦୁର୍ଦ୍ଦିନରୁ ରକ୍ଷା କରିବାପାଇଁ କାନ୍ଦି କାନ୍ଦି ଅନୁରୋଧ କଲେ। ମୁଁ ତାଙ୍କୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଲି। ଏହି ସମୟରେ ମୋର ରବି ରାୟଙ୍କ କଥା ମନେପଡ଼ିଲା। ମୁଁ ଜାଣିବାକୁ ପାଇଲି ରବି ରାୟଙ୍କ ଘରକୁ ହସ୍ତତନ୍ତ କମିସନର ଆଇ.ଏ.ଏସ୍ ହୃଷିକେଶ ପଣ୍ଡା ପ୍ରାୟ ସବୁଦିନ ସଞ୍ଜବେଳେ ଆସନ୍ତି। ସେ ସେତେବେଳେ ଲୋକସଭାର ବାଚସ୍ପତି। ଏହି କାମରେ ମୁଁ ଦିଲ୍ଲୀ ଗଲି ଓ ରବିରାୟଙ୍କୁ ଘଟଣାର ଆମୂଳଚୂଳ ବର୍ଣ୍ଣନା କଲି। ସେ ସବୁ ଶୁଣିଲେ ଓ କହିଲେ, ମୁଁ ହୃଷିକେଶ ପଣ୍ଡାଙ୍କୁ କହିଦେବି। ସେ କହିଲେ ତୁ ଭୁବନେଶ୍ୱର ଫେରିଯା ସପ୍ତାହକ ଭିତରେ ତାଙ୍କୁ ଚାକିରି ମିଳିଯିବ। ତାହାହିଁ ହେଲା, ସେ ଦୁସ୍ଥ ପରିବାରଟି ସବୁଦିନ ପାଇଁ ବଞ୍ଚିଗଲା।

ତାଙ୍କ ବିଷୟରେ ଦିପଦ ଲେଖିଲାବେଳେ ମୋର ମନେପଡ଼େ, ସେ ଦେଶର ସ୍ୱାସ୍ଥ୍ୟମନ୍ତ୍ରୀ ହେଲେ, ଦେଶର ଲୋକସଭାର ବାଚସ୍ପତି ହେଲେ। ନିୟମ ବହିର୍ଭୂତ ବିଲ୍ ପାସ୍ ହେବାପାଇଁ ଭିନ୍ନ ଭିନ୍ନ ଦଳର ସଭ୍ୟମାନେ ଲୋକସଭାରେ ହଟ୍ଟଗୋଳ କଲେ ମଧ୍ୟ

ସେ ନିୟମରୁ କେବେ ବହିର୍ଭୂତ ହୋଇ ନାହାନ୍ତି କି ଅନ୍ୟାୟକୁ ସମର୍ଥନ କରି ନାହାନ୍ତି। ତାଙ୍କ ପରି ସରଳ, ନିଷ୍କପଟ, ଦକ୍ଷ, ବିଚକ୍ଷଣ ଓ ପ୍ରତିଭାସମ୍ପନ୍ନ ବାଚସ୍ପତି କେବେ ଲୋକସଭାରେ ନଥିଲେ କି ନଥିବେ। ଅତ୍ୟନ୍ତ ନିରପେକ୍ଷ ଓ ବିବେକାନୁମୋଦିତ ନିଷ୍ପତ୍ତିମାନ ଲୋକସଭାରେ ଗ୍ରହଣ କରି ଅଧ୍ୟକ୍ଷ ପଦର ଗରିମା ଓ ମହତ୍ତ୍ୱ ବୃଦ୍ଧି କରିଛନ୍ତି।

ଦେଶରେ ବର୍ତ୍ତମାନ ଯେପରି ଭାବରେ ଦଳ ପରିବର୍ତ୍ତନ କଥା ଦେଖାଯାଉଛି ସେ କଥା ଜଣେ ବୁଦ୍ଧିଜୀବୀ ଓ ନ୍ୟାୟନିଷ୍ଠ ନାଗରିକ ପକ୍ଷେ ଚିନ୍ତାକରିବା ଅସମ୍ଭବ। କିନ୍ତୁ ରବି ରାୟଙ୍କୁ ଦଳ ପରିବର୍ତ୍ତନ କରିବା ପାଇଁ କିଭଳି ଭାବରେ ପ୍ରଲୋଭନ ନ କରାଯାଇଛି ? ଏପରିକି ବାଚସ୍ପତି କାର୍ଯ୍ୟକାଳ ସରିବା ପରେ ଆନ୍ଧ୍ରପ୍ରଦେଶର ରାଜ୍ୟପାଳ ହେବା ପାଇଁ ଆମନ୍ତ୍ରଣକୁ ସେ ବିନା ଦ୍ୱିଧାରେ ପ୍ରତ୍ୟାଖ୍ୟାନ କଲେ। ସ୍ୱାଧୀନତା ଯାହାର ଅସ୍ଥିମଜ୍ଜାଗତ ସେ ଯେ କୌଣସି ମୁଖ୍ୟମନ୍ତ୍ରୀଙ୍କର ହାତ ଟେକାକୁ ଗ୍ରହଣ କରିପାରେ ନାହିଁ।

ସମାଜରେ ଦେଖାଯାଉଛି ଜଣେ ରାଜନେତା ରାଜ୍ୟସଭାକୁ କିମ୍ବା ଲୋକସଭାକୁ ନିର୍ବାଚିତ ହୋଇଗଲେ ବା ମନ୍ତ୍ରୀ ହେଲେ ତାଙ୍କଠାରୁ କିଛି ସୁବିଧା ନେବାକୁ ଆଶାୟୀ ପ୍ରାର୍ଥୀମାନଙ୍କ ଦ୍ୱାରା ଯେତେ ପରିମାଣରେ ଆର୍ଥିକ ଓ କାୟିକ ସାହାଯ୍ୟ ବିନା ଚେଷ୍ଟାରେ ତାଙ୍କ ପକେଟ୍‌କୁ ଆସେ ସେ କଥା ସମସ୍ତେ ଅନୁଭବ କରୁଥିବେ। କିନ୍ତୁ ଆଶ୍ଚର୍ଯ୍ୟ ଲାଗେ ଶ୍ରୀ ରାୟ ଏତେ ଉଚ୍ଚ ପଦପଦବୀରେ ଥାଇ ମଧ୍ୟ ସେ ପ୍ରକାର ପ୍ରଲୋଭନର ଶିକାର ହୋଇ ନାହାନ୍ତି।

ପରିଶେଷରେ ମୋର ସର୍ବ ନିୟନ୍ତା ଈଶ୍ୱରଙ୍କୁ ଏତିକି ପ୍ରାର୍ଥନା ଏଭଳି ସ୍ୱାଭିମାନୀ ଓ ସ୍ୱାଧୀନଚେତା ରବି ରାୟଙ୍କୁ ସସ୍ତ୍ରୀକ ନିରାମୟ ଜୀବନଯାପନ କରିବାରେ ସାହାଯ୍ୟ କରନ୍ତୁ। ଜୟ ହିନ୍ଦ୍ !

■■■

# ରବିଦା

**ପ୍ରଫେସର କୃଷ୍ଣନାଥ**

ରବିରାୟ ଜୀବନର ୮୦ ବର୍ଷ ପୂରଣ କଲେ। ଖୁସିର କଥା। ୨୦୦୫ ଡିସେମ୍ବର ୭ ତାରିଖରେ ନୂଆଦିଲ୍ଲୀରେ ରାଷ୍ଟ୍ରୀୟ ସ୍ତରରେ ତାଙ୍କର ସ୍ନେହୀ ସହଯୋଗୀମାନେ ଏଥିପାଇଁ ଏକ ସମାରୋହର ଆୟୋଜନ କରିଥିବା ଓ ସେଥିରେ ମହାମାନ୍ୟ ଦଲାଇଲାମା ଭାଗନେଇଥିବା ଆନନ୍ଦର ବିଷୟ।

ତାଙ୍କ ବିଷୟରେ କିଛି ଲେଖିବାକୁ ମୋତେ କୁହାଯାଇଛି। ୫୨ ବର୍ଷରୁ ବି ଅଧିକ ସମୟର ସଂପର୍କ। କ'ଣ ଲେଖିବି ! ସ୍ମୃତି ସବୁ ଚଳଚ୍ଚିତ୍ର ସମ ଆଖି ଆଗରେ ଭାସିଯାଉଛି। କାହାକୁ ଧରି ରଖିବି; କାହାକୁ ଛାଡ଼ିବି ?

**ପ୍ରଥମ ସ୍ମୃତି :** ୧୯୫୩ ମସିହାରେ କାଶୀ ବିଦ୍ୟାପୀଠରେ ସମାଜବାଦୀ ଯୁବକ ସଭାର ସ୍ଥାପନା ସମ୍ମିଳନୀ। ଡଃ ରଙ୍ଗନାଥ ଏହାର ସଂଯୋଜକ। ଏହାପୂର୍ବରୁ ରେଙ୍ଗୁନ୍‌ରେ ଆୟୋଜିତ ପ୍ରଥମ ଏସିଆ ସମାଜବାଦୀ ସମ୍ମିଳନୀରେ ସେ ଭାରତୀୟ ପ୍ରତିନିଧି ମଣ୍ଡଳର ସଦସ୍ୟଭାବେ ଯୋଗ ଦେଇଥିଲେ, ତେଣୁ ବଡ଼ ସମ୍ମିଳନୀ ଆୟୋଜନ କରିବାର ଧାରଣା ତାଙ୍କର ଥିଲା। ପ୍ରତିଭାବାନ୍ ଯୁବକ-ଯୁବତୀ ସାଥୀମାନଙ୍କ ସହଯୋଗ ମିଳିଲା। ଡଃ ରାମମନୋହର ଲୋହିଆଙ୍କ ସଂପୂର୍ଣ୍ଣ ଯୋଗଦାନ ଥିଲା। ସେ ମାର୍ଗଦର୍ଶନ ମୂଳକ ଅଭିଭାଷଣ ବି ଦେଲେ। ସମ୍ମିଳନୀର ଉଦ୍‌ଯାପନ ଅଧିବେଶନ ବନାରସର ଟାଉନ୍‌ହଲ୍‌ରେ ହେଲା। ସେଥିରେ କିଛି ବଛାବଛା ପ୍ରତିନିଧି ନିଜ ମାତୃଭାଷାରେ ବକ୍ତବ୍ୟ ରଖିଲେ। ରବିରାୟ ଓଡ଼ିଆରେ କହିଲେ। ଯଦିଓ ସେ ଇଂରାଜୀରେ ଜଣେ ପ୍ରଭାବଶାଳୀ ବକ୍ତା। ଏହା ଥିଲା 'ଅଂଗ୍ରେଜୀ ହଟାଅ' (ଦେଶୀଭାଷା ବଞ୍ଚାଅ) ଆନ୍ଦୋଳନର ପୂର୍ବାଭାଷ। ପରେ ସେ ଉତ୍ତରପ୍ରଦେଶ ଓ ବିହାରର ନିପଟ ଗାଁରେ ବୁଲିବାବେଳେ ଜାଣି ଅତି ଖୁସିହେଲେ ଯେ ଲୋକଭାଷା ଭିତରେ ଅନେକ ସାମ୍ୟ ଅଛି। ବିଶେଷକରି ଓଡ଼ିଆ, ଭୋଜପୁରୀ, ମଗଧୀ, ମୈଥିଳୀ, ଛତିଶଗଡ଼ ଆଦି ଭାଷାର ପ୍ରାୟ ୯୯% ଭାଗ ଶବ୍ଦ ସମାନ ବୋଲି ତାଙ୍କର ମତ। ଶତକଡ଼ା ଯାହା ହେଉ ଆମ ଦେଶର ଲୋକଭାଷାରେ ଯେ ସମରସତା ପ୍ରବାହିତ ହେଉଛି ଏଥିରେ ସନ୍ଦେହ ନାହିଁ।

ଏହି ସାମ୍ୟ ଆଉ ଏକ ସ୍ମୃତିକୁ ଉଜାଗର କରିଦେଲା । ୧୯୭୦ ଦଶକର କଥା । ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ ଚିଲିକା କୂଳରେ ଦୂରଗାଁରେ ସମାଜବାଦୀମାନଙ୍କର ଏକ ଶିବିର ହେଉଥିଲା । ନାରାୟଣ ସାହୁ ସେ ଅଞ୍ଚଳର ବିଧାୟକ ଥିଲେ (ଶ୍ରୀ ନାରାୟଣ ସାହୁ ୧୯୬୭-୭୧) ମସିହାରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିରୁ ଖଲ୍ଲିକୋଟର ବିଧାୟକ ଥିଲେ । ସେ ଶିବିରରେ ସମାଜବାଦୀ ସିଦ୍ଧାନ୍ତ ଓ ବ୍ୟବହାର ସଂପର୍କରେ ବକ୍ତୃତା ଦେବାକୁ ରବିଦା କହିଥିଲେ । ତାଙ୍କ କଥା କୋଉଠୁ ତଳେ ପକାଇ ହେବ । ତେଣୁ ମୁଁ ଦିଲ୍ଲୀରୁ ନୂଆ ଆରମ୍ଭ ହୋଇଥିବା ଦିଲ୍ଲୀ-ପୁରୀ ଏକ୍ସପ୍ରେସ୍‌ରେ ଦିନ ରାତି ଯାତ୍ରା କରି ଭୁବନେଶ୍ୱରରେ ପହଞ୍ଚିଲି । (ପୂର୍ବରୁ ଓଡ଼ିଶାରୁ ଦିଲ୍ଲୀକୁ ସିଧା ଟ୍ରେନ୍ ନଥିଲା । ରବି ରାୟଙ୍କ ପ୍ରଚେଷ୍ଟାରେ ଉତ୍କଳ ଏକ୍ସପ୍ରେସ୍ ଚାଲିଥିଲା) । ଭୁବନେଶ୍ୱରରେ ବିଧାୟକ ନିବାସରେ ପ୍ରଥମ ମହଲାରେ ରହିଲି । ସେଠି ଗୋଟିଏ ସୁନ୍ଦର ଅନୁଭୂତି । ଅଧରାତିରେ ମୋତେ ଲାଗିଲା ଝରକାଟିକୁ କିଏ ବାଡ଼େଉଛି । ଆଲୁଅ ଜାଳି ଦେଖିଲି କେହି ନାହିଁ । ବଙ୍ଗୋପସାଗର ଆଡୁ ପ୍ରବାହିତ ପବନର ଧକ୍କା ।

ଭୁବନଶ୍ୱେରରୁ ଜଣେ ସାଥୀ ଚିଲିକା ନେଇଗଲେ । ସାଗରର ଏକ ଅଂଶ ଅଲଗା ହୋଇଛି । ଶିବିର ସମୟରେ ପୂର୍ଣ୍ଣମୀ ପଡ଼ିଲା । ଜ୍ୟୋସ୍ନାସ୍ନାତ ଚିଲିକା ଶିବିର ପାଇଁ ନୁହେଁ ନୌକା ବିହାର ପାଇଁ ଅଧିକ ଉପଯୁକ୍ତ । ସାଥୀମାନଙ୍କ ସହ ନୌକା ବିହାର ହେଲା । ଜଣେ ସାଥୀ ଓଡ଼ିଆ କବିଙ୍କର ପଂକ୍ତି ସ୍ୱର ଦେଇ ବୋଲିଲେ । ସବୁଠୁ ରୁଚିକର ଲାଗିଲା । ଚୈତିନ୍ୟ ମହାପ୍ରଭୁଙ୍କ ସମୟରୁ ହୋଇ ଆସୁଥିବା ତାଳ ବେତାଳର କୀର୍ତ୍ତନ ଶୁଣିଲି ।

ମୋ ଭାଷଣ ହିନ୍ଦୀରେ ଦେଲି । ରବିଦା ଓଡ଼ିଆ ଅନୁବାଦ କଲେ । ଅନୁବାଦ ମୂଳ ଭାଷଣଠୁ ଉକ୍ରୃଷ୍ଟ । ହଁ, ଗାଁରେ ବୁଲିଲାବେଳେ ଗୋଟିଏ 'ପେଖାରୀ' ଦେଖିଲି । ପାଠୁଆଲୋକେ ତାକୁ 'ତଲାବ' କହିବେ । ପଚାରିଲି ଓଡ଼ିଆରେ କ'ଣ କହନ୍ତି ? ଉତ୍ତର ମିଳିଲା ପୋଖରୀ । ହିନ୍ଦୀରେ 'ପେଖରା' ଓଡ଼ିଆରେ 'ପୋଖରୀ' । ପଠାଇବାକୁ ବନାରସ ଗାଁରେ 'ପଠାଓ' କହନ୍ତି ଓଡ଼ିଆରେ କହନ୍ତି 'ପଠାଅ' । ଏମିତି ଅସଂଖ୍ୟ ଶବ୍ଦ ରହିଛି ।

ଏହା ପୂର୍ବରୁ ଗୋଟିଏ ଘଟଣା । ପ୍ରାୟ ୧୯୫୬ ମସିହାରେ ଦଶହରା ଛୁଟିରେ ବଡ଼ଭାଇ ଶ୍ରୀନାଥ ଶର୍ମାଙ୍କ ପାଖକୁ କଲିକତା ଆସିଲି । ଉତ୍ସବରେ ମଜିଗଲି । ସତ୍ୟଜିତ୍ ରାୟଙ୍କର ଅପରାଜିତା ଦେଖିଲି । ପୁରୀ ସମୁଦ୍ରତଟରେ ସପ୍ତାହେ କଟାଇବପାଇଁ ଭୁବନେଶ୍ୱର ଆସିଲି । ରବିଦାଙ୍କୁ ଭେଟି ପୁରୀ ଯିବା ଇଚ୍ଛା କିଶାନ ପଟ୍ଟନାୟକ ଖବର

ଦେଲେ ରବିଦା ଓ ଅନ୍ୟସାଥୀ ସତ୍ୟାଗ୍ରହ କରି ଜେଲରେ ବନ୍ଦୀ। କିଶାନଜୀଙ୍କ ସହ ପ୍ରଥମ ଦେଖା। (ପରେ ଉଭୟ "ମ୍ୟାନ୍‌କାଇଣ୍ଡ" ପତ୍ରିକାର ସମ୍ପାଦନ କଲୁ)। ଦୁହେଁ ସ୍ଥିରକଲୁ ଜେଲ୍ ଯାଇ ରବିଦାଙ୍କୁ ଭେଟିବୁ।

ସରକାରୀ ନିୟମ ଅନୁସାରେ ଜିଲ୍ଲାପାଳଙ୍କ ଅନୁମତି ଲୋଡ଼ା। ସେ ଅବସର ନଥିଲା। ମୁଁ କହିଲି ବନାରସରୁ ଆସିଛି ଯେମିତି ହେଲେ ରବିଦାଙ୍କୁ ଭେଟିବି। ସୁଯୋଗ ନଦେଲେ ସତ୍ୟାଗ୍ରହ କରି ଜେଲ ଯିବି। ଜେଲର କ'ଣ ବିଚାରିଲା କେଜାଣି ଅଳ୍ପ ସମୟ ପାଇଁ ରବିଦା ଓ ଅନ୍ୟ ସାଥୀମାନଙ୍କୁ ଫାଟକ ପାଖକୁ ଆଣି ଭେଟାଇଦେଲା। ମୁହୂର୍ତ୍ତର ଭେଟ ପୁଣି ବିଚ୍ଛେଦ। ରବିଦାଙ୍କଠୁ ପରିଚୟ ଦେଇ ପୁରୀ ସ୍ୱର୍ଗଦ୍ୱାର ପାଖ ବନ୍ଧାଇବାବୁଙ୍କ ଘ' ଦୋକାନ ପାଖରେ ପୁରୀ ସମୁଦ୍ର ତଟରେ ସପ୍ତାହେ ବିତାଇ ଦେଲି।

ସ୍ମୃତି ସବୁ ଲହଡି ଭାଙ୍ଗୁଛନ୍ତି। ଆଉ ଏକ ସ୍ମୃତି। ତିବ୍ବତ ଉପରେ ଚୀନ୍‌ର ପ୍ରଭୁତ୍ୱକୁ ମାନି ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ କେବଳ ଭୁଲ୍ କରିନାହାନ୍ତି, ପାପ କରିଅଛନ୍ତି। ସେ ପାପର ପ୍ରତିଫଳ ହେଲା ୧୯୬୨ ମସିହାର ଚୀନ୍ ଆକ୍ରମଣ ଓ ଭାରତର ଉତ୍ତର ସୀମାରେ ଚୀନ୍‌ର ଭୟଙ୍କର ଉପସ୍ଥିତି।। ୧୯୫୯ ମସିହାରେ ମହାମାନ୍ୟ ଦଲାଇଲାମା ଓ ତାଙ୍କର ଅନୁଗାମୀ ସାଧକସମୂହ ଭାରତରେ ଶରଣ ନେଲେ। ପ୍ରାୟ ଲକ୍ଷେ ତିବ୍ବତୀ ଭାଇଭଉଣୀଙ୍କ ଦୁଃଖଯନ୍ତ୍ରଣା ଅବର୍ଣ୍ଣନୀୟ। ତାଙ୍କ ସମର୍ଥନରେ କିଛି ଲୋକ କାମ କରୁଛନ୍ତି।

୧୯୮୦-୯୦ ଦଶକରେ ମଧୁଲିମାୟେ ଭାବିଲେ ସମସ୍ତଙ୍କୁ ଏକାଠି କରି ଗୋଟିଏ ସଂଗଠନ ଗଢ଼ାଯିବା ଉଚିତ। ତାହା ଜଣେ ସର୍ବମାନ୍ୟ ବ୍ୟକ୍ତିର ଛତ୍ରଛାୟାରେ ରହିବା ଆବଶ୍ୟକ। ସିଏ କିଏ ?

ଇତି ମଧ୍ୟରେ ଗଙ୍ଗା ଓ ମହାନଦୀରେ ଅନେକ ପାଣି ବୋହିଯାଇଥିଲା। ରବିଦା, ସାଂସଦ, ଭାରତର ସ୍ୱାସ୍ଥ୍ୟମନ୍ତ୍ରୀ ଓ ଶେଷରେ ଲୋକସଭାର ବାଚସ୍ପତି। ସ୍ଥିର ହେଲା ରବି ରାୟ ହେବେ ଭାରତ-ତିବ୍ବତ ମୈତ୍ରୀ ସଂଘର ସଭାପତି। ତାଙ୍କ ଆସନ ତଳେ ସବୁ ଦଳ ଓ ନିର୍ଦ୍ଦଳୀୟ ନେତା କାମ କରିଛନ୍ତି। ବାଚସ୍ପତି ହେବାପରେ ସେ ଦଳର ଉର୍ଦ୍ଧ୍ୱରେ ରହିଲେ। ଏବେ ବି ବହୁ ସମାଜବାଦୀ ନେତା ସେମାନଙ୍କ ଦଳର ଅଧ୍ୟକ୍ଷ ପଦ ରବିରାୟଙ୍କୁ ଯାଚୁଛନ୍ତି ରବିରାୟ କିନ୍ତୁ ପୁରୀ ସମୁଦ୍ର ପରି ମର୍ଯ୍ୟାଦାବାନ୍। ସେ ସୀମା ଲଙ୍ଘି ନାହାନ୍ତି। ନିଜକୁ ସୀମାବଦ୍ଧ ମଧ କରିନାହାନ୍ତି। 'ଲୋକ ଶକ୍ତି ଅଭିଯାନ' ମାଧ୍ୟମରେ ସେ ଏବେ ବି ଯୁବପୀଢ଼ି ସହ ସଜାଗ ଓ ସକ୍ରୀୟ। ଏବେ ତାଙ୍କ ସକ୍ରିୟତା ଅପେକ୍ଷା

ଉପସ୍ଥିତି ହିଁ କାମ କରୁଛି। ଏ ଜୀବନଯାତ୍ରାରେ ତାଙ୍କର ଅର୍ଦ୍ଧାଙ୍ଗିନୀ ସରସ୍ୱତୀ ସହଯୋଗ ନ କରିଥିଲେ କ'ଣ ହୋଇଥାନ୍ତା କହିବା କଷ୍ଟକର।

ନିଜର ସଚେତତା, ସହଜତା ଓ ସର୍ବଜନ ପ୍ରିୟତା ସହ ସିଦ୍ଧାନ୍ତ ଓ ଆଦର୍ଶ ପାଇଁ ନିଷ୍ଠାପର ସମର୍ପଣ ପୁଣି ସତତ ଜାଗ୍ରତ ରହିବା ସହ ସାଗର ସମ ଗାମ୍ଭୀର୍ଯ୍ୟର ପ୍ରତୀକ ହେଲେ - ରବିଦା। ଆମେ ନିର୍ଭୟରେ ଶୋଉଛୁ କାରଣ ନିକଟରେ ଜଗନ୍ନାଥ ପୁରୀର ସାଗର ଜାଗ୍ରତ ଅଛି। ସେଇ ସାଗର ସମ ରବିଦାରଙ୍କ ସ୍ୱାସ୍ଥ୍ୟ ଓ ସୁଖ କାମନା କରୁଛି।

(ସଂଗୃହୀତ ଲେଖା)

▮▮▮

# ଲୋହିଆଙ୍କ ଲୋକ

**ଶ୍ରୀ ଜନେଶ୍ୱର ମିଶ୍ର**

ଲୋହିଆବାଦୀଙ୍କ ମଧ୍ୟରେ ରବିରାୟ ନିଜ ସିଦ୍ଧାନ୍ତ, ନିଷ୍ଠା ଓ ଶାଳୀନତା ଯୋଗୁ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି। ମୁଁ ତାଙ୍କୁ ପ୍ରାୟ ଷାଠିଏ ବର୍ଷ ହେବ ଖୁବ୍ ନିକଟରୁ ଜାଣିବାର ସୁଯୋଗ ପାଇଛି। ଆମ ସମାଜବାଦୀମାନଙ୍କ ପାଇଁ ସଂଗଠନ ଓ ଆନ୍ଦୋଳନ କରିବାରେ ସେ ସମଗ୍ର ଜୀବନକୁ ସମର୍ପଣ କରିଛନ୍ତି। ଭାରତୀୟ ରାଜନୀତିରେ ଲୋହିଆଙ୍କ ସହ ଓ ପରବର୍ତ୍ତୀକାଳରେ ମଧୁଲିମାୟେ, ରାଜନାରାୟଣ, କର୍ପୁରୀଠାକୁର ଓ ରାମସେବକ ଯାଦବଙ୍କ ଭଳି ନେତାଙ୍କ ସହ ଦେଶର ଚାଷୀ, ଶ୍ରମିକ ଓ ଛାତ୍ରଙ୍କ ଲଢ଼େଇକୁ ଆଗକୁ ନେବାରେ ରବିରାୟଙ୍କ ଯୋଗଦାନ ସଂପର୍କରେ ସମସ୍ତେ ପରିଚିତ।

ରବିରାୟ ଆମ ସମସ୍ତଙ୍କର ଅଗ୍ରଜ ଓ ଶୁଭଚିନ୍ତକ। ତାଙ୍କ ଜୀବନରୁ ଆମେ ସମସ୍ତେ ଶକ୍ତି ଓ ପ୍ରେରଣା ପାଉ। ମୁଁ ଏଭଳି ଜଣେ ଆଦର୍ଶବାଦୀ ଜନନେତାଙ୍କ ଅଭିନନ୍ଦନ ସମାରୋହରେ ନିଜକୁ ସାମିଲ କରି ଅତ୍ୟନ୍ତ ପ୍ରସନ୍ନତା ଅନୁଭବ କରୁଛି।

(ସଂଗୃହୀତ ଲେଖା)

▮▮▮

# ଦାଦା

**ଶ୍ରୀମତୀ ଡଲି ରାୟ**

ଦୀର୍ଘ ୩୭ ବର୍ଷ ବିତି ଗଲାଣି ବାପାଙ୍କର ଦେହାନ୍ତ ହେବା। ମୁଁ ସେତେବେଳେ ପଞ୍ଚମ ଶ୍ରେଣୀରେ ପଢୁଥିଲି। ଆମେ ଭାଇଭଉଣୀ ପାଞ୍ଚଜଣ। ସେତେବେଳେ ଆମର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା। ଆମେ ଦୁଇଭଉଣୀ ମାଟ୍ରିକ୍ ପର୍ଯ୍ୟନ୍ତ ପଢ଼ିଲୁ। ୧୯୯୯ ମସିହା ଏପିଲ୍ ମାସରେ ମୋର ବାହାଘର ଶ୍ରୀଯୁକ୍ତ ରବି ରାୟଙ୍କ ସାନପୁତୁରା ସହିତ। ମୁଁ ୨୦୦୨ରେ କଟକରେ ଆସି ଦାଦା (ରବି ରାୟ)ଙ୍କ ପାଖରେ ରହିଲି। ଦାଦା ସେତେବେଳେ ଦିଲ୍ଲୀରେ ଦୁଇମାସ ଓ କଟକରେ ଦୁଇମାସ ରହୁଥିଲେ। ସେ ମୋ ବଡ଼ଝିଅକୁ ବହୁତ ଭଲପାଆନ୍ତି। ତାକୁ କୋଳରେ ବସାଇ ବହୁ ସମୟ ଧରି ତା' ସାଙ୍ଗରେ ଖୁସିମଜା କରନ୍ତି। ତା'ପରେ ମୋତେ ପଚାରନ୍ତି ଡଲି ଆଜି କ'ଣ ରୋଷେଇ କରିଛୁ? ଯଦି ଚୂନାମାଛ ଭଜା ଶୁଣିବେ ବହୁତ ଖୁସି ହେଉଥିଲେ। ଖାଇଲାବେଳେ ଗାଁର ସମସ୍ତଙ୍କ କଥା ପଚାରୁଥିବେ ଆଉ ତାଙ୍କ ମୋ ପିଲାଦିନର ଚପଳତା କଥା କହି ତାଙ୍କ ମୋ ଭିତରେ ବହୁତ ହସାହସି ହେଉ। ତାଙ୍କ ପାଖରେ ମୁଁ ଝିଅପରି ଚଳିଛି।

ସେ ଜଣେ ଅସାଧାରଣ ଲୋକ। ତାଙ୍କ ପାଖରେ ସମସ୍ତେ ସମାନ। ତାଙ୍କ ପାଖରେ ପାଞ୍ଚବର୍ଷ ରହିଛି କେବେ ତାଙ୍କ ମନରେ ଅହଂକାର, ରାଗ, ଲୋଭ ମୁଁ ଦେଖିନାହିଁ। ସେ ସବୁବେଳେ ପେପର ପଢୁଥିବେ ବେଳେବେଳେ ଅନ୍ୟମନସ୍କ ରହୁଥିଲେ। ମୁଁ ପଚାରିଲେ କହନ୍ତି ଦେଶ କିପରି ବଞ୍ଚିବ? ଦେଶ ପାଇଁ ସ୍ୱାଧୀନତା ସଂଗ୍ରାମୀ ହୋଇଥିଲେ। ଦାଦା ଓ ବିଜୁ ପଟ୍ଟନାୟକଙ୍କ ପ୍ରାୟ ସୁସଂପର୍କ ଥିଲା। ସେ ନିଜ ପାଇଁ କରିବାକୁ ଭଲପାଆନ୍ତି ନାହିଁ। ସେ ସବୁବେଳେ ଦେଶ ପାଇଁ ଚିନ୍ତା କରି ଅନେକ କିଛି କରିଛନ୍ତି। ଆମର ବାଚସ୍ପତି ହୋଇଥିଲେ ଏବଂ ସେ ଆମ ବଂଶ, ଆମ ଓଡ଼ିଶାର ସ୍ୱନାମଧନ୍ୟ, ଓଡ଼ିଆ ଜାତିର ମାନସମ୍ମାନ ଟେକ ରଖିଛନ୍ତି। ତାଙ୍କର କାର୍ଯ୍ୟକଳାପ ଆମ ପାଇଁ ଚିରସ୍ମରଣୀୟ। ସେ ସବୁବେଳେ କହନ୍ତି ମଣିଷର କର୍ତ୍ତବ୍ୟ, ଧୈର୍ଯ୍ୟ ହେଉଛି ମାନଦଣ୍ଡ। ଦୁଃଖକୁ ଦେଖି କେବେ କାତର ହୁଅନାହିଁ। ସୁଖରେ କେବେ ଅଧୀର ହୁଅନାହିଁ। "ସହି ସମ୍ଭାଳି କାର୍ଯ୍ୟ କଲେ ବିପଦ ନ ପଡ଼େ ଭଲେ"– ଏହି ମନ୍ତ୍ର ଆମମାନଙ୍କୁ ଶିକ୍ଷା ଦେଇଛନ୍ତି। "ହାରିବା କଥା ନ ଧର ମୁଖେ, ଧୀର ପାଣି ଯେପରି ପଥର କାଟେ"।

ଜଗତର ନାଥ ଜଗନ୍ନାଥ ତାଙ୍କ ଜୀବନକୁ ସୁପଥଗାମୀ କରନ୍ତୁ, ମୋର ଭଗବାନଙ୍କ ପାଖେ ପ୍ରାର୍ଥନା।

▮▮▮

# ସ୍ମୃତି ସେ ତ ନୁହେଁ ଭୁଲିବାର

**ତୁଷାରକାନ୍ତ**

ହିଟଲରଙ୍କ ଅଭ୍ୟୁଥାନ ବେଳେ ଜର୍ମାନ ଦେଶରେ ମିଃ. ମାର୍ଟିନ ନିଏମାଲର ନାମକ ଜଣେ ଧର୍ମଯାଜକ ଥିଲେ, ଯିଏ ନାଜୀମାନଙ୍କ ଦ୍ୱାରା ବିଭିନ୍ନ ବର୍ଗର ଲୋକଙ୍କୁ ହତ୍ୟା କରାଯିବା ଉପରେ କହିଥିଲେ, "ସେମାନେ ପ୍ରଥମେ ସମାଜବାଦୀମାନଙ୍କୁ ମାରିବାକୁ ଆସିଥିଲେ କିନ୍ତୁ ମୁଁ ଯେହେତୁ ସମାଜବାଦୀ ନଥିଲି, ସେହେତୁ ମୁଁ ପାଟି ଫିଟେଇ ନଥିଲି। ତା'ପରେ ସେମାନେ ଯେତେବେଳେ ଶ୍ରମିକ ସଂଗଠନର କର୍ମକର୍ତ୍ତା ଓ ଇହୁଦୀମାନଙ୍କୁ ମାରିବାକୁ ଆସିଥିଲେ, ମୁଁ ପାଟି ଫିଟେଇ ନଥିଲି କାରଣ ମୁଁ ସେ ସବୁ ବର୍ଗର ନଥିଲି। ଶେଷରେ ସେମାନେ ଯେତେବେଳେ ମୋତେ ମାରିବାକୁ ଆସିଥିଲେ, ସେତେବେଳେ ମୋ ପାଇଁ ପାଟି ଫିଟେଇବାକୁ କେହି ନଥିଲେ। ଏପରି ଉଦାହରଣଟିକୁ ଏହି ଲେଖାରେ ସନ୍ନିବେଶିତ କରାଯିବାର ହେତୁ ନିମ୍ନରେ।

୧୯୭୦ ମସିହା ପାଖାପାଖି କଥା। ସେତେବେଳେ ନକ୍ସଲବାଦର ଆଦର୍ଶ ମୋ ଭଳି ବହୁ ଛାତ୍ରଙ୍କୁ ଘାରିଥାଏ। ଗଣମାଧ୍ୟମ ନକ୍ସଲପନ୍ଥୀଙ୍କୁ ଲାଲ୍ କମ୍ୟୁନିଷ୍ଟ ରୂପେ ଓ ନିର୍ବାଚନପନ୍ଥୀ ସାମ୍ୟବାଦୀମାନଙ୍କୁ ଗୋଲାପୀ (ଅର୍ଥାତ୍ ନରମପନ୍ଥୀ) କମ୍ୟୁନିଷ୍ଟ ରୂପେ ଅଭିହିତ କରୁଥାଏ। ଗୋଲାପୀ କମ୍ୟୁନିଷ୍ଟ ପାର୍ଟିରେ ଥିବା ମୋ ଭଳି କିଛି ଯୁବକଙ୍କୁ କିନ୍ତୁ ଲାଲ୍ କମ୍ୟୁନିଷ୍ଟଙ୍କ ଆଦର୍ଶ ଓ ତ୍ୟାଗ ଆକୃଷ୍ଟ କରୁଥାଏ। ମାଓ-ସେ-ତୁଙ୍ଗ (ଏବେକୁ ତାଙ୍କ ନାମକୁ ମାଓ-ଜେ-ଡଙ୍ଗକୁ ବଦଳାଇ ଦିଆଯାଇଛି ଓ ତାଙ୍କ ନାତୁଣୀ, ଚୀନ୍ ଦେଶର ତୃତୀୟ ବଡ଼ ପୁଞ୍ଜିପତି)ଙ୍କ Red Book ବା ଲାଲ୍ କିତାବକୁ ଆମ ଦେଶର ସରକାର ନିଷିଦ୍ଧ କରିଥାନ୍ତି। ସେଇ ବହିକୁ ଚୋରାରେ ଆଣି, ପାଇଖାନାରେ ଖୋପ କରି ସେଥିରେ ରଖି ଆମେ ପଢୁଥିଲୁ। ଆମକୁ ଶିଖେଇ ଦିଆଯାଇଥାଏ ଯେ "ବିପ୍ଳବ ଆସି ଦୁଆରେ ଖଟଖଟ କଲାଣି ଓ ଡେଇଁପଡ଼ ତଥା ସମାଜବାଦୀ, ଗାନ୍ଧିବାଦୀ, ସର୍ବୋଦୟ ଇତ୍ୟାଦିଙ୍କୁ ବିରୋଧ କର କାରଣ ସେମାନେ ପ୍ରତିବିପ୍ଳବୀ"। ସେତେବେଳେ ମଧ୍ୟ ଦେଶରେ ବହୁ ବ୍ରାଣ୍ଡର ସମାଜବାଦୀ ଓ ବହୁ ବ୍ରାଣ୍ଡର ସାମ୍ୟବାଦୀ ଥାଆନ୍ତି। ତେବେ ସ୍ଥୂଳତଃ ସବୁ ବ୍ରାଣ୍ଡର ସମାଜବାଦୀ ସବୁ ବ୍ରାଣ୍ଡର ସାମ୍ୟବାଦୀଙ୍କୁ ଓ ସେହିପରି ବ୍ରାଣ୍ଡ ନିର୍ବିଶେଷରେ,

ସବୁ ସାମ୍ୟବାଦୀ ସବୁ ସମାଜବାଦୀଙ୍କୁ ଘୃଣା କରୁଥାଆନ୍ତି। ସମାଜବାଦୀମାନେ ବି ସାମ୍ୟବାଦୀମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଥାଆନ୍ତି ଓ ଉଭୟ ବର୍ଗର ନେତାମାନଙ୍କ ଭିତରେ ପ୍ରତିଯୋଗିତା ଚାଲିଥାଏ, କିଏ "ପ୍ରକୃତ ବିପ୍ଳବୀ" ସେଇଆ ଦର୍ଶେଇବାକୁ।

ହଠାତ୍ ଦିନେ ନେତା ଖବର ପଠେଇଲେ। "ତୁରନ୍ତ ଆସ" ଓ ଆମର ଆଠଜଣିଆ ଦଳଟି ହାଜର ହୋଇଗଲୁ। ନିର୍ଦ୍ଦେଶ ଦିଆଗଲା, ଏକ ନମ୍ବର ଓଆରଟି ବସ୍‌ଷ୍ଟାଣ୍ଡ ପାଖରେ ଶ୍ରୀ ରବି ରାୟ, ଶ୍ରୀ ରାଜନାରାୟଣ ଇତ୍ୟାଦି ଅମୁକ ଦିନ ସଭା କରିବେ, ଯାହାକୁ ଭଣ୍ଡୁର କରିବାକୁ ହେବ। ସାଙ୍ଗେ ସାଙ୍ଗେ ଆମେ ଦୌଡ଼ିଲୁ ଥାନାକୁ ଓ ଜାଣିଲୁ ଯେ ସେମାନେ ସଭାପାଇଁ ପୋଲିସଙ୍କଠାରୁ ଅନୁମତି ନେଇନାହାନ୍ତି। ଆମେ ସେଇଠି ପହଞ୍ଚି ଗଣ୍ଡଗୋଳ କଲୁ ଓ କହିଲୁ "ଅନୁମତି ଆମକୁ ମିଳିଛି, ପେଣ୍ଡାଲ ଆମେ କରିଛୁ, ତୁମେ ସଭା କରିପାରିବ ନାହିଁ।" ହୋହଲ୍ଲା ଭିତରେ ଶ୍ରୀଯୁକ୍ତ ରବି ରାୟ ଆମକୁ ବୁଝାଉଥାନ୍ତି ଓ ଶ୍ରୀଯୁକ୍ତ ରାଜନାରୟଣ "ଏ ରଷିଆକା ପୈସା ଦଙ୍ଗା କର ରହା ହେ" (ସେତେବେଳର ସୋଭିଏତ୍ ୟୁନିୟନ ଅର୍ଥରେ ଆମେ ଗଣ୍ଡଗୋଳ କରୁଛୁ) ବୋଲି ରଡ଼ି ପକାଉଥାନ୍ତି। ଶେଷରେ ସେମାନେ ପଳେଇଲେ ଓ ଆମେ ସଭା କରିଥିଲୁ।

ରାଜଧାନୀର ଚାରିନମ୍ବର ସ୍ଥିତ ବିଧାୟକମାନଙ୍କ କଲୋନୀରେ ଆମର ସବୁବେଳେ ଆଡ଼ା ଜମୁଥିଲା, ଯେଉଁଠାରେ ଥିବା ସଂଯୁକ୍ତ ସୋସାଲିଷ୍ଟ ଦଳର ଜଣେ ବିଧାୟକଙ୍କ ଘରକୁ ଶ୍ରୀଯୁକ୍ତ ରବି ରାୟ ପ୍ରାୟତଃ ଆସୁଥିଲେ। ସେଇଠି ଆମ ସହିତ ତାଙ୍କର ମୁହାଁମୁହିଁ ହୋଇଯିବାରୁ ସେ କହିଥିଲେ "ନେତାଙ୍କୁ କୁହ, କଂଗ୍ରେସର ମୋହ ଛାଡ଼ି ଆମ ସାଙ୍ଗରେ ମିଶି ଲଢ଼େଇ କରନ୍ତୁ।" ସେତେବେଳକୁ ଆମ ନେତାମାନଙ୍କର କଂଗ୍ରେସ ଦଳ ପ୍ରତି ମୋହ ଅଧିକ ଥାଏ। ଶ୍ରୀଯୁକ୍ତ ରାୟଙ୍କ କଥା ଶୁଣି ନେତାଙ୍କୁ ସେଇକଥା ପଚାରିଦିଅନ୍ତେ ସେ କହିଥିଲେ "ସମାଜବାଦୀମାନେ ତୁମର ମୁଣ୍ଡ ଖରାପ କରିବାକୁ ଚେଷ୍ଟିତ। କଂଗ୍ରେସର ଗୋଟିଏ ପ୍ରଗତିଶୀଳ ଗୋଷ୍ଠୀ ସେଠାରୁ ବାହାରି ଆସି ଆମ ସହିତ ମିଶିବେ ଓ ଆନ୍ଦୋଳନ ଦାନା ବାନ୍ଧି ଶାସନ ଆମ ହାତକୁ ଆସିବ।" ସେତେବେଳେ ରାଜନୀତି ବାବଦରେ ମୋଟେ ଜ୍ଞାନ ନଥାଇ ମଧ ମୋ ପାଟିରୁ ବାହାରି ପଡ଼ିଥିଲା "ଆଜ୍ଞା ସେମାନେ ଆମ ସହିତ ମିଶିବେ ନା ଆମ ଲୋକ ସିଆଡ଼େ ପଳେଇବେ, ତାହା ବିଚାର୍ଯ୍ୟ।"

ସେ ନେତା ଆଜି ନାହାନ୍ତି, ସମାଜବାଦୀମାନଙ୍କ ପତାକା ଅସ୍ତମିତ ଓ ଆମ ପତାକା ଟଙ୍ଗା ହୋଇଛି କିନ୍ତୁ ଉଡୁନାହିଁ। ସୋଭିଏତ୍ ୟୁନିୟନ୍ ଭାଙ୍ଗିଯିବା ପରେ ବିପ୍ଳବୀ କବି ସଚ୍ଚି ରାଉତରାୟ ଲେଖିଥିବା "ପତାକା ଓହ୍ଲାଅ ନାହିଁ"ର କେତୋଟି ଧାଡ଼ି ଆଜି

ମନେପଡ଼େ ଓ ମନକୁ ପ୍ରଶ୍ନ ଆସିଯାଏ "ସମାଜବାଦୀ, ସାମ୍ୟବାଦୀ, ଗାନ୍ଧିବାଦୀ, ଗଣତାନ୍ତ୍ରିକ ଶକ୍ତିମାନେ ପ୍ରକୃତ ଶତ୍ରୁଙ୍କୁ ନ ଚିହ୍ନି, ନିଜ ନିଜ ଭିତରେ ବାଡ଼ିଆପିଟା ହେବାରୁ ଆଜି ଶାସନଟି ଚରମକାଟର ପୁଞ୍ଜିପତି, ମୌଳବାଦୀ ତଥା ସାଂପ୍ରଦାୟିକତାବାଦୀମାନଙ୍କ ହାତକୁ ଘୁଞ୍ଚିଯାଇ ନାହିଁ କି ?"

ସେତେବେଳର ନେତାମାନଙ୍କ ଭିତରୁ ଶ୍ରୀଯୁକ୍ତ ରବି ରାୟ ଜୀବିତ ଯିଏ ସେଦିନର କଥା ମନେ ପକେଇବା ଅବସ୍ଥାରେ ନାହାନ୍ତି। ପିଲାଳିଆମୀରେ କହିଥିବା "ଆମ ଲୋକେ ସେମାନଙ୍କ ସଙ୍ଗେ ମିଶିଯିବେ" ଅନେକାଂଶରେ ସତ୍ୟରେ ପରିଣତ ହୋଇଛି। ଏ ଦେଶରେ ସମାଜବାଦର ପ୍ରଚଳନର ଆଶା ଆଉ ନାହିଁ। ରାଜନୀତି ଆଜି ସଂପୂର୍ଣ୍ଣ ରୂପେ ଧନବଳର କରାୟତ୍ତ। ଅତଏବ, ପ୍ରଥମରୁ ବର୍ଣ୍ଣିତ ମିଃ. ନିଏମୋଲରଙ୍କ କଥାକୁ ଦୋହରାଇବା ଛଡ଼ା ଏ ପରିଣତ ବୟସରେ ଆଉ କ'ଣ ବା କରିପାରନ୍ତି! ଶ୍ରୀଯୁକ୍ତ ରାୟଙ୍କ ଭଳି ମୋର ସ୍ମରଣଶକ୍ତି ଲୋପ ପାଇଯାଆନ୍ତା ହେଲେ, ସବୁ ମାନସିକ କଷ୍ଟରୁ ରକ୍ଷା ମିଳନ୍ତା !

▮▮▮

# ମୋ ଦାଦାଙ୍କୁ ମୁଁ ଯେପରି ଜାଣେ

**ଦେବପ୍ରସାଦ ରାୟ ପୀତାମ୍ବର ମହାପାତ୍ର**

୧୯୭୬ ମସିହା, ସ୍ଥାନ ବୀର ସୁରେନ୍ଦ୍ର ସାଏ ମେଡିକାଲ କଲେଜର ବୁର୍ଲା ସରକାରୀ ପ୍ରଫେସର ନିବାସ। ବାପା କ୍ୟାନସରରେ ପୀଡିତ। ଆମେ ସବୁ ଭାଇଭଉଣୀ, ମାମା (ବୋଉ) ସହିତ ଖୁଡିଙ୍କ କ୍ୱାଟରରେ ରହିଥାଉ ବାପାଙ୍କର ଚିକିତ୍ସା ପାଇଁ। ସେତେବେଳେ ଇନ୍ଦିରାଗାନ୍ଧୀଙ୍କ ପାଇଁ ଦେଶରେ ଜରୁରୀ ପରିସ୍ଥିତି ଜାରି ହୋଇଥାଏ। ଦେଶସାରା ଏକ ଭୟର ବାତାବରଣ। ପୋଲିସ, ଗୋଇନ୍ଦା ବିଭାଗ ବହୁତ ସକ୍ରିୟ। ଲୋକ ସ୍ୱାଧୀନତା ନାହିଁ। ଦାଦା ଜରୁରୀ ପରିସ୍ଥିତିକୁ ବିରୋଧ କରି ତାଙ୍କ ଦିଲ୍ଲୀ ସରକାରୀ ଘରୁ ଅଧରାତିରେ ଗିରଫ ହେଲେ। କେଉଁ ଜେଲ୍‌କୁ ଗଲେ ଆମକୁ ଜଣାନାହିଁ। ବାପା ଶଯ୍ୟାଶାୟୀ। ମଝିରେ ମଝିରେ ଡାକ୍ତରଖାନାକୁ ଯାଉଛନ୍ତି, ଚିକିତ୍ସା ଓ ରକ୍ତ ନେବାପାଇଁ। ଆମେ ସମସ୍ତେ ପାଖରେ ଥାଉ, ଖୁଡି ମଧ ଥାଆନ୍ତି କିନ୍ତୁ ଦାଦା ଗିରଫ ହେବା ଖବର ପାଇ ବାପା ବହୁତ ବ୍ୟସ୍ତ ହେଉଥାନ୍ତି। ଦାଦା ଛାତ୍ର ଜୀବନରୁ ରାଜନୀତି କରି ସତ୍ୟାଗ୍ରହ କରି ଅନେକ ଥର ଗିରଫ ହୋଇଛନ୍ତି କିନ୍ତୁ ଏଥରକ ଗିରଫ ଭିନ୍ନ ଧରଣର ଥିଲା। ସେତେବେଳକୁ ଦାଦା ରାଜ୍ୟସଭାର ସଭ୍ୟ ଥା'ନ୍ତି। ବାପା ରାଜ୍ୟସଭାର ଅଧକ୍ଷ (ଉପରାଷ୍ଟ୍ରପତି)ଙ୍କୁ ଚିଠି ଲେଖିଲେ "ମୋର ସାନଭାଇ ରବିରାୟ କେଉଁଠି ମୁଁ ଜାଣିପାରୁନାହିଁ। ମୁଁ କ୍ୟାନସରରେ ପୀଡିତ। ମୋର ସାନଭାଇକୁ ଦେଖିବାକୁ ଚାହେଁ। ମୋତେ ଶୀଘ୍ର ଜଣାଇ ଦିଆଯାଉ ଏବଂ ତାକୁ ଅନୁମତି ଦିଆଯାଉ ମୋତେ ଆସି ଭେଟିବା ପାଇଁ।" ଚିଠି ଦେବାର କିଛିଦିନ ପରେ ରାଜ୍ୟ ସରକାରଙ୍କର କିଛି ପୋଲିସ ଅଫିସର ଘରକୁ ଆସି ବାପାଙ୍କୁ ସାକ୍ଷାତ କଲେ, ଡାକ୍ତରଖାନାକୁ ଗଲେ। ବାପାଙ୍କ ଚିକିତ୍ସାର ସମସ୍ତ କାଗଜପତ୍ର ଦେଖିଲେ। ତା'ର କିଛିଦିନ ପରେ ଆମେ ଦାଦାଙ୍କଠାରୁ ପଞ୍ଜାବର ଅମ୍ବାଲା ଜେଲ୍‌ରୁ ଚିଠି ପାଇଲୁ। ମନଟା ଟିକିଏ ଶାନ୍ତି ଲାଗିଲା। ଦାଦାଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ସେ ଜେଲରୁ ପାରୋଲରେ ଆସିବେ ନାହିଁ। ତେବେ ବାପାଙ୍କର ଅତ୍ୟନ୍ତ ଦେହ ଖରାପ ଓ ତାଙ୍କୁ ଦେଖା କରିବାର ବାପାଙ୍କର ଆଗ୍ରହକୁ ସମ୍ମାନ ଜଣାଇ ଶେଷରେ ସେ ପାରୋଲରେ ଆସିବା ପାଇଁ ରାଜି ହେଲେ। ସେ ଯେଉଁଦିନ ଘରେ ପହଞ୍ଚିଲେ ସେଦିନ

ଆମ ଘରେ ଦୁଃଖ ଓ ସୁଖର ଏକ ପରିବେଶ ସୃଷ୍ଟି ହୋଇଥିଲା। ବାପା ରୋଗଜନିତ ଅନେକ ଯନ୍ତ୍ରଣା ପାଉଥିଲେ ମଧ୍ୟ ଦାଦାଙ୍କୁ ଦେଖି ସେ ଯେପରି ଭାବେ ଆନନ୍ଦିତ ହେଲେ ତାକୁ ମୁଁ ଭାଷା ଦେଇ ପାରିବି ନାହିଁ। ଦାଦା କିଛିଦିନ ବୁର୍ଲାରେ ରହିଲେ। ବାପାଙ୍କର ଦେହ ଦିନକୁ ଦିନ ଅଧିକ ଖରାପ ହେଉଥାଏ। ମୃତ୍ୟୁର ପ୍ରାୟ ୩/୪ ଦିନ ପୂର୍ବରୁ ସେ କହିଲେ "ରବିକୁ ଡାକ" ଦାଦା ଆସିଲେ ପାଖରେ ବସିଲେ। ବାପା ଶୋଇଥାନ୍ତି। ତାଙ୍କ ହାତକୁ ଧରି କହିଲେ "ତୋ ପରି ଭାଇ ମୋତେ ମିଳିବେ ନାହିଁ ..."। ଦାଦା କେବେ କାନ୍ଦିବାର କିମ୍ବା ତାଙ୍କ ଆଖିରୁ ଲୁହ ବୋହିବାର ମୁଁ ଦେଖିନାହିଁ। ସେଦିନ ଦାଦା ତାଙ୍କ କୋହକୁ ଚାପି ଧରିଥାନ୍ତି, କିନ୍ତୁ ତାଙ୍କ ଆଖିରୁ ଲୁହ ବୋହୁଥାଏ। ଆମେ ଭାଇଭଉଣୀ ସମସ୍ତେ କାନ୍ଦୁଥାଉ। ଦାଦା ଗଲାପରେ ବାପା ଆମକୁ କହିଲେ "ଯଦି ଦାଦା ଖୁଡିଙ୍କ ମନରେ କେବେ କଷ୍ଟ ଦେଇଥାଅ, କେବେ ଭଲରେ ରହିପାରିବ ନାହିଁ।" ବାପା ଚାଲିଗଲେ ଯାହାହେଉ ଦାଦା ପାଖରେ ଥିଲେ। ତାଙ୍କର ଇଛା ପୂରଣ ହେଲା। ମା' ମରିଗଲା ପରେ ମୋର ଜେଜେ ଦ୍ୱିତୀୟ ବିବାହ କରିଥିଲେ। ଦାଦା ଜେଜେଙ୍କର ଦ୍ୱିତୀୟ ସ୍ତ୍ରୀ (ମୋର ମାମି)ଙ୍କର ପୁଅ। ଦୁଇ ଭାଇ ଦୁଇଜଣ ମା'ଙ୍କ ଠାରୁ ଜନ୍ମ। ବହୁଦିନ ପର୍ଯ୍ୟନ୍ତ ଆମେ କେହି ଏକଥା ଜାଣିନଥିଲୁ। ଦାଦାଙ୍କ ବିଷୟରେ ଦୁଇପଦ ଲେଖିଲା ବେଳକୁ ମାମି ଅର୍ଥାତ ତାଙ୍କ ମା' ଓ ମୋର ଜେଜେ ମା' ବିଷୟରେ ଦିପଦ ନ ଲେଖି ରହିପାରୁନାହିଁ। ସେ ବାପାଙ୍କୁ ଓ ଆମକୁ ଏତେ ଭଲ ପାଉଥିଲେ ଯେ ତାହା କହିହେବ ନାହିଁ। ସେ ବାପାଙ୍କୁ ଜନ୍ମ ଦେଇନଥିଲେ ମଧ୍ୟ ମହାଭାରତରେ ଯଶୋଦା କୃଷ୍ଣଙ୍କୁ ଭଲପାଇଲା ପରି ବାପାଙ୍କୁ ଭଲ ପାଉଥିଲା। ଏତ ଗଲା ଘର କଥା। ଆଉ କେତୋଟି ଅନୁଭୂତିକୁ କହୁଛି।

ବର୍ଷ ୧୯୬୩ ମସିହା। ବାପା ଦାଦାଙ୍କ ନାଁରେ ଭୁବନେଶ୍ୱରରେ ଜମି ପାଇଁ ଗୋଟେ ଦରଖାସ୍ତ କରିଥିଲେ। ଚିଠି ଆସିଲା ଜମି ପାଇଁ। ଦାଦା କହିଲେ "ନନା, ମୋ ନାଁରେ କିଛି ଜମି କିଣନ୍ତୁ ନାହିଁ। ନୂଆ ବୋଉଙ୍କ ନାଁରେ କିଣନ୍ତୁ" ବାପା କହିଲେ "ତୋ ନାଁରେ କିଣାଯିବ"। ୧୯୭୦ ମସିହା ସେତେବେଳକୁ ଦାଦା ଲୋକସଭା ସଭ୍ୟ। ଦିଲ୍ଲୀ ସରକାରଙ୍କଠାରୁ ଚିଠି ଆସିଲା ଦିଲ୍ଲୀରେ ଗୋଟିଏ ଜମି ନେବାପାଇଁ। ଦାଦା କହିଲେ "ଲୋକ ଆମକୁ ପାର୍ଲାମେଣ୍ଟ ପଠାଇଛନ୍ତି ଜମି କିଣି ଦିଲ୍ଲୀରେ ରହିବା ପାଇଁ?" ଚିଠିର ଉତ୍ତର ଦେଲେ ନାହିଁ।

ରାଜନୀତିର ଅବକ୍ଷୟ ଦେଖି ଦାଦା ୧୯୯୬ ପରେ ଆଉ ନିର୍ବାଚନ ଲଢିବେ ନାହିଁ ବୋଲି ଠିକ୍ କଲେ। ତା' ପରେ ବହୁ ବିଭିନ୍ନ ସମୟରେ ତାଙ୍କ ପାଖକୁ ବିଭିନ୍ନ

ଦେଶରେ ହାଇକମିଶନର, ଆମ୍ବାସାଡାର, ରାଜ୍ୟପାଳ ହେବାକୁ ପ୍ରସ୍ତାବ ଆସିଥିଲେ ମଧ୍ୟ ସେ ରାଜି ହେଲେନାହିଁ। ସେ କହନ୍ତି "କ'ଣ ଚାକିରୀ କରିବି"। ଶାସକ ଓ ବିରୋଧୀଦଳର ସମସ୍ତ ନେତାଙ୍କ ସହିତ ପାର୍ଲାମେଣ୍ଟ ଭିତରେ ଓ ବାହାରେ ତାଙ୍କର ଖୁବ୍ ଭଲ ସମ୍ପର୍କ ଥାଏ। ତେଣୁ ରାଜ୍ୟପାଳ ପାଇଁ ୧୯୯୬ରୁ ୨୦୦୪ ପର୍ଯ୍ୟନ୍ତ ଦାଦାଙ୍କ ପାଖକୁ ପ୍ରସ୍ତାବ ଆସୁଥାଏ। ୧୯୯୯ ମସିହା। କେନ୍ଦ୍ରରେ ବାଜପେୟୀ ପ୍ରଧାନମନ୍ତ୍ରୀ। ରାଜ୍ୟରେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ। ମୋ ପାଖକୁ ଗୋଟିଏ ଫୋନ୍ ମୁଖ୍ୟମନ୍ତ୍ରୀଙ୍କ ଅଫିସରୁ ଆସିଲା ଯେ, ଆନ୍ଧ୍ରର ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ ରବିରାୟଙ୍କ ସହ କଥାବାର୍ତ୍ତା ହେବାକୁ ଚାହୁଁଛନ୍ତି। ଦାଦା ସେତେବେଳକୁ ଦିଲ୍ଲୀ ଯାଇଥାନ୍ତି। ତାଙ୍କୁ ଫୋନ୍‌ରେ ଜଣାଇଦେଲି। ଚନ୍ଦ୍ରବାବୁ ନାଇଡୁ N.D.A ସରକାରର ଆବାହକ ଥାଆନ୍ତି, ସେ ଅନୁରୋଧ କଲେ, ଯେ କୌଣସି ରାଜ୍ୟର ରାଜ୍ୟପାଳ ହେବାପାଇଁ। ରାଜ୍ୟପାଳ ପଦବୀଟା ଭଲ ନୁହେଁ, କେନ୍ଦ୍ର ସରକାର ନିର୍ଦ୍ଦେଶରେ କାମ କରିବାକୁ ହେବ, ଆତ୍ମ ସମ୍ମାନ ବିହୀନ ବୋଲି ତାଙ୍କର ନିର୍ଦ୍ଦିଷ୍ଟ ମତ। ତାଙ୍କର କେତେକ ବନ୍ଧୁ ଓ କିଛି ପରିବାର ଲୋକ ଦାଦା ରାଜ୍ୟପାଳ ହେବାପାଇଁ ଚାହୁଁଥାନ୍ତି। ଦାଦା ମୋତେ ପଚାରିଲେ , ମୋର ମତ କ'ଣ। ମୁଁ ତାଙ୍କୁ ଫୋନ୍‌ରେ ଉତ୍ତର ଦେଲି "Not Negotiable" ଦାଦା ରାଜ୍ୟପାଳ ହେବେନାହିଁ ବୋଲି ଚନ୍ଦ୍ରବାବୁ ନାଇଡୁଙ୍କୁ କହିଦେଲେ।

ଦାଦା (ରବିରାୟ) ଓ ଖୁଡି (ଡାଃ ସରସ୍ୱତୀ ସ୍ୱାଇଁ)ଙ୍କୁ ସମ୍ମାନ ସହ ଭଲପାଇବା ପାଇଁ ବାପା ପିଲାଦିନରୁ ଆମକୁ ଶିକ୍ଷା ଓ ସଂସ୍କାର ଦେଇଛନ୍ତି। ବାପାଙ୍କର ମୃତ୍ୟୁପରେ ତାଙ୍କର ଅବର୍ତ୍ତମାନ ମୁଁ କେବେ ଅନୁଭବ କରିନାହିଁ। ସମସ୍ତେ ତିଳକୁ ତାଳ କରି ଲେଖନ୍ତି ଓ କହନ୍ତି, କିନ୍ତୁ ମୁଁ ତାଳକୁ ତିଳ କରି ପାରିନାହିଁ।

▮▮▮

# ଅଜାତଶତ୍ରୁ ରବିରାୟ

**ସୁଶ୍ରୀ ନିର୍ମଳା ଦେଶପାଣ୍ଡେ**

ଦେଶର ବରିଷ୍ଠ ରାଷ୍ଟ୍ରୀୟ ନେତା ଶ୍ରୀ ରବିରାୟ ସ୍ୱାଧୀନତା ସଂଗ୍ରାମର ଆଦର୍ଶ ଓ ମୂଲ୍ୟବୋଧରେ ପ୍ରତିନିଧିତ୍ୱ କରୁଥିବା ପୀଢ଼ି ଓ ପରମ୍ପରାର ପ୍ରତୀକ। ଗାନ୍ଧିଜୀଙ୍କ ବିଷୟରେ ନେହେରୁ ମତ ଦେଇଥିଲେ ଯେ ସେ ମାଟିରୁ ମହାପୁରୁଷ ଜନ୍ମାଇଛନ୍ତି। ସେ ସମୟ ଥିଲା ତ୍ୟାଗ, ତପସ୍ୟା ଓ ବଳିଦାନ ପାଇଁ ପ୍ରତିଯୋଗିତା କରିବାର ସମୟ। ଜୀବନରେ ସରଳତା ଓ ସେବାଭାବ ସାଧାରଣ କଥା ଥିଲା। ଶ୍ରୀ ରବିରାୟ ସେହି ବିରଳ ବ୍ୟକ୍ତିତ୍ୱ ଭିତରୁ ଜଣେ ଯିଏ ସେଇ ପରମ୍ପରାକୁ ଆଜିଯାଏ ଜୀବିତ ରଖିଛନ୍ତି। ସତେ ଯେମିତି ସେ ଆଜିର ଯୁଗରେ ନୁହେଁ, ଗାନ୍ଧିଯୁଗରେ ବଞ୍ଚିଛନ୍ତି। ତାଙ୍କ ସଂପର୍କରେ ଆସୁଥିବା ହଜାର ହଜାର ଲୋକ ତାଙ୍କ ପାଖରୁ ସେହି ଉଜ୍ଜ୍ୱଳ ପରମ୍ପରାର ସ୍ପର୍ଶ ପାଉଛନ୍ତି।

ରାମ ମନୋହର ଲୋହିଆଙ୍କ ସମାଜବାଦୀ ବିଚାର ଓ ଜୀବନଶୈଳୀର ଝଲକ ରବିରାୟଙ୍କଠାରେ ମିଳେ। ରାଷ୍ଟ୍ରଭାଷା ହିନ୍ଦୀ ପ୍ରତି ଆଜି ବି ତାଙ୍କର ନିଷ୍ଠା ଥିବା ଲୋହିଆଙ୍କ ସ୍ମୃତିକୁ ଉଜାଗର କରେ। ଇଂରାଜୀରେ ସୁବକ୍ତା ହେଲେ ବି ହିନ୍ଦୀ ପ୍ରତି ତାଙ୍କର ଆଦର ରହିଛି। ଏ ଅନ୍ୟପାଇଁ ପ୍ରେରଣା ଦାୟକ। ଶୋଷିତ ପୀଡ଼ିତ ମାନବ ପାଇଁ ସେ ସଦା ସ୍ୱର ଉତ୍ତୋଳନ କରନ୍ତି। ତିବ୍ବତର ମୁକ୍ତି ସଂଗ୍ରାମରେ ତାଙ୍କର ଅବଦାନ ମହତ୍ୱପୂର୍ଣ୍ଣ। ଭାରତ-ତିବ୍ବତ ମୈତ୍ରୀ ସଂଘର ଅଧ୍ୟକ୍ଷ ଭାବେ ସେ ଭାରତରେ ଜନତାକୁ ତିବ୍ବତ ପ୍ରତି ଥିବା କର୍ତ୍ତବ୍ୟ ସଂପର୍କରେ ସବୁବେଳେ ଚେତେଇ ଦେଇଛନ୍ତି। ସେହିପରି ମିଆଁମାର (ବର୍ମା)ର ଗଣତାନ୍ତ୍ରିକ ଆନ୍ଦୋଳନକୁ ମଧ୍ୟ ସେ ସଦାସର୍ବଦା ସହଯୋଗ ଓ ଆଶୀର୍ବାଦ ଦେଇଛନ୍ତି।

ଲୋକସଭାର ବାଚସ୍ପତିଭାବେ ସେ ଏକ ଆଦର୍ଶ ଭୂମିକା ଗ୍ରହଣ କଲେ। ଜନତାଦଳର ବରିଷ୍ଠ ସମାଜବାଦୀ ନେତା ହୋଇ ମଧ୍ୟ ସେ ବାଚସ୍ପତି ହେବାପରେ ଦଳୀୟ ରାଜନୈତିକ ବ୍ୟକ୍ତି ଭାବେ କାମ ନକରି ନ୍ୟାୟପୂର୍ଣ୍ଣ ଭୂମିକା ନେଲେ। ସେ ଥିଲେ ଅଜାତ ଶତ୍ରୁ। ସମସ୍ତଙ୍କର ମିତ୍ର। ସେ ଉତ୍କଳ ଭୂମି ଧନ୍ୟ ଯିଏ ରବିରାୟଙ୍କ ଭଳି ଏକ ବରପୁତ୍ରକୁ ଭାରତମାତା ଚରଣରେ ଅର୍ପଣ କଲା। ତାଙ୍କ ନିଷ୍କଳଙ୍କ ଜୀବନର ଅଶୀ ବର୍ଷ ପୂର୍ଣ୍ଣ କରିବାରେ ତାଙ୍କୁ ସଶ୍ରଦ୍ଧ ବନ୍ଦନା କରୁଛି। *(ସଂଗୃହୀତ ଲେଖା)*

▮▮▮

# ତରୁଣ ବୟସର ସାଥୀ, ଏ ବୟସର ସମବିଚାରି

**ଡ. ନୀଳକଣ୍ଠ ରଥ**

ରବିବାବୁଙ୍କ ସହିତ ମୋର ପରିଚୟ ୧୯୪୫ ମସିହାରୁ। ମୁଁ ସେତେବେଳେ ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ କକ୍ଷାରେ ନାଆଁ ଲେଖାଇଥାଏ। ଆମ କ୍ଲାସରେ କୁହାଗଲା ଯେ କ୍ଲାସ୍‌କୁ ତା'ର ଜଣେ ପ୍ରତିନିଧି ଡେ ସ୍କଲାର୍ ଆସୋଶିଏଶନ୍ ପାଇଁ ନିର୍ବାଚିତ ପ୍ରତିନିଧି ବୋଲି ପଠାଇବାକୁ ପଡ଼ିବ। କ୍ଲାସର ଅନେକ କୁହାଳିଆ ପିଲା ଛାତ୍ରାବାସରେ ରହୁଥାଆନ୍ତି। ତେଣୁ ତାଙ୍କର ଏ ଅନୁଷ୍ଠାନରେ ସ୍ଥାନ ନାହିଁ। କଲେଜର ଅଣ-ଛାତ୍ରାବାସର ଛାତ୍ର ଭାବରେ ମତେ ବଛାଗଲା। ମୁଁ ସେଦିନୁ ଦି'ବର୍ଷ କାଳ କ୍ଲାସ୍ ପ୍ରତିନିଧି ଭାବରେ ସେ ଅନୁଷ୍ଠାନରେ ରହିଲି। ପ୍ରଥମ ମିଟିଂରେ ମୁଖ୍ୟ ଦି'ଜଣଙ୍କୁ ଚିହ୍ନିଲି ଓ କଲେଜରେ ରହିବାର ପ୍ରଥମ ତିନିବର୍ଷ ତାଙ୍କ ସହିତ ମୋର ଭଲ ସମ୍ବନ୍ଧ ଓ ପରିଚୟ। ଜଣେ ହେଲେ ଆସୋସିଏସନ୍‌ର ଉପଦେଷ୍ଟା ଅଧ୍ୟାପକ ଡ. କରୁଣାକର କର ଓ ଅନ୍ୟ ଜଣକ ହେଲେ ଶ୍ରୀ ରବି ରାୟ। ରବିବାବୁ (ସେ ମୋ ଉପରଶ୍ରେଣୀରେ ଥିଲାରୁ ମୁଁ ତାଙ୍କୁ ରବିବାବୁ ବୋଲି ସମ୍ବୋଧନ କରୁଥିଲି) ଅଧିକାଂଶ ପିଲାଙ୍କ ଭଳି ମଫସଲର ପିଲା। ମୁଁ ମୂଳରୁ ମଫସଲର ହେଲେ ବି ହାଇସ୍କୁଲ ବର୍ଷମାନ କଟକରେ ପଢ଼ିଥିଲି। ମାତ୍ର ସେତେବେଳର ପ୍ରାୟ ସବୁ ପିଲାଙ୍କ ଭଳି ଆମେ ସମସ୍ତେ ଧୋତି-କୁରୁତା ପିନ୍ଧୁଥିଲୁ। ଅଧିକାଂଶଙ୍କର ଗୋଡ଼ରେ ଜୋତା-ଚପଲ କିଛି ନଥାଏ। ମାତ୍ର, ରବିବାବୁ ସେତେବେଳକୁ ସମାଜବାଦୀ ଦଳର ସଂପର୍କୀତ ଷ୍ଟୁଡେଣ୍ଟସ୍ କଂଗ୍ରେସର କାର୍ଯ୍ୟକର୍ତ୍ତା, ଓ ସେଇଭାବରେ ଆସୋସିଏସନ୍‌ର ସେକ୍ରେଟେରି ଭାବରେ ନିର୍ବାଚିତ ହୋଇଥାଆନ୍ତି। ମୁଁ କିନ୍ତୁ କୌଣସି ଦଳର ନଥିଲି।

ଆସୋସିଏସନ୍‌ର ଏକ ପ୍ରଧାନ କାମ ହେଲା ଛାତ୍ରାବାସ ବାହାରେ ରହୁଥିବା ପିଲାଙ୍କ ସୁବିଧା ଅସୁବିଧା କଥା ନେଇ ବ୍ୟବସ୍ଥା କରିବା। ପିଲାଙ୍କ ସାଇକଲ୍ ଷ୍ଟାଣ୍ଡ, ପିଇବା ପାଣି, କମନ୍ ରୁମ୍ ଏବଂ ଆସୋସିଏସନ୍‌ର ଥିବା ଏକ ଛୋଟ ଗ୍ରନ୍ଥାଳୟରୁ

ଗରିବପିଲାଙ୍କୁ ପାଠ୍ୟପୁସ୍ତକର ବନ୍ଦୋବସ୍ତ କରାଇବା । ଆସୋସିଏସନ୍‌ର ପୁଅର୍ ଷ୍ଟୁଡ଼େଣ୍ଟସ୍ ଫଣ୍ଡରୁ ସାହାଯ୍ୟ ଦିଆଇବା ଉପଦେଷ୍ଟା, ସେକ୍ରେଟେରି ଓ ସଂଘ କାର୍ଯ୍ୟକାରିଣୀର ସଭ୍ୟଙ୍କ କାମ । ଆଉ ଏକ ପ୍ରଧାନ କାମ ହେଲା ପ୍ରତି ମାସରେ ଅନ୍ତତଃ ଗୋଟିଏ ସଭା ବା ଡିବେଟିଂ ପାଇଁ ସନ୍ଧ୍ୟାବେଳେ କଲେଜରେ ମିଟିଂର ବ୍ୟବସ୍ଥା । ଆସୋସିଏସନ୍‌ର ଖର୍ଚ୍ଚର ହିସାବ ରଖିବା ମଧ୍ୟ ସେକ୍ରେଟେରିଙ୍କ କାମ ।

ଏ ସବୁ କାମ ଏତେ ସୁରୁଖୁରୁରେ ଓ କୌଣସି ପ୍ରକାରର ପକ୍ଷପାତିତା ନକରି ରବିବାବୁ ସମ୍ପାଦନ କଲାରୁ ସେ ପୁଣି ବିନା ପ୍ରତିଦ୍ୱନ୍ଦିତାରେ ଦ୍ୱିତୀୟଥର ପାଇଁ ଆସୋସିଏସନ୍‌ର ସେକ୍ରେଟେରି ନିର୍ବାଚିତ ହେଲେ । ମୁଁ ବି ତାଙ୍କ ସାଙ୍ଗକୁ ଦ୍ୱିତୀୟଥର ସଭ୍ୟ ରହିଲି । ଆମ ଡିବେଟିଂ ସଭା ମାତ୍ର ବେଶି ହେଉନଥିଲା, କାରଣ ଦିନ ଶେଷରେ ଘରକୁ ଫେରିଲାପରେ ପୁଣି ସଂଧ୍ୟାବେଳେ ଆସି ସଭାରେ ଯୋଗଦେଇ ରାତିକି ଘରକୁ ଫେରିବା ଅଧିକାଂଶଙ୍କ ପକ୍ଷରେ ଅସୁବିଧାର କଥା । ତଥାପି, କେତେକ ସଭାରେ ମୁଁ ରବିବାବୁଙ୍କ ସହ ଡିବେଟିଂରେ ଯୋଗଦେବା ମୋର ମନେଅଛି ।

ଦ୍ୱିତୀୟ ବର୍ଷର ସେକ୍ରେଟେରି କାମ ତୁଲାଇସାରି ରବିବାବୁ ତହିଁରୁ ଅବ୍ୟାହତି ପାଇଲେ, କାରଣ ବି.ଏ.ର ଚତୁର୍ଥ ବର୍ଷରେ ପଢୁଥିବା ପିଲେ ଏଭଳି ଦାୟିତ୍ୱପୂର୍ଣ୍ଣ କାମରେ ନପଶିବାର ପରମ୍ପରା । ମୁଁ ସେତେବେଳକୁ ତୃତୀୟବର୍ଷ କଳାରେ । ମୁଁ ନିର୍ଦ୍ୱନ୍ଦରେ ନିର୍ବାଚିତ ହେଲାରୁ ରବିବାବୁ ମତେ ସେ ଦାୟିତ୍ୱ ଦେଇଦେଲେ । ମୁଁ ଅନେକଙ୍କୁ କଲେଜର ବିଭିନ୍ନ ନିର୍ବାଚନ ପଦର ଦାୟିତ୍ୱରେ ଥିବା ଦେଖିଛି; ମାତ୍ର ରବିବାବୁ ଓ ଗଙ୍ଗାଧର ରଥ (କଲେଜ ୟୁନିୟନ୍‌ର ସେକ୍ରେଟେରି)ଙ୍କ ଭଳି ଅଜାତଶତ୍ରୁ ଦେଖିନାହିଁ ।

ମୁଁ କଲେଜରୁ ବି.ଏ. ପାସ୍ କରି ପଢ଼ିବାପାଇଁ ଓ ପଛକୁ ଚାକିରି ପାଇଁ ପୁଣେରେ ରହିବା ଫଳରେ ରବିବାବୁଙ୍କ ସହ ଆଉ ଦେଖା ସାକ୍ଷାତର ସୁଯୋଗ ନଥିଲା । ସେ ବି.ଏ. ପରେ ସମାଜବାଦୀ ଦଳରେ ସବୁଦିନିଆ କର୍ମକର୍ତ୍ତା ହେଲେ ବୋଲି ଶୁଣିଲି । ପରେ, ରାମମନୋହର ଲୋହିଆଙ୍କଦ୍ୱାରା ସ୍ଥାପିତ ହାଇଦରାବାଦରୁ ପ୍ରକାଶିତ ଇଂରାଜୀ ପତ୍ରିକାର ସମ୍ପାଦନାର ଦାୟିତ୍ୱ ନେବାର ଶୁଣିଲି । ମାତ୍ର ପୁଣି ଦେଖାହୋଇ କଥା ହେବାପାଇଁ ବହୁ ବର୍ଷ ବିତିଗଲା । ୧୯୮୦ ଦଶକର ଶେଷ ଆଡ଼କୁ ମୁଁ ଛୁଟିରେ କଟକ ଆସିଲାବେଳେ ଦିନେ ହଠାତ୍ ଆମ ଘରେ ତାଙ୍କ ସହିତ ସାକ୍ଷାତ । ସେ ସେତେବେଳକୁ ବାବୁଜୀଙ୍କ (ମୋ ପିତା) ଭାରି ଘନିଷ୍ଠ ସହଯୋଗିତାରେ ଥାଆନ୍ତି ବୋଲି ଶୁଣିଲି । ଏହାପରେ ଏଭଳି ଛୁଟିରେ ଆସିଥିଲାବେଳେ ପୁଣି ଥରେ ଦିଥର ଦେଖା । ସେ ଯେତେବେଳେ ଲୋକସଭାର ସଭାପତି ନିର୍ବାଚିତ ହେଲେ, ସେତେବେଳେ ମୋ ମନ

ସତରେ ଭାରି ଆନନ୍ଦିତ ହେଲା । ଖାଲି ଜଣେ ସଚ୍ଚୋଟ ଓଡ଼ିଆ ରାଜନୀତିଜ୍ଞ ବୋଲି ନୁହେଁ, ମୋ ତରୁଣ ବୟସରେ ଦେଖିଥିବା ଜଣେ କର୍ମକୁଶଳ ନିଷ୍କପଟବାଦୀ ବ୍ୟକ୍ତିଙ୍କୁ ଏ ଉଚ୍ଚ ପଦ ମିଳିଲାରୁ ଆମ ଗଣତାନ୍ତ୍ରିକ ଅନୁଷ୍ଠାନ ବାବଦରେ ମୋର ଆଦର ଦୃଢ଼ୀଭୂତ ହେଲା ।

ବାର ବର୍ଷ ତଳେ ବାବୁଜୀଙ୍କ ଶ୍ରାଦ୍ଧବାସରରେ ରାଉରକେଲାରେ ଅନୁଷ୍ଠିତ ସଭାରେ ସେ ମୋ ଅନୁରୋଧ ରକ୍ଷାକରି ମୁଖ୍ୟବକ୍ତା ଭାବରେ ଏକ ଦୀର୍ଘ, ବିସ୍ତରପ୍ଳୁତ ଭାଷଣ ଦେଲେ । ସେଦିନଠାରୁ ଆଜି ପର୍ଯ୍ୟନ୍ତ ମୁଁ ପ୍ରତିବର୍ଷ କଟକ ଗଲେ ତାଙ୍କୁ ଦେଖା ନକରି, କଥା ନହୋଇ ଫେରେ ନାହିଁ ।

ଆଜି ସମାଜବାଦୀ ଦଳ ନାହିଁ; ମାତ୍ର ସେ ବିସ୍ତରର ରବିବାବୁଙ୍କ ଭଳି ଯେଉଁ କେତେଜଣ ଏବେମଧ କାର୍ଯ୍ୟରତ, ସେମାନେ ନିଜର ମୂଳ ମୂଲ୍ୟରୁ ଦୂରେଇଯାଇ ନାହାନ୍ତି । ଦେଶର ଆର୍ଥିକ ପ୍ରଗତିରେ ଦେଖାଦେଇଥିବା ଅସାମଞ୍ଜସ୍ୟତା, ମଫସଲର ତଥା ସହରରେ ଦିଶୁଥିବା ପ୍ରଚଣ୍ଡ ଦାରିଦ୍ର୍ୟ ଓ ସର୍ବନିମ୍ନ ଶିକ୍ଷା-ସ୍ୱାସ୍ଥ୍ୟ ସୁବିଧାର ଅଭାବ ତାଙ୍କୁ ବ୍ୟଥିତ କରୁଛି । ଆଉ ଏହାର ବ୍ୟବସ୍ଥା ଯେ ଏ ଦେଶରେ ମୂଳତଃ ସରକାରର କର୍ତ୍ତବ୍ୟ ଏକଥାକୁ ନିସନ୍ଦିଗ୍ଧ ଭାବରେ ପ୍ରତିପାଦନ କରିବାର ଯେ କେତେଜଣ ପୁରୁଣାକାଳିଆ ସମାଜବାଦୀ ଓ ରାଜନୀତିଜ୍ଞ ଅଛନ୍ତି ରବିବାବୁ ସେମାନଙ୍କ ଭିତରେ ଅଗ୍ରଗଣ୍ୟ ।

ଆଜି ଏଭଳି ଜଣେ ବହୁକାଳର ପରିଚିତ, ସମବିସ୍ତରର ସାଥୀ ବାବଦରେ ଆନନ୍ଦ ଓ ସନ୍ତୋଷ ବ୍ୟକ୍ତ କଲାବେଳେ ଆଜିର ଯୁବପିଢ଼ି ଏ ପ୍ରକାର ବିସ୍ତର ଆଡ଼କୁ ଲକ୍ଷ୍ୟ ଦେଇପାରିଲେ ଦେଶ ଦୁର୍ଦ୍ଦଶାର ମୁହଁରୁ ପଳେଇପାରନ୍ତା ବୋଲି ମୋର ଆଶା ଓ ବିଶ୍ୱାସ । ରବିବାବୁ ତାହାହିଁ ଚାହୁଁଥିବେ ବୋଲି ମୋର ଧାରଣା ।

■ ■ ■

# ଓଡ଼ିଶାର ଗୌରବ ରବି ରାୟ

**ଶ୍ରୀ ପଦ୍ମଚରଣ ନାୟକ**

ରବି ରାୟ, ଲୋକନାଥ ଚୌଧୁରୀ ଆଦି ଆମ ସମୟର ଛାତ୍ରନେତା ଦିନେ ରାଜ୍ୟର ନେତା ହେବେ ବୋଲି ଜାଣି ହେଉଥିଲା। ସ୍ୱାଧୀନତା ଆନ୍ଦୋଳନ କାଳରେ ବହୁ ଉଜ୍ଜ୍ୱଳ ଛାତ୍ର ପାରମ୍ପରିକ ଶିକ୍ଷା ଶେଷ ନକରି ବି ସେଥିରେ ଝାସ ଦେଇଥିଲେ। ଦେଶ ଏତେ ଚଞ୍ଚଳ ସ୍ୱାଧୀନତା ପାଇବ ବୋଲି ସେମାନଙ୍କର ଆଶା ନଥିଲା। ସେମାନେ ଭାବିନଥିଲେ ଯେ ତାଙ୍କରି ଜୀବନକାଳ ମଧରେ ବ୍ରିଟିଶ୍ ସରକାର ଯିବ ଓ ରାଜା, ମହାରାଜାଙ୍କ ରାଜୁତିର ଲୋପ ହେବ। ଜମିଦାରୀ ଉଚ୍ଛେଦ ହେବ। ବଙ୍ଗ ଏକ ସ୍ୱାଧୀନ ଭାରତର ଏକ ଉଜ୍ଜ୍ୱଳ ସ୍ୱପ୍ନ ସେମାନଙ୍କୁ ସବୁ ପ୍ରକାର ଅନିଶ୍ଚିତତା, ଦୁଃଖ, କଷ୍ଟ, ଲାଞ୍ଛନା ସହିନେବା ପାଇଁ ପାଗଳ କରିଥିଲା। ଗତ ଶତାବ୍ଦୀର ଚତୁର୍ଥ ଦଶାବ୍ଦୀ ଥିଲା ଭାରତବର୍ଷର ସ୍ୱାଧନତା ଆନ୍ଦୋଳନର ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ କାଳ। ତୃତୀୟ ଦଶାବ୍ଦୀରେ ଗାନ୍ଧୀ ଆସନ୍ତି ଜାତୀୟ ଆନ୍ଦୋଳନର କର୍ଣ୍ଣଧାର ହୋଇ। ନାନା ଘାତ ପ୍ରତିଘାତ ପରେ ଲବଣ ସତ୍ୟାଗ୍ରହ ଦିଏ ଏକ ବିଜୟର ସ୍ୱାଦ। ଚତୁର୍ଥ ଦଶାବ୍ଦୀରେ ଏହା ଛଡ଼ା ବିଭିନ୍ନ ଅଞ୍ଚଳରେ ଗଣ ଆନ୍ଦୋଳନମାନ ମୁଣ୍ଡ ଟେକିଲା। ସେସବୁର ପ୍ରଭାବରେ ୧୯୩୭ ନିର୍ବାଚନରେ କଂଗ୍ରେସ ଦଳ ଓଡ଼ିଶା ସମେତ ବହୁ ରାଜ୍ୟରେ ସଂଖ୍ୟାଗରିଷ୍ଠତା ଲାଭକଲା। ସେ ସରକାରର କ୍ଷମତା ସୀମିତ ଥିଲେ ବି ତାହା ଦେଇଥିଲା ଏକ ଆତ୍ମବିଶ୍ୱାସ। ୧୯୩୯ ବେଳକୁ ଦ୍ୱିତୀୟ ମହାସମର ଆରମ୍ଭ ହେଲା। ଅଜେୟ ବ୍ରିଟିଶ ଶକ୍ତିର ପରାଜୟ ଭାରତୀୟଙ୍କ ସମେତ ସବୁ ଉପନିବେଶବାସୀଙ୍କୁ ଉତ୍ସାହିତ କରିଥିଲା। ସେହିଭଳି ଏକ ସମୟରେ ଗାନ୍ଧିଜୀ ଭାରତଛାଡ଼ ଆହ୍ୱାନ ଦେଇଥିଲେ; ଯେଉଁ ସଂଗ୍ରାମରେ ବହୁ ଉଦୀୟମାନ ଛାତ୍ର ଲମ୍ଫ ଦେଇଥିଲେ।

ଆମେ ରେଭେନ୍ସା ମହାବିଦ୍ୟାଳୟରେ ନାମ ଲେଖାଇଲା ବେଳକୁ ଗାନ୍ଧିଜୀ ଜେଲରୁ ବାହାରିଥାନ୍ତି ଓ ଆସ୍ତେ ଆସ୍ତେ କିଛି କିଛି ସ୍ୱାଧୀନତା ସଂଗ୍ରାମୀ ଜେଲରୁ ଖଲାସ ହେଉଥାନ୍ତି। ଏହି ସମୟରେ ସୁଭାଷ ବୋଷଙ୍କ ଦ୍ୱାରା ଅନୁପ୍ରେରିତ ଭାରତୀୟ ଜାତୀୟ

ସେନାନୀଙ୍କୁ (ଆଇ.ଏନ୍.ଏ) ବନ୍ଦୀ କରି ସେମାନଙ୍କର ବିଚାର ଆରମ୍ଭ ହୋଇଥାଏ ଏବଂ କେତେକ କାରଣରୁ ଭାରତର ନୌବାହିନୀର ସୈନ୍ୟମାନେ ବିଦ୍ରୋହ କରିଥିଲେ। ଏଭଳି ରାଜନୀତିକ ଝଞ୍ଜା ବହୁଥିଲା ବେଳେ ମନେପଡୁଛି ଦିନେ ହରେକୃଷ୍ଣ ମହତାବଙ୍କ ସହିତ ଏକ ପ୍ରତିବାଦ ସଭାରେ ଯୋଗଦେବା ଲାଗି ଆମେ ପୂର୍ବ ଛାତ୍ରାବାସରୁ କିଲ୍ଲା ପଡ଼ିଆକୁ ଯାଇଥିଲୁ। ଆମରି ମହାବିଦ୍ୟାଳୟ ପଢ଼ା କାଳରେ ଭାରତବର୍ଷ ସ୍ୱାଧୀନତା ଲାଭକଲା।

୧୯୪୨ ଅଗଷ୍ଟ ଆନ୍ଦୋଳନରେ ଯୋଗଦେଇ ମୁଁ କିଛିକାଳ ପଢ଼ା ଛାଡ଼ି ଦେଇଥିଲେ ହେଁ ପରେ ନାମ ଲେଖାଇ ପଢ଼ାପଢ଼ିରେ ଲାଗିଲି। ଘରର ଆର୍ଥିକ ଅବସ୍ଥା ଭଲ ନଥିବାରୁ ଛାତ୍ର ରାଜନୀତିରେ ସଂଶ୍ଳିଷ୍ଟ ନହୋଇ ପଢ଼ାପଢ଼ି ଶେଷ କରିବାରେ ଧ୍ୟାନ ଦେଲି। ରବି ରାୟ ରେଭେନ୍ସା ମହାବିଦ୍ୟାଳୟର ଛାତ୍ର ସଂସଦର ସଭାପତି ହେଲେ। ଲୋକନାଥ ଚୌଧୁରୀ ସେଭଳି ସଫଳତା ଲାଭ କରିପାରି ନଥିଲେ। କାରଣ ଯୁଦ୍ଧ ପରେ ସେତେବେଳକୁ ସାମ୍ୟବାଦୀମାନେ ଲୋକପ୍ରିୟତା ହରାଇଥାନ୍ତି। ପଢ଼ା ଶେଷରେ ମୁଁ ଚାକିରି ନକରି ସାମ୍ୟବାଦୀ ଦଳରେ ଯୋଗ ଦେଇଥିଲି ଓ ଗାଁକୁ ଫେରିଥିଲି। ଲୋକନାଥ ଓ ମୁଁ ଏକା ହାଇସ୍କୁଲ ଓ ମହାବିଦ୍ୟାଳୟର ଛାତ୍ର ଥିଲୁ – ଗୋଟିଏ ଅଞ୍ଚଳର ଲୋକ। କିଛିକାଳ ଏକାଠି କାମ କରିବା ପରେ ମୁଁ ସାମ୍ୟବାଦୀ ଦଳ ଛାଡ଼ିଥିଲି। ସାମ୍ୟବାଦୀମାନଙ୍କ ବିରୋଧରେ ସମାଜବାଦୀମାନେ ଯେଉଁ ଅଭିଯୋଗ କରୁଥିଲେ ସେସବୁ ଯଥାର୍ଥ ଥିଲା ବୋଲି ମୋର ହୃଦ୍‌ବୋଧ ହେଲା। ଏଣୁ ୧୯୬୧ ନିର୍ବାଚନରେ ସ୍ୱାଧୀନ ଭାବରେ ନିର୍ବାଚିତ ହେଲି। ନିର୍ବାଚନ ପରେ ରାଜନୀତି କରିବାକୁ ହେଲେ ଏକ ଦଳରେ ସଂପୃକ୍ତ ହେବା ଆବଶ୍ୟକତା ମନେ କରି ମୁଁ ପ୍ରଜାସୋସାଲିଷ୍ଟ ଦଳରେ ମିଶିଲି। ସେତେବେଳକୁ ସୋସାଲିଷ୍ଟ ପାର୍ଟିର ବିଭାଜନ ହୋଇଥାଏ।

ସେତେବେଳେ ରବି ରାୟ ସମାଜବାଦୀ ଦଳର ଯୁବନେତା ଥିଲେ। ସମାଜବାଦୀ ଦଳର ବିଭାଜନ ପରେ ଓଡ଼ିଶାରେ ତା'ର ଅଂଶ ପ୍ରଜାସୋସାଲିଷ୍ଟ ଦଳ ଭାବରେ କାମ କରୁଥିଲେ। ରବି ରାୟ, ରାମମନୋହର ଲୋହିଆଙ୍କ ସହିତ ରହିଲେ ଏବଂ ତାଙ୍କୁ ଓଡ଼ିଶା ଛାଡ଼ି ଦଳର କେନ୍ଦ୍ରରେ ରହି କାର୍ଯ୍ୟ କରିବାକୁ ହେଲା। ଏଣୁ ତାଙ୍କ ସହିତ ମିଶି କାମ କରିବାର ସୌଭାଗ୍ୟ ମୋର ନଥିଲା। ତେବେ ପରବର୍ତ୍ତୀ ସମୟରେ ଜନତା ପାର୍ଟି ଗଠନ ହେଲାପରେ ସେ କେନ୍ଦ୍ରାପଡ଼ାର ସାଂସଦ ଭାବରେ ନିର୍ବାଚିତ ହୋଇଥିଲେ ଏବଂ ତାଙ୍କ ସହିତ ଘନିଷ୍ଠତା ବଢ଼ିଥିଲା। ମନ୍ତ୍ରୀ ଭାବରେ ସେ ଦକ୍ଷତାର ସହ କାମ କରିଥିଲେ।

ତାଙ୍କର ସବୁଠାରୁ ଗୌରବମୟ ସମୟ ଥିଲା ଲୋକସଭାର ବାଚସ୍ପତି କାଳରେ। ଓଡ଼ିଶାରୁ ପୂର୍ବରୁ ଓ ପରେ କେନ୍ଦ୍ରରେ ମନ୍ତ୍ରୀ ହୋଇଥିଲେ ହେଁ କେହି ଲୋକସଭାର ବାଚସ୍ପତି ହୋଇନାହାନ୍ତି। ତାଙ୍କର ବାଚସ୍ପତି ହେବାରେ ଓଡ଼ିଶାବାସୀ ଯେଭଳି ଆନନ୍ଦ ଓ ଗୌରବାନ୍ୱିତ ହୋଇଥିଲେ ସେ ଦୃଶ୍ୟ ଆଜି ମନେପଡ଼େ। ଜୟଦେବ ଭବନରେ ତାଙ୍କୁ ସମ୍ବର୍ଦ୍ଧନା ଦେବାପାଇଁ ଯେଉଁ ସଭା ହୋଇଥିଲା ସେଭଳି ଭରପୁର ସଭା ମୁଁ ପୂର୍ବରୁ ଓ ପରେ ଦେଖିନାହିଁ। ସେ ଥିଲେ ଭାରତବର୍ଷର ଅନ୍ୟତମ ଉଚ୍ଚମାନର ବାଚସ୍ପତି।

ରବି ରାୟଙ୍କ ରାଜନୀତିକ ଜୀବନ ନିଷ୍କଳଙ୍କ ରହିବା ଏକ ବଡ଼ ସୌଭାଗ୍ୟ। ଓଡ଼ିଶା ଅପେକ୍ଷା ଅନ୍ୟ ରାଜ୍ୟରେ ବିଶେଷ କରି ସର୍ବଭାରତୀୟ ରାଜନୀତିରେ ତାଙ୍କର ଯେଭଳି ପ୍ରତିଷ୍ଠା ଥିଲା ତାହା କ୍ୱଚିତ୍ ଓଡ଼ିଆଙ୍କ ଭାଗ୍ୟରେ ଦେଖିବାକୁ ମିଳିଛି। ଓଡ଼ିଶା ତାଙ୍କଠାରୁ ଆହୁରି ଅଧିକ ଆଶା କରୁଥିଲା।

■■■

# ମୋର ଆଦରର ମାମୁ

**ଶ୍ରୀ ପୀତାମ୍ବର ଜେନା**

ମୋର ବୟସ ହେଲାଣି ୮୩ ବର୍ଷ। ୩୦/୩୫ ବର୍ଷ ପୂର୍ବେ ତମ ଘରକୁ ପ୍ରାୟ ୮/୧୦ ଦିନ ଅନ୍ତରରେ ଯାଉଥିଲି ତମ ପ୍ରତି ଏକ ଅହେତୁକ ସ୍ନେହ, ଶ୍ରଦ୍ଧା ଓ ସମ୍ମାନର ସହିତ। ତମ୍ ସାଙ୍ଗରେ ଅନେକ ସମୟରେ ଆମ ଦେଶ ଓ ସମାଜର ରାଜନୈତିକ ସ୍ଥିତି ବିଷୟରେ ଆଲୋଚନା କରି ରଙ୍ଗ ରହସ୍ୟ କରିଥାଏ। ସେତେବେଳେ ତମ ପାଖରେ ଖୁବ୍ କମ୍‌ରେ ୫/୬ ଜଣରୁ ଅଧିକ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥାଆନ୍ତି ଓ ତମର ଜ୍ୱାଳାମୟ ବାଣୀରେ ଉତ୍‌ଫୁଲ୍ଲିତ ହେଉଥାନ୍ତି। ମାତ୍ର ଏବେ ୩/୪ ବର୍ଷ ହେବ ବେଳେ ବେଳେ ତମ ଘରକୁ ଯାଏ ଓ ବଡ଼ ମନଦୁଃଖରେ ଫେରିଆସେ। ମାଇଁଙ୍କ ସଙ୍ଗେ ତମର ସ୍ୱାସ୍ଥ୍ୟ ସମ୍ପର୍କରେ ଓ ସର୍ବଦା ଆକାଶକୁ ଅନେଇ ତମର ଅସରନ୍ତି ଭାବନା ସମ୍ପର୍କରେ ତଳେଇ କରି ଲକ୍ଷ୍ୟ କରେ। ତମେ ବହୁତ ଭାଙ୍ଗିପଡ଼ିଛ, ମନରେ ସରସତା ନାହିଁ। ଉଦାସ ଭାବରେ ଲକ୍ଷ୍ୟକର, ଅନେକଙ୍କୁ ଚିହ୍ନିପାର ନାହିଁ। ଆଗଭଳି ତମ ଘରେ ବି ଆଉ ଲୋକଗହଳି ନାହିଁ। ଏହାହିଁ ତମର ଦୁଃଖର କାରଣ ବୋଲି ଅନୁମାନ କରେ। ମାମୁଁ, ତମକୁ କ'ଣ ମୋ ଏ କ୍ଷୁଦ୍ର ବୁଦ୍ଧିରେ ଉପଦେଶ ଦେବି? ରାଜନୀତିଟା ଖାଲି ଦେଶର ନେଣରେ ପରିଣତ ହୋଇଯାଇଛି ଆମର ସ୍ୱାଧୀନତା ପରଠୁ ଓ ମହାତ୍ମା ଗାନ୍ଧିଙ୍କ ତିରୋଧାନ ପରେ।

ମୁଁ କଟକ ମ୍ୟୁନିସିପାଲିଟିରେ କାର୍ଯ୍ୟନିର୍ବାହୀ ଅଧିକାରୀ ଥିଲି ୧୯୯୧-୯୨ ମସିହାରେ। ତମ ସଙ୍ଗରେ କଟକ ସର୍କିଟ ହାଉସ୍‌ରେ ଦି'ଘଣ୍ଟା ଯାଏଁ କଟେଇଥିଲି। ମ୍ୟୁନିସିପାଲିଟିର କେତେକ ସମସ୍ୟା ସମ୍ପର୍କରେ ଆଲୋଚନା ହୋଇଥିଲା। ବିଶେଷତଃ ହାଡ଼ିଆ ପଠାରୁ ବିଷାକ୍ତ ମଦ ଖାଇ ଆମର ପ୍ରାୟ ଦି'ଶହ ଯାଏଁ କର୍ମଚାରୀ ମୃତ୍ୟୁବରଣ କରିଥିଲେ। ତମେ ଭାରି ବିବ୍ରତ ଦେଖାଯାଉଥିଲ। ତଥାପି ମନ ଖୋଲିକରି ମତେ ପଚାରିଲ, "ତୁ ତ ମୋର ଭଉଣୀର ପୁଅ ନୁହେଁ, ମୋତେ କାହିଁକି ମାମୁଁ ଡାକୁଛୁ ମିଛଟାରେ।"

ମୁଁ ତୁମ କଥାରେ ଦବି ନଯାଇ ଉତ୍ତର ଦେଇଥିଲି, "ମୋର ବାପାଙ୍କ ଶଳାଙ୍କ ଶଳା ହେଉଛ ତମେ, ତେଣୁ ତମେ ମାମୁଁ ନ ହୋଇ ଆଉ କ'ଣ ହେବ? ତମେ

ଆଶ୍ଚର୍ଯ୍ୟ ହୋଇ କହିଲ, "କ'ଣ ୩ଟା ଶଳାରେ ମୋର ସ୍ଥାନ ଶେଷକୁ ପଡ଼ିଛି ? ମୋତେ ବୁଝାଇ କହ ।"

ମୁଁ ସେଇମିତି ସ୍ମିତ ହସି କହିଲି, "ମାମୁଁ, ମୋର ବାପାଙ୍କର ଜଣେ ଶଳା ହେଉଛନ୍ତି ସୁକିନ୍ଦାର ପଙ୍କପାଳ ଗ୍ରାମର ନବଘନ ବେହୁରାୟ । ଏଇ ମାମୁଁ ବାହା ହୋଇଛନ୍ତି ଖୋର୍ଦ୍ଧା ବାଜପୁର ଗାଁରେ ରାଜୁ ମାମୁଁଙ୍କ ଭଉଣୀଙ୍କୁ । ଏଇ ରାଜୁ ମାମୁଁ ବାହା ହୋଇଛନ୍ତି ତମର ଭଉଣୀକୁ । ଏଇପରି ବାପାଙ୍କର ତୃତୀୟ ପାହ୍ୟାର ଶଳା ତମେ ଅଟ । ଏଥର ବୁଝିଲ ?" ତମେ ହୋ ହୋ ହୋଇ ହସି ବେଦମ୍ ହୋଇଗଲ । ଏ କଥା ପରେ ମାଈଁଙ୍କୁ କହିବାରୁ ସେ ହସି ହସି କହିଲେ, "ପ୍ରକୃତରେ ତମେ ଆମର ପ୍ରଥମ ପିଢ଼ିର ଭଣଜା ଭଳି ।"

ଏ ବୟସରେ ଏ ପ୍ରକାର ରଙ୍ଗରହସ୍ୟ କରିବାର ଆଉ ବେଳ ନାହିଁ, ତମର ବି ମନେଥିବ ନାହିଁ । ମାତ୍ର ତମେ ଆମ ଦେଶର ଏତେବଡ଼ ନେତା ଥିଲା, ଆଜି କାହିଁକି ହଠାତ୍ ମଉନ ହୋଇଗଲ ? ପୂର୍ବରୁ ଯାହା କହିଛି, ସ୍ୱାଧୀନତା ପ୍ରାପ୍ତିର ୬୭/୬୮ ବର୍ଷ ପରେ ଆମ 'ମାନବବାଦ'କୁ ବଳି ପକାଇ ଦେଇଛେ । ଗାନ୍ଧିଜୀଙ୍କ ସ୍ୱପ୍ନ, ଲାଲବାହାଦୂର ଶାସ୍ତ୍ରୀ ଓ ଗୁଲ୍‌ଜାରୀଲାଲ ନନ୍ଦାଙ୍କ ଭଳି ପ୍ରଧାନମନ୍ତ୍ରୀ କ'ଣ ଆଉ ଏ ଦେଶର ଭାଗ୍ୟରେ ଜୁଟିବେ ନାହିଁ । ଏଇ ତିନିଜଣ ଆମର ପ୍ରାତଃସ୍ମରଣୀୟ ନେତାଙ୍କର କ'ଣ ବୃତ୍ତିବାଡ଼ି ଥିଲା ? ଗାନ୍ଧିଜୀଙ୍କର ୪/୫ ଖଣ୍ଡ ଖଦଡ଼ ଲୁଗା ଓ ଚଦର, ଚଷମାଟିଏ, ବାଙ୍କୁବାଡ଼ିଟିଏ ଓ ହଳେ ଚପଲ ମାତ୍ର । ବିରଳା ଭବନରେ ତାଙ୍କର ପ୍ରାଣଗଲା । ଶାସ୍ତ୍ରୀ ମହାଶୟ ନିହାତି ଦରିଦ୍ର ପରିବାରରୁ ଆସିଥିଲେ ଓ ଦରମା ପାଇଲେ ପୁଅର ଝର କଲମଟିଏ କିଣିଦେବେ ଆଶ୍ୱାସନା ଦେଇଥିଲେ । ସେଇପରି ଆମର ଦି'ଥର ପ୍ରଧାନମନ୍ତ୍ରୀ ହୋଇଥିବା ନନ୍ଦା ମହାଶୟଙ୍କର ଦିଲ୍ଲୀରେ ଘର ଖଣ୍ଡେ ନଥିଲା ଓ ପଇସା ନ ଦେଇ ପାରିବାରୁ ଭଡ଼ାଘରୁ ଘରମାଲିକ ତାଙ୍କର ଜିନିଷପତ୍ର ରାସ୍ତାରେ ଫିଙ୍ଗିଦେଇଥିଲେ । ସେ ସମୟର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ଦୟାରୁ ଗୋଟିଏ ଯାଇତାଇ ସରକାରୀ ଘରେ ତାଙ୍କୁ ଆଶ୍ରୟ ମିଳିଥିଲା । ଏହା ତୁଳନାରେ ବର୍ତ୍ତମାନର ରାଜନେତାମାନଙ୍କ ସାମାଜିକ ସ୍ଥିତି, ଆର୍ଥିକ ପରିସ୍ଥିତିକୁ ଦେଖନ୍ତୁ । ଅଧିକାଂଶ ନେତା କୋଟିପତି । ବିଭିନ୍ନ ଜାତି ଓ ଧର୍ମର ଦ୍ୱାହି ଦେଇ ଭାରତର ୬୭/୬୮ ବର୍ଷର ଗଣତନ୍ତ୍ର ବିଭିନ୍ନ ରାଜ୍ୟ ତଥା କେନ୍ଦ୍ରରେ ପ୍ରତିଷ୍ଠିତ । ଭୋଟ ଦାତାମାନଙ୍କୁ ପ୍ରାୟ ନିଃସହାୟ ଓ କାଙ୍ଗାଳ ସ୍ତରରେ ରଖି ସୁଖସମ୍ଭୋଗ ଜୀବନ କଟାଉଛନ୍ତି । ଦେଶ ତମାମ୍ ନାଲି ପାଣି ବନ୍ୟାରେ ଉବୁଟୁବୁ ହେଉଛି । କୌଣସି ରାଜନୈତିକ ଦଳର ଶକ୍ତି ନାହିଁ ସାରାଦେଶରୁ ମଦ୍ୟପାନ ଲୋପ କରିବାର ଘୋଷଣା

କରିବାକୁ। କୋଟି କୋଟି ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ଉଚ୍ଚଶିକ୍ଷିତ ଯୁବକ ଯୁବତୀ ବେକାର ବସି ଆକାଶର ତାରା ଗଣୁଛନ୍ତି। ଭାଷଣ ଦେଲାବେଳକୁ ଶାସକ ଗୋଷ୍ଠୀ କେତେ ସୁନ୍ଦର ସ୍ୱପ୍ନରେ ଜନସାଧାରଣଙ୍କୁ ମଜେଇ ରଖୁଛନ୍ତି। ପ୍ରତି ବିଷୟରେ ହଜାର ହଜାର ଶହ ଶହ କୋଟି ଟଙ୍କାର ଯୋଜନାରେ ଦେଶଟା ସାରା ଉଠୁଛି ପଡୁଛି। ନିର୍ବାଚନ ତ ପାଞ୍ଚ ବର୍ଷରେ ଥରେ ହେଉଛି ମାତ୍ର ଆମ ଦେଶରେ ଦିନରାତି ଖାଲି ନିର୍ବାଚନ ହତ୍ୟା ଲାଗିରହିଛି। ସମସ୍ତେ ରାଜ୍ୟ ତଥା କେନ୍ଦ୍ର ସ୍ତରରେ ଯେନତେନ ପ୍ରକାରେଣ କ୍ଷମତା ଆହରଣ କରିବାପାଇଁ ବ୍ୟସ୍ତ। ଦେଶ ବାହାରେ ଲକ୍ଷ ଲକ୍ଷ କୋଟି ଟଙ୍କାର କଳାଧନ ଏଇମାନେ ତଥା ଏମାନଙ୍କୁ ଆଶ୍ରିତ ପୁଞ୍ଜିପତିମାନେ ସାଇତି ରଖୁଛନ୍ତି। ଦେଶର ଆଇନ ଡାଳେ ଡାଳେ ଗଲେ ଏମାନେ ପତର ଆଢୁଆଳରେ ସବୁ ସ୍ୱାର୍ଥକୁ ରଖିପାରୁଛନ୍ତି। ଏଇମିତି କେତେ ଉଦ୍‌ଭଟ ସ୍ୱପ୍ନ ତମେ ନିଶ୍ଚୟ ଦିନରାତି ଦେଖିଚାଲିଛ ଓ ଆସ୍ତେ ଆସ୍ତେ ନିର୍ବାକ୍, ନିସ୍ପନ୍ଦ ହୋଇଯାଉଛ।

ସ୍ୱାଧୀନତା ପୂର୍ବରୁ ଆମେ ସାଧାରଣତଃ ସେତେ ସ୍ୱଚ୍ଛଳ ନଥିଲେ ମାତ୍ର ପ୍ରତି ଗାଁଗଣ୍ଡାରେ ଭାଗବତ ଟୁଙ୍ଗିମାନ ରହିଥିଲା। ସବୁ ଗାଁ ଲୋକ ସେଠାରେ ସନ୍ଧ୍ୟାବେଳେ ଏକାଠି ହୋଇ ପୁରାଣ ପଢୁଥିଲେ। ନାଟ ସଂକୀର୍ତ୍ତନ କରୁଥିଲେ ଓ ଗାଁର କଳି ତକରାଳିମାନ ଗାଁରେ ଫଇସଲା କରୁଥିଲେ। କାହାକୁ କିଛିଦିନ ନିଆଁପାଣି ଅଟକ ରଖୁଥିଲେ ତ ଶେଷରେ ଜୋରିମନା ଆଦାୟ କରି ଗାଁବାଲାଙ୍କ ସଙ୍ଗେ ସାମିଲ କରୁଥିଲେ। କେହି କୋର୍ଟକଚେରୀ ଯାଉନଥିଲେ। ଆଜି ଦେଶସାରା କୋର୍ଟ କଚେରୀରେ କୋଟି କୋଟି ମକଦ୍ଦମା ଚାଲୁରହିଛି। ଚୋରୀ ଡକାୟତି, ନାରୀ ଧର୍ଷଣ ଅସମ୍ଭବ ପ୍ରକାରେ ଓ ମାର୍ଗରେ ବଢ଼ିଚାଲିଛି। ରାଜନୈତିକ ଦଳମାନେ ପ୍ରତି ଗାଁ ଗଣ୍ଡାକୁ ୩/୪ ଭାଗରେ ବିଭକ୍ତ କରି ନିଜ ଦଳର ସ୍ୱାର୍ଥସାଧନ ପାଇଁ ଆପ୍ରାଣ ଉଦ୍ୟମ କରୁଛନ୍ତି। ସବୁଆଡେ ଶାନ୍ତି ସୁଖ ଉଡ଼ିଯାଉଛି ଓ ରାବଣମାନେ ପ୍ରତିକ୍ଷେତ୍ରରେ ନିଜକୁ ସୁପ୍ରତିଷ୍ଠିତ କରିଚାଲିଛନ୍ତି। ଏହା କ'ଣ ମହାତ୍ମା ଗାନ୍ଧିଙ୍କର ସ୍ୱପ୍ନର ଭାରତ? ଏଇ ଅବସ୍ଥାକୁ ବର୍ଷ ବର୍ଷ ଧରି ଲକ୍ଷ୍ୟକରି ମନ ଓରିମାନ ମନରେ ମାରି ଦିନ କଟାଇଚାଲିଛ।

ନିକଟରେ ଆମ ରାଜ୍ୟର ତଥା ଦେଶର ସାମାଜିକ ଅର୍ଥନୈତିକ ଓ ଜାତିଭିତ୍ତିକ ଜନଗଣନା ରିପୋର୍ଟ ପ୍ରକାଶ ପାଇଛି। ଏଇ ରିପୋର୍ଟରୁ ଜଣାଯାଏ ଯେ ଓଡ଼ିଶାର ପ୍ରତି ୧୦୦ଟି ଗ୍ରାମୀଣ ପରିବାରରେ ୮୮ଟି ପରିବାରର ମାସିକ ଆୟ ୫୦୦୦ ଟଙ୍କା, ମାସିକ ୧୦,୦୦୦ ଟଙ୍କାରୁ ଅଧିକ ଆୟ କରୁଛନ୍ତି ମାତ୍ର ଶତକଡ଼ା ୪.୭୭ ପରିବାର। ଭିକ୍ଷା ବୃତ୍ତିରେ ଚଳନ୍ତି ୫୪,୧୯୯ ପରିବାର। ରାଜ୍ୟର ନିରକ୍ଷର ଲୋକଙ୍କ ସଂଖ୍ୟା

୧,୨୬,୬୧,୮୩୦ ବା ଶତକଡ଼ା ୩୪.୮୯ ଭାଗ। ଆମ ରାଜ୍ୟର ଶତକଡ଼ା ୫୪ ଭାଗ ଗ୍ରାମାଞ୍ଚଳ ପରିବାରର ଆଦୌ ଜାଗା ବା ଘରବାଡ଼ି ନାହିଁ। ସ୍ୱାଧୀନତା ପ୍ରାପ୍ତିର ୬୭/୬୮ ବର୍ଷଧରି ଶତକଡ଼ା ପ୍ରାୟ ୩୦ ଭାଗ ଲୋକଙ୍କ ଭାଗ୍ୟରେ ସବୁ ସୁଖସମ୍ଭୋଗ ଖଞ୍ଜିଦିଆଯାଇଛି ଓ ଅବଶିଷ୍ଟ ୭୦ ଭାଗ ଲୋକ କୃଷିଜୀବୀ, ମୂଲିଆ ବା ବେକାର ହୋଇ ବସିଛନ୍ତି। ପ୍ରାୟ ସବୁ ରାଜନୈତିକ ଦଳର ନେତାମାନେ କହୁଛନ୍ତି ଆମେ ଦେଶବାସୀଙ୍କର ସେବକ ମାତ୍ର ଓ ପ୍ରକୃତ ମାଲିକ ଟିକସ ଗଣୁଥିବା କୋଟି କୋଟି ଜନସାଧାରଣ। ଏହା କ'ଣ ପ୍ରକୃତରେ ସତ କଥା। ଏଇ ଉଦ୍‌ଭଟ ମିଥ୍ୟା ବାଦରେ ଆମ ଗଣତନ୍ତ୍ରକୁ ପଙ୍ଗୁ କରି ମହାପାତ୍ରମାନେ କଳେବଳେ କଉଶଳେ, ଦଳ ବଦଳେଇ, ରଙ୍ଗ ବଦଳେଇ ମହା ଆରାମରେ ଲୁଣ୍ଠନ କରିଚାଲିଛନ୍ତି। ଏଇସବୁ ଚିନ୍ତା ତମ ମନକୁ ଭାରାକ୍ରାନ୍ତ କରି ରଖିଛି ନିଶ୍ଚୟ।

ତମ ଭାବନା ବିଷୟରେ ବଖାଣୁ ବଖାଣୁ ଏ ଲେଖାଟି ବଡ଼ ହୋଇଯାଉଛି। ଉପସଂହାରରେ ଏତିକି କହୁଛି 'ଡାୟେଜେନେସ୍' ନାମକ ଜଣେ ଦାର୍ଶନିକ ଦିନରେ ଗୋଟିଏ ଜଳୁଥିବା ଲଣ୍ଠନ ଧରି ସବୁଆଡ଼େ ଖୋଜି ଚାଲିଥିଲେ। ଜଣେ 'ମଣିଷ'କୁ ମାତ୍ର ମଣିଷଟିଏ ନପାଇ ହତାଶ ହୋଇ ରହିଲେ। ତୁମେ ବି ସେଇପରି ଏ ପରିପକ୍ୱ ଅବସ୍ଥାରେ 'ମାନବବାଦ'କୁ ଖୋଜିଚାଲିଛି। ଭଗବାନ କରନ୍ତୁ ତମର ସ୍ୱପ୍ନ ସାକାର ହେଉ ଓ ଆମ ମଧରେ ଦୀର୍ଘଜୀବୀ ହୋଇ ରହିଥାଅ।

# ମୁଁ କିମ୍ବଦନ୍ତୀ ପୁରୁଷ ରବି ରାୟଙ୍କୁ ଯେପରି ଜାଣେ

**ଡ. ପ୍ରଭାକର ସ୍ୱାଇଁ**

ଓଡ଼ିଶାର ସାଧାରଣ ଜୀବନରେ ରବି ରାୟ ଏକ ସ୍ୱର୍ଦ୍ଧିତ ଉଚ୍ଚାରଣ। ଜନ୍ମ ତାଙ୍କର ଅବିଭକ୍ତ ପୁରୀ ଜିଲ୍ଲା (ସଂପ୍ରତି ଖୋର୍ଦ୍ଧା ଜିଲ୍ଲା)ର ଭଅଁରାଗଡ଼ ଗାଁରେ। ମେଧାବୀ ରବି ରାୟ ଉଚ୍ଚଶିକ୍ଷା ପାଇଁ କଟକ ଆସି ଐତିହାସିକ ରେଭେନ୍ସା କଲେଜରେ ଅଧ୍ୟୟନ କରନ୍ତି। ଛାତ୍ର ରାଜନୀତିରେ ଅଂଶଗ୍ରହଣ କରି ଛାତ୍ର ସଂସଦର ସଭାପତି ନିର୍ବାଚିତ ହୁଅନ୍ତି। ପୁଣି ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରନ୍ତି। ଭାରତ ସ୍ୱାଧୀନତା ପାଇବା ପରେ ଜୟପ୍ରକାଶ ନାରାୟଣ ଓ ରାମମନୋହର ଲୋହିଆଙ୍କ ନେତୃତ୍ୱରେ ଗଠିତ ସୋସିଆଲିଷ୍ଟ ପାର୍ଟିରେ ଯୋଗଦେଇ ସମାଜବାଦୀ ଆନ୍ଦୋଳନର ପ୍ରବକ୍ତା ସାଜନ୍ତି। ୧୯୬୭ ମସିହାରେ ସୋସିଆଲିଷ୍ଟ ପାର୍ଟିର ପ୍ରାର୍ଥୀଭାବେ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୁଅନ୍ତି ଓ ଲୋକସଭାରେ ସୋସିଆଲିଷ୍ଟ ପାର୍ଟିର ନେତା ମନୋନୀତ ହୁଅନ୍ତି। ଯୁବ ସାଂସଦ ଭାବରେ ଲୋକସଭାରେ ତାଙ୍କର ବିତର୍କ ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କରିପାରିଥିଲା। ଲୋହିଆଙ୍କ ଆଦର୍ଶରେ ଓଡ଼ିଶା ସମେତ ସମଗ୍ର ଦେଶରେ ସେ ସମାଜବାଦୀ ଆନ୍ଦୋଳନକୁ ତୀବ୍ର ରୂପ ଦେଇଥିଲେ। ପରେ ରାଜ୍ୟସଭାକୁ ନିର୍ବାଚିତ ହୋଇ ସାଂସଦ ଭାବରେ ଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ୧୯୭୭ରେ ଜନତା ପାର୍ଟି ସରକାରରେ ସ୍ୱାସ୍ଥ୍ୟମନ୍ତ୍ରୀ ପଦ ମଣ୍ଡନ କରି ଦେଶର ସ୍ୱାସ୍ଥ୍ୟ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିପାରିଥିଲେ। ତାଙ୍କ ଉଦ୍ୟମରେ ଯୁକ୍ତରାଜ୍ୟ (UK) ରୁ ଅନୁଦାନ ଅଣାଯାଇ ଭାରତବର୍ଷର ଗ୍ରାମାଞ୍ଚଳରେ ଛୋଟବଡ଼ ବହୁ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା। ୧୯୯୦ରେ ସେ କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ମର୍ଯ୍ୟାଦାବନ୍ତ ଲୋକସଭାର ବାଚସ୍ପତି ଆସନରେ ଅଧିଷ୍ଠିତ ହୋଇଥିଲେ। ଏପରି ପଦ ଅଳଙ୍କୃତ କରିବାରେ ଏଯାବତ୍ ସେ ଏକମାତ୍ର ଓଡ଼ିଆ। ବାଚସ୍ପତି ଭାବରେ ସେ ଯେଉଁ ଐତିହାସିକ ରାୟମାନ ଦେଇଛନ୍ତି, ତାହା କେବଳ ଭାରତରେ ନୁହେଁ ସମଗ୍ର ବିଶ୍ୱ ଗଣତନ୍ତ୍ରରେ ଅଭିନବ। ସେହି ଐତିହାସିକ ରାୟଗୁଡ଼ିକ ଗଣତାନ୍ତ୍ରିକ ଇତିହାସରେ ଦୃଷ୍ଟାନ୍ତ ହୋଇପାରିଛି। ସେଥିପାଇଁ ଆକୁମାରୀ

ହିମାଚଳ ତାଙ୍କ ଗୁଣଗାନରେ ମୁଖରିତ ହୋଇଛି। ସେ ପୃଥିବୀର ବିଭିନ୍ନ ଦେଶ ସେମାନଙ୍କ ନିମନ୍ତ୍ରଣ କ୍ରମେ ଗସ୍ତକରି ଭାରତୀୟ ଗଣତନ୍ତ୍ର ସଂପର୍କରେ ଯେଭଳି ବକ୍ତବ୍ୟ ଉପସ୍ଥାପନା କରିଛନ୍ତି, ତାହାର ପଟାନ୍ତର ନାହିଁ। ତାଙ୍କର କେନ୍ଦ୍ରମନ୍ତ୍ରୀ, ବାଚସ୍ପତି ଓ ସାଂସଦ କାର୍ଯ୍ୟକାଳ ମଧ୍ୟରେ ଓଡ଼ିଶାର ସ୍ୱାସ୍ଥ୍ୟ, ଶିକ୍ଷା ସମେତ ବହୁବିଧ ଉନ୍ନୟନ କାର୍ଯ୍ୟ କରିଛନ୍ତି। ପରିଣତ ବୟସରେ ମଧ୍ୟ ଶ୍ରୀଯୁକ୍ତ ରାୟ ନିଜ ରାଜନୈତିକ ଜୀବନର ଗୁରୁ ଓ ଆଦର୍ଶ ଡ. ରାମମନୋହର ଲୋହିଆଙ୍କ ନାମରେ ଏକାଡ଼େମୀ ପ୍ରତିଷ୍ଠା କରିଛନ୍ତି। ଏହି ଏକାଡ଼େମୀ ଆଜି ବିଭିନ୍ନ ସାଂସ୍କୃତିକ ଓ ବୌଦ୍ଧିକ କାର୍ଯ୍ୟକ୍ରମର ପୀଠସ୍ଥଳୀରେ ପରିଣତ ହୋଇଛି। ଏହି ଅନୁଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମରେ ମୁଁ ବହୁବାର ଯୋଗଦେଇଛି। ଏହା ଓଡ଼ିଶାବାସୀଙ୍କୁ ତାଙ୍କର ଏକ ମହାର୍ଘ ଅବଦାନ।

ଏହି ମହାମାନବଙ୍କୁ ମୁଁ ମୋର ସ୍କୁଲ ଛାତ୍ରାବସ୍ଥାରୁ ଜାଣେ। ଆମ ଗାଁ ଜଗତସିଂହପୁର ଜିଲ୍ଲାର ତିର୍ତ୍ତୋଲ ଅଞ୍ଚଳକୁ ସେ ବିଭିନ୍ନ ସଭାସମିତିକୁ ଯାଉଥିଲେ। ମୁଁ ତାଙ୍କୁ ସେହି ସଭା ସମିତିରେ ଦେଖିଥିଲି। ତାଙ୍କ ଉଦ୍‌ବୋଧନ ମୋତେ କାହିଁକି ସମଗ୍ର ଶ୍ରୋତୃମଣ୍ଡଳୀକୁ ଶିହରିତ କରୁଥିଲା। ପ୍ରଚଣ୍ଡ ବାଗ୍ମୀ ସେ। ପରେ ରାଉରକେଲାଠାରେ ଆଞ୍ଚଳିକ ଇଂଜିନିୟରିଂ କଲେଜର ମୁଁ ଛାତ୍ର ଥିବାବସ୍ଥାରେ ତାଙ୍କର ଭାଷଣ ଶୁଣିବାର ସୁଯୋଗ ଲାଭ କରିଛି।

୧୯୯୧ରେ ମୋର ମାନସପୁତ୍ର ସାରଳା ସାହିତ୍ୟ ସଂସଦର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥିରୂପେ ଯୋଗଦେବାକୁ ଆମେ ତାଙ୍କୁ ନିମନ୍ତ୍ରଣ କରିଥିଲୁ। ସେତେବେଳେ ଆଜିର ଭବ୍ୟ ସାରଳା ଭବନ ନିର୍ମିତ ହୋଇନଥାଏ। ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥାଏ କଳାବିକାଶ କେନ୍ଦ୍ରଠାରେ। ସେହି ସଭାରେ ମୋର ତାଙ୍କ ସହିତ ପ୍ରଥମ ବ୍ୟକ୍ତିଗତ ପରିଚୟ ହୁଏ। ପ୍ରବୀଣ ସାମ୍ବାଦିକ ଓ ସାହିତ୍ୟିକ ଗୋରାଚାନ୍ଦ ମିଶ୍ର ମୋତେ ରବିବାବୁଙ୍କ ସହିତ ପରିଚିତ କରାଇଦେଇଥିଲେ। ପରେ ଭୁବନେଶ୍ୱର ଓ କଟକର ବିଭିନ୍ନ ସଭାସମିତିରେ ତାଙ୍କ ସହ ସାକ୍ଷାତ ହୋଇଛି। ଦେଖିବାମାତ୍ରେ ସେ କହନ୍ତି, "ପ୍ରଭାକର ଭଲ ଅଛୁ ତ ?" ଏତେବଡ଼ ଲୋକଙ୍କ ଏଭଳି ଶ୍ରଦ୍ଧାସୂଚକ ବାଣୀ ଶୁଣି ମୁଁ ଉଲ୍ଲସିତ ହୋଇଉଠେ। ଥରେ ମୁଁ ଖଣ୍ଡିଏ ଚିଠି ତାଙ୍କୁ ଲେଖି ଦିଲ୍ଲୀ ଠିକଣାରେ ପଠାଇଲି। ମୋର ଚିଠି ଇଂରାଜୀ ଭାଷାରେ ଟାଇପ୍ ହୋଇଥିଲା। ସେ ଚିଠି ପାଇ ନିଜ ହସ୍ତ ଲିଖିତ ଓଡ଼ିଆ ଭାଷାରେ ଉତ୍ତର ଦେଇଥିଲେ। ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି ଯେ, ବାଚସ୍ପତି ଭଳି ଦେଶର ବ୍ୟସ୍ତବହୁଳ କାର୍ଯ୍ୟ ନିର୍ବାହ କରୁଥିବା ବିରାଟ ମଣିଷ ମୋ ଭଳି ଜଣେ ଅକିଞ୍ଚନକୁ ସ୍ୱହସ୍ତରେ ଚିଠିଟିଏ ଲେଖି ପଠାଇଲେ।

୧୯୯୩ ମସିହାର କଥା। ହଠାତ୍ ସାହିତ୍ୟିକା ଡକ୍ଟର ସୁଲୋଚନା ଦାସ ଆମ ଘରେ ପହଞ୍ଚି ମୋ ସାନଭାଇ ପ୍ରସନ୍ନ (ସଂପ୍ରତି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଫେସର ଡ. ପ୍ରସନ୍ନ କୁମାର ସ୍ୱାଇଁ) ପାଇଁ ବିବାହ ପ୍ରସ୍ତାବଟିଏ ଦେଲେ। ସେ ପ୍ରସ୍ତାବଥିଲା ରବିରାୟଙ୍କ ଝିଆରୀ (ବଡ଼ଭାଇଙ୍କ ଝିଅ) ଇତିଶ୍ରୀ ସଂପର୍କରେ। ରବିରାୟଙ୍କର ପରିବାରର ଗୋଟିଏ ଝିଅ ପାଇଁ ପ୍ରସ୍ତାବ ଅତ୍ୟନ୍ତ ସ୍ୱାଗତଯୋଗ୍ୟ ବୋଲି ଅନୁଭବ କଲି। ରବିରାୟ ଏତେ ଭଲ ମଣିଷ। ତେଣୁ ତାଙ୍କ ରକ୍ତସଂପର୍କୀୟା ଝିଅ ନିଶ୍ଚିତ ଭଲ ହୋଇଥିବ ବୋଲି ମୁଁ ବିଶ୍ୱାସ ରଖିଥିଲି। ୧୯୯୩ ନଭେମ୍ବରରେ ପ୍ରସନ୍ନର ବିବାହ ଇତିଶ୍ରୀ ସହିତ ହୋଇଥିଲା। ତା'ପରେ ରବିରାୟ ମୋର ନିକଟ ସଂପର୍କୀୟ ହୋଇଗଲେ। ମୁଁ ତାଙ୍କୁ ଦାଦା ଏବଂ ତାଙ୍କ ସହଧର୍ମିଣୀ ପ୍ରସିଦ୍ଧ ସମାଜସେବୀ ଓ ସାହିତ୍ୟିକା ପ୍ରଫେସର ଡ. ସରସ୍ୱତୀ ସ୍ୱାଇଁଙ୍କୁ ଖୁଡ଼ୀ ବୋଲି ସମ୍ବୋଧନ କଲି। ଏଣିକି ମୁଁ ତାଙ୍କ ସହିତ ଘନିଷ୍ଠଭାବେ ମିଶିବାର ସୁଯୋଗ ପାଇଲି ଓ ତାଙ୍କୁ ନିକଟରୁ ଦେଖିଲି। ମୁଁ ଶୁଣିଥିଲି ସେ ଜଣେ ଭଦ୍ର, ସ୍ନେହୀ, ଦରଦୀ ଓ ପରୋପକାରୀ ମଣିଷ। ଏବେ ସେଗୁଡ଼ିକୁ ମୁଁ ଅଙ୍ଗେ ନିଭେଇଛି। ସେ ମୋତେ ବହୁ ଶ୍ରଦ୍ଧା କରନ୍ତି। ମୋର ସ୍ତ୍ରୀ ଓ ପିଲମାନଙ୍କୁ ମଧ୍ୟ ଅନୁରୂପ ସ୍ନେହ ଦେଇଥାନ୍ତି। ଆମ ପରିବାରର ସୁଖଦୁଃଖରେ ରବିଦାଦା ଏବଂ ସରସ୍ୱତୀ ଖୁଡ଼ୀ ସବୁବେଳେ ସାମିଲ ହୋଇଥା'ନ୍ତି। ଏତେବଡ଼ ମଣିଷ ହୋଇ ମଧ୍ୟ ଗର୍ବ ଓ ଅହଙ୍କାର ତାଙ୍କୁ ସ୍ପର୍ଶ କରି ନାହିଁ। ମୁଁ ଓଡ଼ିଶାର ବହୁ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ପ୍ରଭୃତିଙ୍କ ସଂପର୍କରେ ଆସିଛି, କିନ୍ତୁ ରବି ରାୟଙ୍କ ଭଳି ନିରହଙ୍କାରୀ ରାଜନେତା ଦେଖିନାହିଁ। ସେ ଭିନ୍ନ ଏକ ମଣିଷ। ରୁଚି ତାଙ୍କର ସ୍ୱତନ୍ତ୍ର। ସେ ସାଧୁତା ଓ ମୂଲ୍ୟବୋଧରେ ବିଶ୍ୱାସ କରନ୍ତି। ଭାରତୀୟ ରାଜନୀତିରେ ସେ ସାଧୁତାର ମୂର୍ତ୍ତିମନ୍ତ ପ୍ରତୀକ।

ସେ ମାନବଜାତିକୁ ଭଲପାଆନ୍ତି। ତାଙ୍କ ଦୃଷ୍ଟିରେ ଦୁନିଆରେ ସମସ୍ତେ ଭଲ ମଣିଷ। କାହାରିକୁ ଥରେ ସେ ଖରାପ କହିବା ମୁଁ କେବେ ଶୁଣିନାହିଁ। ମୋର ମନେହୁଏ ଏଭଳି ଚିନ୍ତାଧାରାର ମଣିଷ ସେ ଏକକ। ରାଜନୀତିରେ ବହୁ ଶତ୍ରୁ ଓ ସମାଲୋଚକ ଥାଆନ୍ତି। କିନ୍ତୁ ରବି ରାୟ ଅଜାତଶତ୍ରୁ। ସେ ସାଧାରଣ ଜୀବନଯାପନ କରନ୍ତି; କିନ୍ତୁ ଅସାଧାରଣ ତାଙ୍କର ବ୍ୟକ୍ତିତ୍ୱ। ସବୁରି ମୁଖରେ ତାଙ୍କର ଉଚ୍ଚପ୍ରଶଂସା। ବାସ୍ତବରେ ସେ ଉତ୍କଳ ଜନନୀର ବରପୁତ୍ର। ତାଙ୍କ ଭଳି ସୁପୁତ୍ରକୁ ଜନ୍ମଦେଇ ଓଡ଼ିଶା ମାଟି ଧନ୍ୟ ହୋଇଛି। ସେ କୋଟି ଓଡ଼ିଆମାନଙ୍କର ଗୌରବ ଓ ପ୍ରଣମ୍ୟ; ଓଡ଼ିଆ ଜାତିର କିମ୍ବଦନ୍ତୀ ପୁରୁଷ।

ଆଜିର ପୁଣ୍ୟଦିନରେ ଲୋହିଆ ଏକାଡ଼େମୀ ସେହି ମହାପୁରୁଷ ରବି ରାୟଙ୍କ ଉଦ୍ଦେଶ୍ୟରେ ଏକ ଅଭିନନ୍ଦନିକା ଗ୍ରନ୍ଥ ପ୍ରକାଶ କରୁଥିବା ଅତ୍ୟନ୍ତ ଆନନ୍ଦର କଥା। ଏହି ଅବସରରେ ମୁଁ ଶ୍ରୀଯୁକ୍ତ ରାୟଙ୍କ ପାଦପଦ୍ମରେ କୋଟି ପ୍ରଣାମ ଜଣାଇବା ସହିତ ମା' ଶାରଳାଙ୍କୁ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି। ■■■

# ରବି ରାୟ ଆମ ସମସ୍ତଙ୍କର ଗର୍ବ

ଶ୍ରୀ ପ୍ରତାପ କୁମାର ଜଗଦେବ ମହାପାତ୍ର

ମାମୁ ଆମ ସମସ୍ତଙ୍କର ଗର୍ବ। ନୂଆ ଯାଗାକୁ ଗଲେ, ନୂଆ ଲୋକ ସାଙ୍ଗରେ କଥାବାର୍ତ୍ତା କଲାବେଳେ ଓ ନୂଆ ସମ୍ପର୍କ ସ୍ଥାପନ କରିବାକୁ ଥିଲେ, ମାମୁଙ୍କ କଥା ଆମେ ସମସ୍ତେ କହୁ। ତାଙ୍କ ନାଁରେ ଆମର ପାରିବାରିକ ସଂସ୍କୃତିକୁ ସମସ୍ତେ ଚିହ୍ନନ୍ତି, ତାଙ୍କ କଳାକୀର୍ତ୍ତିରେ ଆମ ସମସ୍ତଙ୍କୁ ମାପନ୍ତି ଓ ତାଙ୍କ ପାଦ ଚିହ୍ନରୁ ଆମର ବ୍ୟକ୍ତିତ୍ୱକୁ ଜାଣିବା ପାଇଁ ଚେଷ୍ଟା କରନ୍ତି। ଆମେ ସମସ୍ତେ ନିଜର ସୁବିଧା ପାଇଁ ତାଙ୍କ ନାଁର ଉପଯୋଗ କରୁ, ତାଙ୍କ ନାଁ ନେଇ ଉପରକୁ ଉଠିବାକୁ ଚେଷ୍ଟାକରୁ।

କିନ୍ତୁ ରବି ରାୟ କାହାର ସାହାଯ୍ୟ ନେଇ ଉପରକୁ ଉଠି ନଥିଲେ। ଜମିଦାର ଘରର ସନ୍ତାନ। ଅଚଳାଚଳ ସମ୍ପତ୍ତି। ଚାହିଁଥିଲେ ବହୁତ ମଜା ମଜଲିସରେ ସମୟ କଟାଇ ପାରି ଥା'ନ୍ତେ। ତା' ପରିବର୍ତ୍ତେ ଅଦମ୍ୟ ଉତ୍ସାହ ଓ କଠିନ ଓ ତ୍ୟାଗପୂତ ଅଧ୍ୟବସାୟ ବଳରେ ସେ ସମାଜସେବା ଓ ରାଜନୀତିରେ ଯୋଗଦେଲେ।

ରାଜନୈତିକ ଅନିଶ୍ଚିତତା ମାମୁଙ୍କୁ କେବେ ବି ଭାଙ୍ଗି ଦେଇ ନ ଥିଲା। ଆଜିର କଳୁଷିତ ରାଜନୀତିରୁ ସେ ଥିଲେ ବହୁତ ଉର୍ଦ୍ଧ୍ୱରେ। ଗାନ୍ଧିଙ୍କ ସତ୍ୟତା, କୋମଳତା ଓ କରୁଣତା ଏବଂ ଲୋହିଆଙ୍କ ନିର୍ଭୀକତା ଥିଲା ତାଙ୍କ ଜୀବନର ଆଦର୍ଶ। ନିଃସ୍ୱାର୍ଥପରତା ଥିଲା ତାଙ୍କର ଜନ୍ମଗତ ସ୍ୱଭାବ। ଆଜିର ସାମାଜିକ କଳୁଷ ଓ ରାଜନୈତିକ ଭ୍ରଷ୍ଟାଚାର ତାଙ୍କୁ ବହୁତ ଦୁଃଖ ଦେଉଥିଲା।

ମାମୁ ଯେତେବେଳେ ପ୍ରଥମଥର ଲୋକସଭା ସଦସ୍ୟ ହୋଇ ଦିଲ୍ଲୀ ଯିବାପାଇଁ ଟ୍ରେନ୍‌ରେ ହାଓଡ଼ା ଷ୍ଟେସନରେ ପହଞ୍ଚିଲେ, ମୁଁ ମୋର ଜଣେ ଯାଦବପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଛାତ୍ରବନ୍ଧୁଙ୍କୁ ନେଇ ହାଓଡ଼ା ଷ୍ଟେସନ ଯାଇଥିଲି ମାମୁଙ୍କୁ ଅଭିନନ୍ଦନ ଦେବାପାଇଁ। ମୁହଁରୁ କିନ୍ତୁ ଆମର କୌଣସି କଥା କାହାରି ନଥିଲା। ସେଇ ବିରାଟ ବ୍ୟକ୍ତିତ୍ୱ ସମ୍ମୁଖରେ ମୁଣ୍ଡ ନଇଁ ଯାଇଥିଲା। ମାମୁଙ୍କ ମୁହଁରେ ଯେଉଁ ପ୍ରସନ୍ନତା ଆଉ ଯେଉଁ ଆତ୍ମବିଶ୍ୱାସ ତାହା ଏବେ ବି ମୋର ମନେଅଛି। ଆମ ଦୁହିଁଙ୍କୁ ଅନ୍ୟ ବହୁ ଲୋକସଭା ସଦସ୍ୟମାନଙ୍କ

ସାଙ୍ଗରେ ମୋତେ ଚିହ୍ନାଇ ଦେଇ ମାମୁ କହୁଥାନ୍ତି, "ଏ ମୋର ଭଣଜା, ଯାଦବପୁରରେ ଇଂଜିନିୟରିଂ ପଢୁଛି।"

ତା'ର ଦୁଇବର୍ଷ ପରେ ମୁଁ ଦିଲ୍ଲୀ ଗଲି। ଦୈବାତ୍ ସେହି ସମୟରେ ମାମୁଙ୍କର ଲୋକସଭାରେ ଗୋଟିଏ ବକ୍ତବ୍ୟ ଥିଲା। ମୁଁ ଲୋକସଭାର ଦର୍ଶକ ମଞ୍ଚରେ ବସିଥାଏ। ମାମୁଙ୍କର ହିନ୍ଦୀରେ ଦେଉଥିବା ଉଜ୍ଜସ୍ୱିନୀ ବକ୍ତୃତା ଶୁଣି ମୋର ଲୋମ ଟାଙ୍କୁରି ହୋଇ ଉଠୁଥିଲା ଲୋକସଭା ଅଧିବେଶନରୁ ବାହାରି ମାମୁ ମୋତେ ବିଭିନ୍ନ ଲୋକସଭା ସଦସ୍ୟମାନଙ୍କୁ ଚିହ୍ନେଇ ଦେଇ କହୁଥା'ନ୍ତି, "ଏ ମୋର ଭଣଜା, ମେକାନିକାଲ ଇଂଜିନିୟର"।

ଏତେ କର୍ମବ୍ୟସ୍ତତା ଭିତରେ ବି ମାମୁଁ ତାଙ୍କ ଭଉଣୀ, ପୁତୁରା, ଝିଆରୀ, ଭଣଜା, ଭାଣିଜୀ, ନାତି ଓ ନାତୁଣୀମାନଙ୍କ ସାଙ୍ଗରେ ସମ୍ପର୍କ ବଜାୟ ରଖିଥିଲେ। କାହାକୁ ପ୍ରଥମଥର ଦେଖିଲେ, ଆରମ୍ଭ କରନ୍ତି ପରିବାରର ମୂଳରୁ, ଶାଖାପ୍ରଶାଖା ପର୍ଯ୍ୟନ୍ତ।

ଗତ ୨-୩ ବର୍ଷରେ ମାମୁ ଭଲଭାବରେ ଲୋକ ଚିହ୍ନି ପାରୁ ନଥିଲେ। ହେଲେ ଯଦି କେହି କହେ ଟିକ ଅପା, ଯମୁନା ଅପା, ସୂର୍ଯ୍ୟବାଳା ଅପା କିମ୍ବା କଇ ଅପାଙ୍କ କଥା, ସାଙ୍ଗେ ସାଙ୍ଗେ ସେ ଆରମ୍ଭ କରିଦିଅନ୍ତି ୭୦-୮୦ ବର୍ଷ ତଳର ପୁରୁଣା କଥା। ଯେ କୌଣସି ବାହାଘରକୁ ମାମୁ ନିଶ୍ଚୟ ଆସିବେ ଓ ଆସିବା ସାଙ୍ଗେ ସାଙ୍ଗେ ସବୁ ଭଉଣୀ, ଭଣଜା, ନାତି ଓ ନାତୁଣୀମାନଙ୍କ ଗହଣରେ ଏକାଠି ବସି ଗପ କରିବାକୁ ବସିଯିବେ ଘଣ୍ଟା ଘଣ୍ଟା ଧରି। ଏପରି ଅମାୟିକ ବ୍ୟକ୍ତିତ୍ୱ, ଏପରି ଅନାବିଳ ସ୍ନେହ, ଏବଂ ପାରିବାରିକ ସଂହତି ପାଇବା ବା ଦେଖିବା ବିରଳ।

Emergency ର ସମୟ। ମାମୁ ସେତେବେଳେ ଅମ୍ବାଲା ଜେଲରେ ରାଜବନ୍ଦୀ। ଆମେ ସେତେବେଳେ ମାମାଙ୍କ ସାଙ୍ଗରେ ଦିଲ୍ଲୀରେ ମାମୁଙ୍କ ଘରେ ଆଉ କିଛିଦିନ ପାଇଁ। ଜାନୁୟାରୀ ୧ ତାରିଖ ସକାଳ ୬ଟାରେ ଟ୍ରେନ୍‌ରେ ଆମର ଫେରି ଆସିବା କଥା। ତା' ପୂର୍ବ ସନ୍ଧ୍ୟାରେ ଶୁଣିଲୁ ମାମୁ ଜେଲରୁ ମୁକୁଳିଛନ୍ତି। ମାମୁ ଆସି ରାତି ୧ଟାରେ ଦିଲ୍ଲୀ ଘରେ ପହଞ୍ଚିଲେ। ମାମାଙ୍କୁ କୋଳାଇ ପକାଇ କହିଲେ, 'ଖାଲି ତୋରି ପାଇଁ ଏତେ ରାତିରେ ଆଉ ଏଇ ଥଣ୍ଡାରେ ଆସିଛି'। ସେ ରାତିରେ ଆମେ ଆଉ ଶୋଇ ନଥିଲୁ। ମାମୁଙ୍କ ମୁହଁର ଅସରନ୍ତି କଥା ଓ ତାଙ୍କ ବାଗ୍ମୀତା ଆମ ସମସ୍ତଙ୍କୁ ଟାଣି ଧରିଥିଲା।

ମୋ ଜୀବନର ସବୁଠାରୁ ବଡ଼ ସିଦ୍ଧାନ୍ତ ନେଇଥିଲେ ମାମୁ । ମୁଁ ବୁର୍ଲା ଇଂଜିନିୟରିଂ କଲେଜରେ ପ୍ରଥମବର୍ଷରେ ଭର୍ତ୍ତି ହୋଇଥାଏ । କିନ୍ତୁ ପଢ଼ାପଢ଼ି ଆରମ୍ଭ ହୋଇ ନ ଥାଏ ଓ Ragging ଭୟରେ ଗାଁକୁ ଚାଲି ଆସିଥାଏ । ଆସି ଦେଖିଲି କଲିକତା ଯାଦବପୁର ବିଶ୍ୱବିଦ୍ୟାଳୟରୁ Admission ଚିଠି । ମୁଁ ବାବାଙ୍କ ପାଖରେ ଅଡ଼ିବସିଲି ଯାଦବପୁରରେ ପଢ଼ିବା ପାଇଁ । ବାବାଙ୍କର ସେତେବେଳେ ଆର୍ଥିକ ଦୁରବସ୍ଥା । ଆମେ ଚାରି ଭାଇ ପଢ଼ାରତ । ବୁର୍ଲା Admission ରେ ମୋ ପିଛା ଯଥେଷ୍ଟ ଖର୍ଚ୍ଚ । ତଦୁପରି କଲିକତା ଭଳି ବିରାଟ ମହାନଗରୀରେ ପଢ଼ିବାର ଧୃଷ୍ଟତା ବାବାଙ୍କୁ ସମୀଚୀନ ମନେ ହେଉ ନଥିଲା । ମୋତେ ନେଇ ବାବା ଗଲେ କଟକ ଟୁନ ନନାଙ୍କ ପରାମର୍ଶ ନେବାକୁ । ଟୁନନନାଙ୍କ ମେଡ଼ିକାଲ କଲେଜ ହଷ୍ଟେଲରେ ପହଞ୍ଚିଲାବେଳକୁ ମାମୁ ମଧ ତାଙ୍କ ରୁମ୍‌ରେ ଅଛନ୍ତି । ବାବାଙ୍କଠାରୁ ସବୁ ଶୁଣିବା ସାଙ୍ଗେ ସାଙ୍ଗେ ମାମୁଁ କହିଲେ, "କି କଥା, ପିଲାଟା ଏତେବଡ଼ ସୁଯୋଗ ପାଇଛି, ତମେ ତାକୁ ସେଠାକୁ ପଠାଇବନି ?" ସାଙ୍ଗେ ସାଙ୍ଗେ ଆଦେଶ, "ଟୁନ, ତୁ ଫକୁନିକୁ ନେଇ କଲିକତା ଯାଆ ।" ସତରେ, ସେଦିନ ତାଙ୍କର ସେ କହିବାର ଭଙ୍ଗୀ ଅବିଚଳିତ ଓ ବିଶ୍ୱାସଭରା କଥା ମୋ ଜୀବନର ମାର୍ଗ ଦର୍ଶାଇ ଦେଇଥିଲା ।

ମାମୁଙ୍କୁ ଦେଖିଲେ ଏବେ ଦୁଃଖ ଲାଗୁଛି, ଯିଏ ଦିନେ ନିଜର ଭାଷଣ ପଟୁତାରେ, ନିଜର ଦୃଢ଼ ନିଷ୍ପତ୍ତି ଜରିଆରେ ନିଜର ଅନାବିଳ ସ୍ନେହରେ ସମସ୍ତଙ୍କର ହୃଦୟ ଜୟ କରିପାରିଥିଲେ – ସେ ଆଜି ସଂପୂର୍ଣ୍ଣ ଚଳତ୍‌ଶକ୍ତିହୀନ ! ମାମୁଙ୍କ ଜୀବନଦର୍ଶନ ଆମ ସମସ୍ତଙ୍କର ପାଥେୟ ହେଉ, ଏତିକି କାମନା ।

■■■

# ମୋ ଅଜାଙ୍କୁ ମୁଁ ଯେମିତି ଜାଣେ

**ପ୍ରତୀକ୍ଷା ସ୍ୱାଇଁ (ମାମାଲି)**

ଦୁନିଆରେ ସମସ୍ତଙ୍କ ପରି ମୋର ବି ଜଣେ ଅଜା ଅଛନ୍ତି। ମୋର ଜ୍ଞାନ ଆସିବା ଦିନରୁ ମା' ସହିତ ଅଜା ଘରକୁ ବାରମ୍ବାର ଯିବା ଭିତରେ ତାଙ୍କ ସହିତ ଆତ୍ମୀୟତା। ପିଲାଦିନେ ମୁଁ ଚାଲିବା ଅପେକ୍ଷା କୁଆଡ଼େ ବେଶୀ ଦଉଡୁଥିଲି ଆଉ ପଡୁଥିଲି । ମୋତେ ଦେଖିଲେ ଖୁସିରେ ଗଦ୍‌ଗଦ ହେଉଥିଲେ ଅଜା ଓ ମା'କୁ କହୁଥିଲେ- ''ଇତି, ତାକୁ ଛାଡ଼ିଦେ, ସେ ଦଉଡୁ। ତୋ ଝିଅ ଖୁବ୍ ବିଦୂଷୀ ହେବ। ସେ ଖେଳାଖେଳି କରୁଚି ନା ନାଇଁ। ସ୍ୱାସ୍ଥ୍ୟବତୀ ହେବାକୁ ହେଲେ ଖେଳକୁଦ ଦରକାର। ଖୁଡୀ (ଆଇ)ଙ୍କୁ ଡ଼ାକି କହୁଥିଲେ ତାକୁ ଚକଲେଟ ଦିଅ।'' ଅଜାଙ୍କ ଘରକୁ ଗଲେ ଦେଖୁଥିଲି ସେ ଅନେକ ସମୟରେ ସୋଫାରେ ବସି ଗଦାଗଦା ଖବର କାଗଜ ନହେଲେ ବହି ପଢୁଛନ୍ତି ଆଉ କଲମ ଧରି କ'ଣ ସବୁ ଲେଖୁଛନ୍ତି। ବେଳେବେଳେ ତାଙ୍କ କଲମ ଟାଣିଆଣି ମୁଁ ବି ଖବର କାଗଜରେ କ'ଣ କ'ଣ ଗାରେଇ ଦେଉଥିଲି । ମା' ମୋ ଉପରେ ରାଗୁଥିଲା। ଥରେ ସ୍କୁଲରେ ପଢୁଥିଲାବେଳେ ଗୋଟିଏ ସାଧାରଣଜ୍ଞାନ ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହେଲାବେଳେ ଗାନ୍ଧିଜୀ ଗାନ କରୁଥିବା ଗୋଟିଏ ଭଜନ 'ରଘୁପତି ରାଘବ ରାଜା ରାମ'ର ରଚୟିତା କିଏ ବୋଲି ବାପାଙ୍କୁ ପଚାରିଲି। ବାପା କହିଲେ- ''ମୁଁ ଜାଣିନି, ଅଜା ମହାତ୍ମାଗାନ୍ଧୀଙ୍କ ସଂପର୍କରେ ବହୁତ ପଢ଼ିଛନ୍ତି ଓ ଚର୍ଚ୍ଚା କରିଛନ୍ତି, ତୁ ଅଜାଙ୍କୁ ପଚାର ଆଉ ଚିଠି ଲେଖ।'' ମୁଁ ତାଙ୍କୁ ଇଂରାଜୀରେ ଚିଠି ଲେଖିବା ଆରମ୍ଭ କଲି । ମା' କହିଲା- ''ନାଇଁ, ଓଡ଼ିଆରେ ଲେଖେ।'' ସେତେବେଳକୁ ମୁଁ ଓଡ଼ିଆରେ ବାକ୍ୟ ଲେଖିବା ଆରମ୍ଭ କରୁଥାଏ । ଅକ୍ଷର ବଙ୍କା ଟଙ୍କା । ଓଡ଼ିଆରେ ଚିଠି ଲେଖିଲି । ଅଜା ସେତେବେଳେ ଦିଲ୍ଲୀରେ ରହୁଥାନ୍ତି। ବାପାଙ୍କୁ ଚିଠିଦେଲି। ସେ ଚିଠିକୁ ଅଜାଙ୍କ ପାଖକୁ ଦିଲ୍ଲୀ ପଠାଇଦେଲେ। ଦଶ / ପନ୍ଦର ଦିନ ଭିତରେ ମୋ ପାଖକୁ ଅଜା ଓଡ଼ିଆରେ ସେ ଚିଠିର ଉତ୍ତର ପଠାଇ ଲେଖିଲେ ''କଲ୍ୟାଣୀୟା ମାମାଲି, ତୋର ଓଡ଼ିଆରେ ହାତଲେଖା ଚିଠି ପାଇ ମୁଁ ଅତ୍ୟନ୍ତ ଆନନ୍ଦିତ.... ଆହୁରି କେତେ କ'ଣ।'' ଅଜାଙ୍କଠାରୁ ତାଙ୍କ ହାତଲେଖା ଚିଠି ପାଇ ଆଠ / ଦଶ ଦିନ ପର୍ଯ୍ୟନ୍ତ ମୁଁ ଆମ ଘରକୁ ଯିଏ ଆସିଲେ ତାଙ୍କଠୁ ଆରମ୍ଭ କରି ଆମ ସ୍କୁଲର ଶିକ୍ଷକ ଓ ସାଙ୍ଗସାଥୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଦେଖାଇ ଏତେ ଖୁସି

ହୋଇଗଲି ଯେ ତାହାକୁ କଥାରେ କହିପାରୁନାହିଁ । ତାହା ଥିଲା ମୋ ଜୀବନରେ ମୋ ପାଖକୁ ଆସିଥିବା ପ୍ରଥମ ଚିଠି । ପିଲାଦିନେ ମୋ ବାପା ମାଆଙ୍କ ଠାରୁ ଶୁଣିଥିଲି ସେ Lok Sabha Speaker ଥିଲେ । ସେତେବେଳେ ତାହାର କିଛି ଅର୍ଥ ମୁଁ ବୁଝିନଥିଲି। ଅଷ୍ଟମ ଶ୍ରେଣୀରେ History Civics ପଢ଼ିଲାବେଳେ ଜାଣିଲି ସେ ଭାରତୀୟ ପାର୍ଲିଆମେଣ୍ଟର ନିମ୍ନ ସଦନର ବାଚସ୍ପତି ଥିଲେ । ମୋ ଜାଣିବାରେ ରାଷ୍ଟ୍ରପତିଙ୍କ ପରେ ରାଜ୍ୟସଭାରେ ଉପରାଷ୍ଟ୍ରପତିଙ୍କ ସହିତ ଲୋକସଭାରେ ବାଚସ୍ପତିଙ୍କ ଆସନ ସମାନ। ମୋ ଅଜା ବାଚସ୍ପତି ହେବାରେ ମୁଁ ଖୁବ୍ ଆନନ୍ଦିତ ଓ ଗର୍ବିତ । ଅଜାଙ୍କୁ ମୁଁ ସବୁବେଳେ ଓଡ଼ିଆରେ ଚିଠି ଦିଏ। ସେ ବି ମୋତେ ଓଡ଼ିଆରେ ଚିଠି ଲେଖନ୍ତି । ତାଙ୍କ ଘରକୁ ଯିଏ ଆସନ୍ତି ମୁଁ ତାଙ୍କୁ ଓଡ଼ିଆରେ ଲେଖିଥିବା ଚିଠିକୁ ସେମାନଙ୍କୁ ଦେଖାନ୍ତି ଆଉ ଖୁସି ହୁଅନ୍ତି । ମୁଁ ଇଂରାଜୀ ମାଧ୍ୟମ ସ୍କୁଲରେ ପଢ଼ିଲେ ବି ତାଙ୍କରି ପ୍ରେରଣାରେ ଓଡ଼ିଆ ଖବରକାଗଜ ପଢ଼ିବା ସହିତ ବହୁ ଓଡ଼ିଆ ବହି ପଢ଼େ। ତାଙ୍କ ପ୍ରେରଣା ହେତୁ ମାଟ୍ରିକ୍ ପରୀକ୍ଷାରେ ଓଡ଼ିଆରେ ଅଧିକ ନମ୍ବର ମୋର ଥିଲା।

ଏ ଭିତରେ ଅଜାଙ୍କ ସଂପର୍କରେ ଗୋଟିଏ ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ ପାଉଥିବା କଥା ଶୁଣିଲି । ଭାବିଲି ଅଜାଙ୍କୁ ମୁଁ ଯେମିତି ଜାଣିଛି, ଯେତିକି ବୁଝିଛି ସେମିତି ଗୋଟିଏ ଲେଖା ଲେଖିବି । ଇଂରାଜୀରେ ଲେଖିବି ଭାବି ନିମ୍ନ ଲେଖାଟି ଲେଖିଥିଲି ।

"RABI RAY is my grandpa.I have always looked at him as a man of great importance. As a kid I remember going to his house and the first thing I did is look for him.I remember him as a person sitting on the sofa immersed in loads of newspaper .With his specs on he would be scanning every page.He is a voracious reader and also encouraged being one at the age of internet.Vacation came to an end,school reopened,I delved into my books,he got busy with his work but one thing that helped us to be in touch is "LETTERS" which was the best part.Had it not been my mom and dad I would have never wrote letters to him that too in odia.I am thankful to them for getting me closer to my grandpa.I still remember that day when a letter came addressed to me .I was in school then may be in grade four or five.I was all jumping around showing off infront of everyone like, "See someone has written a letter to me."It was my first official letter and obviously that was a great deed for me.Since then I used to write letters to him every now and then and wait

for his to arrive.Now when I think about it,it feels good.Memories like those need to be treasured.Life went on.I started with my high school.I had history civics as one of my papers.We used to study about Parliament,Lok Sabha,Rajya Sabha,MP's,MLA's.I learnt later that my grandpa was the ex union health minister and also our former Lok Sabha speaker.I was fascinated rather I would say I was pleased by that like,"Wow,my grandpa was the speaker ,I am actually reading his name in my books." My bonding with him is unique and I feel blessed to have one.Although I played a small part in his life, I still take pride in that.I love you grandpa."

ଏହି ଲେଖା ଲେଖିବା ଭିତରେ ପୁଣି ଭାବିଲି ମୁଁ ଗୋଟେ ଭୁଲ କରିବାକୁ ଯାଉଛି । ଓଡ଼ିଆ ଭାଷାକୁ ଏତେ ଭଲ ପାଉଥିବା ଓ ମୋତେ ଓଡ଼ିଆରେ ଲେଖିବା ପାଇଁ ବାରମ୍ବାର ପ୍ରେରଣା ଦେଉଥିବା ଅଜାଙ୍କ ସଂପର୍କରେ ଇଂରାଜୀରେ ଲେଖିଲେ ତାଙ୍କପ୍ରତି ବୋଧହୁଏ ଘୋର ଅପମାନ ହେବ । ଆଜିକାଲି ବାର୍ଦ୍ଧକ୍ୟ ହେତୁ ଅଜାଙ୍କ ଦେହ ଭଲ ରହୁନାହିଁ । ମଝିରେ ମଝିରେ ତାଙ୍କ ଘରକୁ ଗଲେ ସେ ମୋତେ କେତେ କଥା ପଚାରନ୍ତି, ତାଙ୍କ ପିଲାଦିନର ଗାଁ କଥା ମାଆ ଆଗରେ କହନ୍ତି । ତାଙ୍କ ପିଲାଦିନର କଥା ଶୁଣିବାକୁ ଆମକୁ ମଜା ଲାଗେ । ମୋ ଭାଇ ମିକୁର ପିଲାବେଳେ ଦେହ ଖୁବ୍ ଖରାପ ଥିଲା । ଅଜା ତା'ର ସ୍ୱାସ୍ଥ୍ୟବସ୍ଥା ନେଇ ଖୁବ୍ ବ୍ୟସ୍ତ ହେଉଥିଲେ । ସେ ଖୁଡ଼ୀଙ୍କୁ ବାରମ୍ବାର ମିକୁ କଥା ବୁଝିବାକୁ ଓ ଡ଼ାକ୍ତରଙ୍କ ସହିତ ପରାମର୍ଶ କରିବାକୁ କହୁଥିଲେ । ତାଙ୍କରି ପରାମର୍ଶରେ ବାପା ମାଆ ବିଭିନ୍ନ ଡାକ୍ତରଙ୍କ ପରାମର୍ଶ ବି ନେଉଥିଲେ । ଗତଥର ତାଙ୍କ ଘରକୁ ଯିବା ଭିତରେ ସେ ମୋତେ ଚିହ୍ନିପାରିଲେ ନାହିଁ । ନହେଲେ ସେ ମୋ ସହିତ କେତେ କଥା ଗପିଥାନ୍ତେ ଆଉ ମୋର ପାଠପଢ଼ା ସହିତ ଲକ୍ଷ୍ୟ କ'ଣ ପଚାରିଥାଆନ୍ତେ । ଖୁଡ଼ୀଙ୍କୁ କହିଥାନ୍ତେ ମୋତେ ଚକଲେଟ୍‌ଠାରୁ ଆରମ୍ଭ କରି ଆଉ କ'ଣ କ'ଣ ଦେବାପାଇଁ । ତାଙ୍କ ସ୍ୱାସ୍ଥ୍ୟାବସ୍ଥା ଦେଖି ମୋ ମନ ବହୁତ ଖରାପ ହୋଇଗଲା । ତାଙ୍କ ସଂପର୍କରେ ମୋର ଇଂରାଜୀ ଲେଖା ଦେଖି ହୁଏତ ସେ ମୋ ଉପରେ ବିରକ୍ତ ହୋଇଥାନ୍ତେ । ସେଥିପାଇଁ ମୁଁ ତାଙ୍କୁ ଯେମିତି ଜାଣିଛି ଓଡ଼ିଆରେ ମୋ ଲେଖା ଆରମ୍ଭ କରିଛି । ସେ ଆଉ କାହା ପାଇଁ କ'ଣ ମୁଁ ଜାଣିନି । ସେ ହେଉଛନ୍ତି ମୋତେ ଭଲ ପାଉଥିବା ଓ ମୋର ସବୁଠୁ ବେଶୀ ପ୍ରିୟ ମଣିଷ ମୋର ଅଜା ଶ୍ରୀ ରବି ରାୟ । ଭଗବାନ କରନ୍ତୁ ସେ ଭଲ ଥାଆନ୍ତୁ, ଆମକୁ ଆଶୀର୍ବାଦ କରୁଥାନ୍ତୁ । ଜଗନ୍ନାଥଙ୍କ ପାଖରେ ଅଜାଙ୍କ ପାଇଁ ମୋର ଏତିକି ପ୍ରାର୍ଥନା ।

▮▮▮

# ରବିଭାଇ

**ଡାକ୍ତର ପ୍ରମିଳା ସ୍ୱାଇଁ**

ରବିଭାଇଙ୍କ ସଙ୍ଗରେ ମୋର ସମ୍ପର୍କ କ'ଣ ? ତା' ସମସ୍ତଙ୍କ ପାଇଁ ଜାଣିବା ମହାକଷ୍ଟକର। ସେଭଳି ଲୋକ ଜୀବନରେ ମିଳିବା ଦୁର୍ଲ୍ଲଭ। ତାଙ୍କର ଯେଉଁଆଡ଼େ ଦେଖିଲେ ସେପଟେ ଲମ୍ବାଧାଡ଼ି। ମୁଁ ଏଥିରେ ତାଙ୍କ ପାଇଁ ଯାହା ଲେଖିଲେ ମଧ ତାହା ଏତେ ଛୋଟ ହେବ ଯେ ତା' କହିହେବନି। ସମସ୍ତେ ଜାଣିବାରେ ସେ ମୋର ଭିଣୋଇ। ଏହି ସମ୍ପର୍କକୁ ସେ କାହାରି ପାଖରେ ପ୍ରକାଶ କରିନାହାନ୍ତି କିମ୍ବା ମୁଁ କାହା ଆଗରେ ପ୍ରକାଶ କରିନି। କେବଳ ସେ ମୋର ଭାଇ।

ତାଙ୍କ ସହିତ ବିତାଇଥିବା ବହୁ ମୁହୂର୍ତ୍ତ ଏବଂ ଅନେକ ଘଟଣା ମୋ ଜୀବନକୁ ବହୁଭାବରେ ପ୍ରଭାବିତ କରିଛି। ମୁଁ ଏକାଦଶ ଶ୍ରେଣୀରେ ପଢୁଥିବା ବେଳେ ମୋତେ ସେ ଇଂରାଜୀ ପଢ଼ାଉଥିଲେ। ଯାହାଦ୍ୱାରା କି ମୋର ଇଂରାଜୀ ଜ୍ଞାନର ଅଭାବ ବହୁଭାବରେ ଦୂର ହୋଇଥିଲା। ସେତେବେଳେ ସେ ମୋ ଭିଣୋଇ ନଥିଲେ କେବଳ ରବିଭାଇ। ପଛରେ, ଅର୍ଥାତ୍ ଭିଣୋଇ ହେବାପରେ ମୋ ମନରେ କୌଣସି ପ୍ରକାର ଦୁଃଖ ଦେଖିଲେ ସେ ବ୍ୟସ୍ତ ହୋଇଯାଆନ୍ତି। ଯଦି କିଛି ଉପାୟ କରି ମୋ ଦୁଃଖକୁ ଦୂରେଇ ଦେଇପାରିବେ ସେ ପାଇଁ ବହୁତ ଚେଷ୍ଟା କରନ୍ତି। ମୋର ସବୁପ୍ରକାର ଉନ୍ନତି ପାଇଁ ସେ ପ୍ରତ୍ୟେକ ସମୟରେ ଚେଷ୍ଟା କରନ୍ତି।

ମୁଁ ଆଜି ଭୁବନେଶ୍ୱରର ବାସିନ୍ଦା, ତାହା କେବଳ ତାଙ୍କରିପାଇଁ ହିଁ ସମ୍ଭବ ହୋଇଛି। ରବିଭାଇ ଜଣେ ଅମାୟିକ, ସ୍ନେହୀ ଏବଂ କଷ୍ଟ ସହିଷ୍ଣୁ ବ୍ୟକ୍ତି। ସେ କାହାରି ମନରେ କଷ୍ଟ ଦେବାକୁ କେବେ ଚାହିଁ ନାହାନ୍ତି। ବାହାରୁ କେହି ଜାଣିପାରିବେନି ସେ କାହାକୁ କିଛି ସାହାଯ୍ୟ କରିଛନ୍ତି। କିନ୍ତୁ ନିଜର ପରବାରବର୍ଗଙ୍କ ସହିତ ବାହାର ଲୋକମାନଙ୍କୁ ମଧ ଅଣଦେଖା ଭାବରେ ସେ ବହୁତ ସାହାଯ୍ୟ କରିଛନ୍ତି। ତାଙ୍କର କଥା ସବୁ ସ୍ଥାନରେ ମୂଲ୍ୟବାନ୍। ତେଣୁ ତାଙ୍କ କଥାକୁ କେହି ପ୍ରାୟଃ ତଳେ ପକାଇ ପାରନ୍ତିନି। ଏଥିପାଇଁ ତାଙ୍କ ମନରେ ଗର୍ବ ନଥାଏ। ଏ ବିଷୟରେ ମୁଁ ଗୋଟିଏ, ଦୁଇଟି ଉଦାହରଣ ଦେବି। ମୋ ଝିଅ ପୋଡ଼ିଯାଇଥିଲା। ଯେଉଁଥିପାଇଁ ଆମ ପକ୍ଷେ ବଦଳି ହୋଇ କୁଆଡ଼େ

ଯିବା ଆଦୌ ସମ୍ଭବ ନଥିଲା । ସେତେବେଳେ ଆମର ଏହି ଉତ୍କଟ ସମସ୍ୟାର ସରଳ ଏବଂ ସୁନ୍ଦର ସମାଧାନ ତାଙ୍କଦ୍ୱାରା ହିଁ ସମ୍ଭବ ହୋଇପାରିଥିଲା । ଦରକାର ଜରୁରୀ କାମରେ ତାଙ୍କର ହାତ ସବୁ ଜାଗାରେ ଥାଏ । କିଏ ମାନୁ କିମ୍ବା ନମାନୁ ତାଙ୍କର ସାହାଯ୍ୟର ତାଲିକା କରିବା ସମ୍ଭବ ନୁହେଁ ।

ରାଜନୀତି କ୍ଷେତ୍ରରେ ତାଙ୍କର ଦାନ ଭାରତପାଇଁ କେତେ ଯେ ଗୁରୁତ୍ୱପୂର୍ଣ୍ଣ ଥିଲା ତାକୁ ଭାରତବାସୀ ଅଚ୍ଛେବହୁତେ ଅନୁଭବ କରୁଥିବେ । ସେ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାବେଳେ ଓ ବାଚସ୍ପତି ଥିବାବେଳେ ଆମ ଦେଶର ଯେଉଁ ସଂସ୍କାରମାନ କରିଥିଲେ ତାହା ଆମକୁ ଆଜି ପର୍ଯ୍ୟନ୍ତ ମନେପକାଉଛି । ସବୁ କ୍ଷେତ୍ରରେ ସର୍ବୋପରି ସେ ଜଣେ ନିର୍ମଳ ବ୍ୟକ୍ତିତ୍ୱ ନେଇ ସମସ୍ତଙ୍କ ମନରେ ସ୍ଥାନ ରଖିଛନ୍ତି । ସେ ବର୍ତ୍ତମାନ ସମସ୍ତଙ୍କ ପାଖରେ ନମସ୍ୟ ।

ପରିବାର ବିଷୟରେ ମୁଁ ବେଶି ନ କହିଲେ ବି ତାଙ୍କର ମା', ଭାଇଭଉଣୀ, ଝିଆରୀପୁତୁରା ସମସ୍ତଙ୍କୁ ସ୍ନେହ ଶ୍ରଦ୍ଧା କରି ସମସ୍ତଙ୍କ ମନରେ ଉଚ୍ଚସ୍ଥାନ ବଜାୟ ରଖିଛନ୍ତି ।

ମୋଟ ଉପରେ ରବିଭାଇଙ୍କ ପରି ନିର୍ମଳ ଚରିତ୍ରର ଲୋକ ଦେଖିବା ଆଜିକାଲି ଦୁନିଆରେ ଦୁର୍ଲ୍ଲଭ । ଆଜି ସେ ବିଭିନ୍ନ ରୋଗରେ ଘାଣ୍ଟି ହେଉଛନ୍ତି । ଭଗବାନଙ୍କ ନିକଟରେ ପ୍ରାର୍ଥନା ତାଙ୍କୁ ସ୍ୱାସ୍ଥ୍ୟବାନ୍ କରି ତାଙ୍କୁ ଶାନ୍ତିରେ ରଖନ୍ତୁ । ମୁଁ ମୋର କ୍ଷୁଦ୍ର ଅନୁଭୂତି ବିଷୟରେ କ'ଣ ବା ଲେଖିବି । ତାଙ୍କ ପାଇଁ ତ ବହି ଲେଖା ସରିଛି । ମୋର ନିଜର କ୍ଷୁଦ୍ର ଅନୁଭୂତିରେ ସ୍ୱଳ୍ପକିଛି ଲେଖି ମନକୁ ଶାନ୍ତି ଦେଉଛି । ତାଙ୍କ ବିଷୟରେ ଯାହା କହିଲେ କମ୍ ହେବ ।

■■■

# ରବି ରାୟଙ୍କୁ ମୁଁ ଯେପରି ଜାଣେ ...

**ଡାଃ. ପ୍ରସନ୍ନ କୁମାର ରାଉତରାୟ ମହାପାତ୍ର**

ରବି ରାୟ ଜଣେ ମହାତ୍ମା। ମହାତ୍ମା କହିବାର ତାତ୍ପର୍ଯ୍ୟ ତାଙ୍କ ପରି ସାଧୁ, ନୀତିବାନ୍ ରାଜନୀତିଜ୍ଞ ବିରଳ। ଆଜିକାର ରାଜନୀତିଜ୍ଞମାନେ ନୀତିହୀନ ସୁବିଧାବାଦୀ, ଛତାପାର୍ଟି। ସେ କିନ୍ତୁ ସେପରି ନୁହଁନ୍ତି। ସେ ଜାତି, ଧର୍ମ ଓ ସମ୍ପର୍କକୁ ଦୃଷ୍ଟି ନଦେଇ ନୀତି ଅନୁସାରେ ଆବଶ୍ୟକତା ଅନୁଯାୟୀ କାହାକୁ ହେଲେ ସାହାର୍ଯ୍ୟ କରୁଥିଲେ ତ କାହାପାଇଁ ଲଢୁଥିଲେ। ସେ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ଲୋକସଭାର ବାଚସ୍ପତି ଥିଲେ। ପ୍ରଥମ ଏବଂ ବୋଧେ ଶେଷ ଓଡ଼ିଆ ବାଚସ୍ପତି। ତାଙ୍କର ନିଷ୍ପତ୍ତି ନିରପେକ୍ଷ ଥିଲା। ସେ ଯାହାକୁ ଦ୍ୱିତୀୟ ଥର ପାଇଁ ଦେଖୁଥିଲେ ତାଙ୍କୁ ଏବଂ ତା'ର ଗାଁ, ଥାନା, ଜିଲ୍ଲା ଆଦି ମନେପକାଇ କହୁଥିଲେ। ତାଙ୍କ ମା' ବାପାଙ୍କ ସଂବର୍କରେ ପଚାରୁଥିଲେ। ସେ ମଧ କେନ୍ଦ୍ରୀୟ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ। ସେ ସମୟରେ ବହୁତ ସଂସ୍କାର ସ୍ୱାସ୍ଥ୍ୟ ବିଭାଗରେ କରିଥିଲେ। କୌଣସି ମହାପୁରୁଷଙ୍କ ପଶ୍ଚାତରେ ତାଙ୍କ ସହଧର୍ମିଣୀଙ୍କର ସାହାଯ୍ୟ ସହଯୋଗ ନ ରହିଲେ ସେ ଏତେବଡ଼ ହୋଇପାରିବେ ନାହିଁ। ରବି ରାୟଙ୍କ ପତ୍ନୀ ଡାକ୍ତର ସରସ୍ୱତୀ ସ୍ୱାଇଁଙ୍କର ସେଥିପାଇଁ ବହୁତ ଅବଦାନ ଥିଲା। ମୁଁ ତାଙ୍କର ବଡ଼ ଭଉଣୀ ସୁଲକ୍ଷଣା ଦେବୀ (ଟିକିଅପା)ଙ୍କର ବଡ଼ପୁଅ। ମୁଁ ଓଡ଼ିଶା ସ୍ୱାସ୍ଥ୍ୟ ବିଭାଗରୁ ସେବା ନିବୃତ ହୋଇଥିବା ଜଣେ ଡାକ୍ତର। ମାଇଁ (ସରସ୍ୱତୀ ସ୍ୱାଇଁ) ମୋତେ କହିଥିଲେ, "ତୁମେ କେଉଁଠି ହେଲେ କହିବ ନାହିଁ, ତୁମେ ରବି ରାୟଙ୍କର ଭଣଜା"। ଏହା ମୁଁ ଅକ୍ଷରେ ଅକ୍ଷରେ ପାଳିଛି।

**ମୋ ସହିତ ରବିରାୟଙ୍କ ସମ୍ପର୍କର କେତୋଟି ସିଂହାବଲୋକନ :**

୧୯୫୬ ମସିହାରେ ମୁଁ ରବି ରାୟଙ୍କ ଗାଁ ସ୍କୁଲ ବନମାଳୀପୁର ହାଇସ୍କୁଲରୁ ମାଟ୍ରିକ୍ ପାସ୍ କରିଥାଏ। ତାଙ୍କ ବଡ଼ଭାଇ ମର୍ଦ୍ଦରାଜ ରାୟ ପୀତାମ୍ବର ମହାପାତ୍ର ସେ ସ୍କୁଲର ହେଡ୍‌ମାଷ୍ଟର ଥାଆନ୍ତି। ରବି ରାୟଙ୍କ ଦାଦା ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ରାୟ ସ୍କୁଲର ସମ୍ପାଦକ ଥାଆନ୍ତି। ମୁଁ ସେ ସ୍କୁଲରେ ମାଟ୍ରିକ ପଢୁଥିବା ସମୟରେ ଦିବାକର ଦାଶ ବୋଲି ଜଣେ ସଂସ୍କୃତ ପଣ୍ଡିତ ଥିଲେ। ସେ ଲେଖିଥିଲେ -

"ନାମ ମର୍ଦ୍ଦରାଜ ରାୟ ପୀତାମ୍ବର, ମଧୁ କର ଦୁର୍ଗେ କରନ୍ତି ବିହାର।"

ରବି ରାୟଙ୍କ ଗାଁ ଭଅଁରାଗଡ଼ । ରବି ରାୟ ତାଙ୍କ ବାପା ଘନଶ୍ୟାମ ରାୟ ପୀତାମ୍ବର ମହାପାତ୍ରଙ୍କର ଶେଷ ସନ୍ତାନ । ତାଙ୍କ ମା' ରବି ସୁନାମଣୀ ଦେବୀ ବହୁତ ସ୍ନେହୀ ଥିଲେ । ମୋ ମା' ସୁଲକ୍ଷଣା ଦେବୀ ରବି ରାୟଙ୍କର ସବୁଠାରୁ ବଡ଼ ଭଉଣୀ ଥିଲେ । ମୋ ମା'ଙ୍କର ବାହାଘର ସମୟରେ ରବି ରାୟଙ୍କୁ ଦେଢ଼ବର୍ଷ ହୋଇଥିଲା । ବ୍ରାହ୍ମଣ ଭୋଜନ ସମୟରେ ସେ ଲଙ୍ଗଳା ହୋଇ ବ୍ରାହ୍ମଣମାନଙ୍କ ପତ୍ରରେ ପରିସ୍ରା କରିଦେଇଥିଲେ ।

୧୯୫୬ ମସିହାରେ ମୋ ବାପା କହିବାରୁ ମୋ ନାମ ଲେଖାଇବା ପାଇଁ ମୋ ସହିତ ରେଭେନ୍ସା କଲେଜକୁ ମାମୁ ଯାଇଥିଲେ । ସେ ମୋତେ ଦେଖି ଟିକେ ବିରକ୍ତ ହେବାପରି ଜଣାପଡୁଥା'ନ୍ତି । ମୁଁ ଜାଣିପାରୁ ନଥାଏ । ପରେ ତା'ର କାରଣ ଜାଣିଲି । ମୁଁ ଫୁଲ୍ ପ୍ୟାଣ୍ଟ ଉପରେ ପଞ୍ଜାବି ପିନ୍ଧି ରେଭେନ୍ସା କଲେଜକୁ ଯାଇଥିଲି । ସେତେବେଳେ ତାହା ଚଳୁ ନଥିଲା । ପରେ ଅବଶ୍ୟ ଗୁରୁ ପଞ୍ଜାବୀ ଭାବରେ ପ୍ରଚଳିତ ହେଲା । ସେହି ସମୟରେ ମୋ ବାପା ଦିବ୍ୟସିଂହ ମହାରଥୀ ମହାପାତ୍ର ମୋ ପାଇଁ ପ୍ୟାଣ୍ଟ କନାରେ ଫୁଲ୍ ପ୍ୟାଣ୍ଟ ଓ ହାୱାଇ ଇନ୍ କରିଦେଇଥିଲେ । ସାଙ୍ଗମାନେ ଚିଡ଼ାଇବାରୁ ସେହି ହାୱାଇ ଇନ୍‌କୁ ମୁଁ ଆପ୍ରୋନ୍ ଭାବରେ ପିନ୍ଧି ଛିଡ଼ାଇଲି । ପରେ ଅବଶ୍ୟ ତାହା ସଫାରି ଭାବରେ ପ୍ରଚଳିତ ହେଲା । ୧୯୭୮-୭୯ରେ ମୋର ଜୟପୁର ଉପଖଣ୍ଡ ଡାକ୍ତରଖାନାରେ ପୋଷ୍ଟିଙ୍ଗ ହୋଇଥାଏ । ବିଜୁ ପଟ୍ଟନାୟକ ଓ ରବି ରାୟ ଦୁହେଁ ବିରୋଧୀ ଦଳରେ ଥିଲେ । ମୋର ଜୟପୁର ପୋଷ୍ଟିଙ୍ଗ ସମୟରେ ସେମାନେ ସେଠାକୁ ଗସ୍ତରେ ଯାଇ ଡାକବଙ୍ଗଳାରେ ଅବସ୍ଥାନ କରୁଥିଲେ । ମୁଁ ମାମୁଁଙ୍କ ମଧ୍ୟାହ୍ନ ଭୋଜନ ପାଇଁ ଡାକିବାକୁ ଚିନ୍ତାକଲି । ସେହି ସମୟରେ ନୂଆକରି ଗୋଟେ ଡାଇନିଂ ଟେବୁଲ୍ ମୁଁ ଆଣିଥାଏ । ସେଥିରେ ବସି ମାମୁଁ ଏବଂ ଆଉ ଜଣେ ବାବୁ ଖାଇକରି ଗଲେ । ମୋ ସ୍ତ୍ରୀ କହିଲେ ଦେଖ ମାମୁଁ ଡାଇନିଂ ଟେବୁଲ୍‌ରେ କେତେ ସୁବିଧାରେ ବସି ଖାଇଲେ । ମୁଁ କହିଲି ମୋ ମାମୁଁ ତଳେ ଖାଇବାକୁ ଦେଇଥିଲେ ମଧ୍ୟ କୌଣସି ଅସୁବିଧା ବୋଧ କରିନଥାନ୍ତେ ।

୧୯୮୩ ମସିହାରେ ମୋର ଜଗତ୍‌ସିଂହପୁରରେ ପୋଷ୍ଟିଂ ହେଲା । ୧୯୮୬ ମସିହାରେ ମୋର ସମ୍ବଲପୁରର ଫାସିମାଳ ସ୍ୱାସ୍ଥ୍ୟକେନ୍ଦ୍ରକୁ ବଦଳି ହେଲା । ସେ ସମୟରେ ମୋର ଏକମାତ୍ର ପୁତ୍ରର ପାଣିରେ ବୁଡ଼ି ମୃତ୍ୟୁ ହୋଇଗଲା । ସେ କାରଣରୁ ମୋର ସ୍ତ୍ରୀ ପାଗଳ ପ୍ରାୟ ହୋଇଗଲେ । ମୁଁ ଛୁଟିରେ ରହି ଜଗତସିଂହପୁର ପୋଷ୍ଟିଂ ପାଇଁ ଚେଷ୍ଟିତ ହେଲି । ନିରଞ୍ଜନ ପଟ୍ଟନାୟକ ସ୍ୱାସ୍ଥ୍ୟମନ୍ତ୍ରୀ ଥାଆନ୍ତି । ମାମୁଁ ବିରୋଧୀ ଦଳରେ ଥିଲେ । ସେ ନିରଞ୍ଜନ ପଟ୍ଟନାୟକଙ୍କୁ ମୋର ଜଗତସିଂହପୁର ପୋଷ୍ଟିଂ ପାଇଁ କହିଥିଲେ । ପରେ ଏକ ନୂଆ ପୋଷ୍ଟରେ ଜଗତସିଂହପୁରରେ କାର୍ଯ୍ୟରେ ଯୋଗ ଦେଲି ।

ଏବେ ବାର୍ଦ୍ଧକ୍ୟଜନିତ ରୋଗରେ ରବି ରାୟ ପୀଡ଼ିତ । କାହାକୁ ଚିହ୍ନି ପାରୁନାହାନ୍ତି । ଏଭଳି ସନ୍ଥ ସଜ୍ଜନଙ୍କର ଭଗବାନ ନିଶ୍ଚେ ମଙ୍ଗଳ କରିବେ । ▮▮▮

# ଓଡ଼ିଶାର ଗର୍ବ ଓ ଗୌରବ – ରବି ରାୟ

**ଡାକ୍ତର ବାସୁଦେବ ପାତ୍ର**

ରବି ରାୟ ଓଡ଼ିଶାର ଗର୍ବ ଓ ଗୌରବ। ଜଣେ ସ୍ନେହୀ, ମାନବବାଦୀ, ହୃଦୟଗ୍ରାହୀ ଆଦର୍ଶବାଦୀ ତଥା ସମାଜବାଦୀ ନେତା ହିସାବରେ ଓଡ଼ିଶା ତଥା ଭାରତବର୍ଷରେ ସୁପରିଚିତ।

ଡଃ ରାମମନୋହର ଲୋହିଆଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଛାତ୍ର ଜୀବନରୁ ସମାଜବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ।

ସ୍ୱାଧୀନତା ପ୍ରାପ୍ତିର କିଛି ବର୍ଷ ପରେ ଷାଠିଏ ଦଶକ ବେଳକୁ ଭାରତବର୍ଷ ତଥା ଓଡ଼ିଶା ରାଜନୈତିକ, ସାମାଜିକ ଓ ଆର୍ଥିକ କ୍ଷେତ୍ରରେ ଭୟଙ୍କର ଭାବରେ ସଙ୍କଟ ସୃଷ୍ଟି ହୋଇଥିଲା। ଡଃ ଲୋହିଆ କଂଗ୍ରେସ ହଟାଅ, ଦେଶ ବଞ୍ଚାଅ ଆନ୍ଦୋଳନ ଆରମ୍ଭ କରିଥିଲେ। ଓଡ଼ିଶାର ରବି ରାୟ ସେହି ଆନ୍ଦୋଳନର ଅନ୍ୟତମ ଅଗ୍ରଗାମୀ ନେତା ଥିଲେ। ସବୁ ଅଣକଂଗ୍ରେସ ଦଳମାନଙ୍କର ମିଳିତ ପ୍ରାର୍ଥୀ ଭାବର ୧୯୬୭ ସାଧାରଣ ନିର୍ବାଚନରେ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀ ଥିଲେ। କଂଗ୍ରେସ ବିରୁଦ୍ଧରେ ଏହି ମହାସଂଗ୍ରାମରେ ରବିବାବୁଙ୍କ ନେତୃତ୍ୱରେ ଲକ୍ଷଲକ୍ଷ ଯୁବକ ଏହି ଆନ୍ଦେଳାନରେ ଯୋଗ ଦେଇଥିଲେ। ପ୍ରଥମଥର ପାଇଁ ରବିବାବୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ। ଏହି ନିର୍ବାଚନରେ ରବିବାବୁଙ୍କ ସମ୍ପର୍କରେ ଆସିବାର ସୁଯୋଗ ମିଳିଥିଲା। ସମୟକ୍ରମେ ତାଙ୍କ ସହିତ ରାଜନୀତିଠାରୁ ପାରିବାରିକ ସମ୍ପର୍କ ଅଧିକ ହୋଇଥିଲା। ତାଙ୍କ ସ୍ନେହ, ଶ୍ରଦ୍ଧା ଓ ସହୃଦୟତା ଆମ୍ଭମାନଙ୍କୁ ତାଙ୍କ ନିକଟରେ ବାନ୍ଧି ରଖିଥିଲେ; ବଡ଼ ନେତା ହିସାବରେ ନୁହେଁ ବରଂ ଜଣେ ଭଲ ମଣିଷ ହିସାବରେ ଆମ୍ଭମାନଙ୍କର ଅତିପ୍ରିୟ ବ୍ୟକ୍ତିତ୍ୱ ହୋଇ ଚିରକାଳ ପ୍ରେରଣା ଦେଉଥିବେ।

ଲୋକସଭାର ବାଚସ୍ପତି ଥିବାବେଳେ ସେ ଦିନେ ଲୋକସଭାର ଆନେକ୍ସକୁ ତାଙ୍କର କେତେକ ସମର୍ଥକଙ୍କୁ ଆଲୋଚନାକୁ ନିମନ୍ତ୍ରଣ କରିଥିଲେ। ଆଲୋଚନା ଶେଷରେ ବାହାରକୁ ଆସି ରାସ୍ତାକୁ ଯାଇଁ କିଛି ସମୟ ଅଟକିଯାଇ ଗୋଟିଏ କଥା କହିଥିଲେ। ସେ କଥାକୁ କେବେ ହେଲେ ଜୀବନକାଳ ମଧ୍ୟରେ ଭୁଲି ହେବନାହିଁ। ଆଜି ଯେ

ରାଜେନ୍ଦ୍ରସନେ, କାଲି ସେ ଫକିର" ସଂସାରରେ କେତେଲୋକ ଅଛନ୍ତି ଯେଉଁମାନେ କ୍ଷମତାର ଶୀର୍ଷରେ ପହଞ୍ଚି ଏ ମହାନ ଉକ୍ତିଟିକୁ ମନେରଖି ଥାଆନ୍ତି। ରବିବାବୁଙ୍କର ମହାନତା ସେ ଉକ୍ତିଟିକୁ ହାଡ଼େ ହାଡ଼େ ଅନୁଭବ କରିଥିଲେ ଓ ମନେ ରଖିଥିଲେ। ଏହି ହେଉଛି ରବିବାବୁଙ୍କର ବିଶେଷତ୍ୱ। କ୍ଷମତାର ଶୀର୍ଷରେ ପହଞ୍ଚି ମଧ୍ୟ ସେଦିନ ଏ କଥା ଭୁଲି ନଥିଲେ। ସେଇଟା ହିଁ ତାଙ୍କର ମହାନତା।

ଆଜି ଯେଉଁମାନେ କ୍ଷମତା ନିଶାରେ ମଦମତ୍ତ ଭ୍ରଷ୍ଟାଚାର ଓ ବ୍ୟଭିଚାରରେ ବୁଡ଼ି ରହିଛନ୍ତି ସେମାନଙ୍କର ଏ ଦିନ ସବୁ ଦିନେ ରହିବ ନାହିଁ। ଆଜି ଦିନରେ ଏ କଥା କହିବାକୁ କେହି ନାହିଁ କି ଶୁଣିବାକୁ କେହି ନାହିଁ। କହିବାକୁ ଅଳ୍ପ କେତେକ ବ୍ୟକ୍ତିବିଶେଷ ଅଛନ୍ତି କିନ୍ତୁ ଶୁଣିବା ବ୍ୟକ୍ତିଙ୍କ ସଂଖ୍ୟା ଅତି ନଗଣ୍ୟ।

ଦଳବଦଳ ରାଜନୀତିକୁ ସମାପ୍ତ କରିବାକୁ ଲୋକସଭାର ବାଚସ୍ପତି ଥିବାବେଳେ ଯେଉଁ ଐତିହାସିକ ରାୟ ଦେଇଥିଲେ ତାହା ଭାରତବର୍ଷ ଲୋକସଭା ଇତିହାସରେ ଅମର ଅକ୍ଷରରେ ଲିପିବଦ୍ଧ ହୋଇ ରହିଥିବ।

ବଜାର ଅର୍ଥନୀତିକୁ ରବିବାବୁ ବିରୋଧ କରୁଥିଲେ। ସେ ଆଜକୁ ୨୫ ବର୍ଷ ତଳେ ଭାରତର ଅର୍ଥନୀତି ଉପରେ ଯେଉଁ ମନ୍ତବ୍ୟ ଦେଇଥିଲେ ତାହାର ପରିଣାମ ଅତି ସୁସ୍ପଷ୍ଟ। ବେକାରୀ, ଦାରିଦ୍ର୍ୟ, ଶିଶୁ ଓ ମାତୃ ମୃତ୍ୟୁହାର ବୃଦ୍ଧି, ବିଶୃଙ୍ଖଳିତ ସାମାଜିକ ସ୍ଥିତି ବଜାର ଅର୍ଥନୀତିର ପରିଣାମ।

ଶିକ୍ଷା ଉପରେ ତାଙ୍କର ବିଚାର ଓ ଚିନ୍ତାଧାରା ପ୍ରଣିଧାନଯୋଗ୍ୟ। ଏକପ୍ରକାର ଶିକ୍ଷା ସାରାଦେଶରେ ପ୍ରଚଳନ ହୋଇ ନପାରିଲେ ଧନୀ ଦରିଦ୍ରଙ୍କ ମଧ୍ୟରେ ବ୍ୟବଧାନ ବଢ଼ିବ ସିନା କମିବ ନାହିଁ। ଏକପ୍ରକାର ଶିକ୍ଷା ପଦ୍ଧତି ଗ୍ରହଣ କରାନଗଲେ ମାତୃଭାଷା ଧିରେ ଧିରେ ଆହୁରି ତଳକୁ ତଳକୁ ଚାଲିଯିବ। ମାତୃଭାଷା ଦୁର୍ବଳ ହୋଇ ରାଜ୍ୟର ପ୍ରଗତି ଅସମ୍ଭବ ହୋଇପଡ଼ିବ।

ରବିବାବୁଙ୍କ ଅସୁସ୍ଥତା ଖବର ଜାଣିବାପରେ ମନ ଦୁଃଖରେ ଆନ୍ଦୋଳିତ ହୁଏ। ଈଶ୍ୱରଙ୍କ ନିକଟରେ ତାଙ୍କର ଆଶୁ ଆରୋଗ୍ୟ ଓ ଦୀର୍ଘଜୀବନ କାମନା କରୁଛୁ।

■■■

# ରବିଭାଇ ଏକ ବିରଳ ବ୍ୟକ୍ତିତ୍ୱ

ଡ. ବିଜୟ କୁମାର ସ୍ୱାଇଁ

ଅପାର ବିଭାଘର ତାରିଖ ଓ ମସିହା ମୋର ମନେନାହିଁ। ହାଇସ୍କୁଲରେ ପଢୁଥାଏ। ଅଧିକ ଗାଡ଼ି ନଥିବାରୁ ପୁନନନାଙ୍କ ଲ୍ୟାଣ୍ଡରୋଭର ଗାଡ଼ିରେ ମୋତେ ବରଧରା ହୋଇ ଯିବାକୁ ହେଲା। ସାଥିରେ କଇଅପା, ପୁନନନା ଓ ଦୁଇ ଛୋଟ ପୁଅ ନୁନୁ ଓ ମୁନୁ (ବୋଧହୁଏ ନୁନୁର ବୟସ ୪/୫ ଓ ମୁନୁର ବୟସ ୨/୩)। ଫୁଲନଖରା ଛକ ଅତିକ୍ରମ କରି ନିଆଳି ରାସ୍ତାରେ ଗାଡ଼ି ଚାଲିଲା, କଟକର ଭାରତୀ ଭବନଠାରୁ। ଭଅଁରା ପାଖରେ ଥିବା ପ୍ରାଚୀ ନଦୀରେ ପୋଲ ନଥାଏ ଓ ନଦୀ ସୁଖିଲା ଥାଏ। ଖରାଦିନ ବାଲିରେ ଗାଡ଼ି ଧୀରେ ଧୀରେ ଚାଲୁଥାଏ। କିନ୍ତୁ ନଦୀବାଲିରେ କିଛି ବାଟ ଯିବା ପରେ ଗାଡ଼ିର ଆଗଚକ ପୋତି ହୋଇ ଯାଉଥାଏ। ତେଣୁ ପୁନନନା ଓ ମୁଁ ଗାଡ଼ିରୁ ଓହ୍ଲାଇ ଚକ ଆଗରୁ କିଛି ଦୂର ବାଲି କାଢ଼ିବା ପରେ ପଛରୁ ଠେଲିଲେ ଗାଡ଼ି ଆଗକୁ ଯାଏ। ଏହି ପ୍ରକ୍ରିୟା କିଛି ସମୟ ଚାଲିବା ଓ ଠେଲିବା ଯୋଗୁଁ ଦୁହେଁ ହାଲିଆ ହୋଇଗଲୁ ଓ ଅଳ୍ପ ସମୟ ବିଶ୍ରାମ ନେଇ ପୁଣି ସେହି ଠେଲିବା ଆରମ୍ଭ କଲୁ। ରାତି ଆଠଟାରେ ପୁନନନା କହିଲେ, ଗାଡ଼ି ବୁଲାଇ ଭଅଁରା ଗାଁ ଆଡ଼କୁ ହେଡ଼୍‌ଲାଇଟ୍ ପକାଇଲେ ହୁଏତ ଲୋକେ ଆସି ପାରନ୍ତି ଗାଡ଼ି ଠେଲିବା ପାଇଁ। ହଁ ଠିକ୍ ସେଇଆ ହେଲା। କିଛି ସମୟ ପରେ ଭଅଁରାଗଡ଼ରୁ କିଛି ଲୋକ କାଠପଟା ଓ କୋଡ଼ି କୋଦାଳ ଧରି ପହଞ୍ଚିଲେ। ସେମାନେ ସମସ୍ତେ ମିଶି ଓ କାଠପଟା ପକାଇ ଠେଲିବାରୁ ଗାଡ଼ି ସୁରୁଖୁରୁରେ ଭଅଁରାଗଡ଼ରେ ପହଞ୍ଚିଗଲା। ସେତେବେଳକୁ ରାତି ପ୍ରାୟ ୧୧ଟା କିମ୍ବା ୧୨ଟା। ବହୁ ପୂର୍ବରୁ ପହଞ୍ଚିବା କଥା, କିନ୍ତୁ ନଦୀବାଲିରେ ଫସିଯିବା କାରଣରୁ ଗାଡ଼ି ଚାଲିବା ସମ୍ଭବ ହୋଇ ନଥିଲା। ଯାହାହେଉ ରାତିରେ କ'ଣ ପୂଜା ଇତ୍ୟାଦି କରାଗଲା। ତା' ପରଦିନ ସକାଳ ପ୍ରାୟ ୧୦ଟାରେ ରବିଭାଇ ପୁନନନାଙ୍କ ସେହି ଗାଡ଼ିରେ ବସି କଟକ ଭାରତୀ ଭବନ ଅଭିମୁଖେ ଯାତ୍ରା କଲେ ବିଭାଘର ପାଇଁ। ମଦିନନା, ସୁରନନା, କୃଷ୍ଣକକା ଓ ଅନ୍ୟମାନେ ଆମେ ସମସ୍ତେ ବସ୍‌ଯୋଗେ ଦିନ୧୧ଟାରେ ବାହାରିଲୁ କଟକ। ବିଭାଘର ଶେଷ ହେଲା। ମୋତେ ପୁଣି ଥରେ ଅପା ସାଥିରେ ଭଅଁରାଗଡ଼ ଆସିବାକୁ ହେଲା। ଅପା ସେତେବେଳେ

ବୋଧହୁଏ କଟକରେ ଚାକିରି ଆରମ୍ଭ କରିଥାଏ। ୮/୯ ଦିନ ପରେ ଅପା, ରବିଭାଇ ଓ ମୁଁ କଟକ ଫେରିଲୁ, ପୂର୍ବରୁ ତଥାକଥିତ ଦିଆସିଲ୍ ଖୋଳ ବସ୍‌ରେ ବୋଧହୁଏ ବନମାଳୀପୁରରୁ। ବସ୍‌ରେ ବସିବା ପୂର୍ବରୁ ଗୋଟିଏ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ମିଳିଲା, ଯାହା ମୋର ସାରାଜୀବନ ମନେରହିବ। ପ୍ରାୟ ୨୦ ବସ୍ତା କଞ୍ଚାଲଙ୍କା ଲଦା ହେଲା ଛାତ ଉପରେ। ଲଙ୍କା ଏତେ ରାଗୁଆ ଥିଲା ଯେ ବସ୍‌ସାରା ସମସ୍ତେ ଛିଙ୍କିବା ଓ କାଶିବା ଆରମ୍ଭ କଲେ। କିନ୍ତୁ ଡ୍ରାଇଭର କହୁଥାଏ, ବସ୍ ଚାଲିଲେ ଆଉ ଅସୁବିଧା ରହିବ ନାହିଁ। ତାହା ହିଁ ହେଲା। କିନ୍ତୁ ମୋର ଆଖିରୁ ପାଣି ବୋହିବା ଓ କାଶ ବନ୍ଦ ହେଲା ନାହିଁ। କାରଣ ମୁଁ କେବେ ଆଜି ପର୍ଯ୍ୟନ୍ତ ମୋ ଜୀବନରେ ଲଙ୍କା ଖାଇବା ଦୂରକଥା, ଡାଲିରେ ଲଙ୍କା ଛୁଙ୍କ ହେବା ମଧ୍ୟ ଦେଖିଲେ ମୋର ଖାଇବା ବନ୍ଦ। ରବିଭାଇ ମୋର ଏ ଅବସ୍ଥା ଦେଖି ବଡ଼ ବ୍ୟସ୍ତ ହେଉଥାନ୍ତି ଓ ଡ୍ରାଇଭରଙ୍କୁ କଟକ ପହଞ୍ଚାଇବା ପୂର୍ବରୁ ବାଟରେ ଗାଡ଼ି ରଖି ବିଭିନ୍ନ ଯାଗାରେ ମୁହଁ ଧୋଇବା କାରଣରୁ କିଛି ଯନ୍ତ୍ରଣା କମିଲା। କିନ୍ତୁ ଗାଡ଼ି ଅଟକିବା ପରେ ପୁଣି ସମସ୍ତଙ୍କର ଛିଙ୍କ ଆରମ୍ଭ ହେଉଥାଏ। ଯାହାହେଉ ଛିଙ୍କ, କାଶରେ ହାଲିଆ ହୋଇ କଟକରେ ପହଞ୍ଚିଲୁ। ରବିଭାଇଙ୍କ ଘରକୁ ଲାଗି ପ୍ରାଚୀ ନଦୀ। ଘର ପାଖରେ ନଦୀ ବଙ୍କା ହୋଇଯାଇଥିବାରୁ ସେଠାରେ ପାଣିର ଗଭୀରତା ଅଧିକ। ରବିଭାଇଙ୍କ ବିଭାଘର ସମୟରେ ରବିଦା' (ରବି ଘୋଷ) ଆସିଥାନ୍ତି ବିଭାଘରରେ ଯୋଗ ଦେବାକୁ। ଆମେ ସମସ୍ତେ ପ୍ରାୟ ଏକ ସମୟରେ ଗାଧୋଇବାକୁ ଯାଉ ଓ ମୋର ଗୋଡ଼ ଖସିଯିବା କାରଣରୁ ମୁଁ ପାଣିରେ ବୁଡ଼ିଗଲି। ରବିଭାଇ ପହଁରା ଜାଣିଥିବାରୁ ମୋତେ ବୁଡ଼ିଯିବାରୁ ଉଦ୍ଧାର କରିଥିଲେ।

୧୯୬୪ ମସିହାରେ ମାଟ୍ରିକ୍ ପାସ୍ କରିବା ପରେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ପ୍ରି-ୟୁନିଭରସିଟି (ବିଜ୍ଞାନ)ରେ ନାମ ଲେଖାଇଲି। ଅପା ସହିତ ଆମେ ସମସ୍ତେ ରହୁଥିଲୁ ଦଲୁଆ ସାହି ସ୍ଥିତ ଏକ ବିରାଟ ଲମ୍ବା ଘରେ। ଲମ୍ବା ଘର କାରଣ ଏହା ଦକ୍ଷିଣ ଓଡ଼ିଶା ଓ ଆନ୍ଧ୍ରର ବିଶେଷତ୍ୱ। ସେଠାରେ ଯେଉଁ ଜମି ବିକ୍ରି ହୁଏ ଓ ଯିଏ କିଣେ ତାକୁ ଏକ ହାତରେ ୨୦୦ ବା ୨୫୦ ହାତ କିଣିବାକୁ ପଡେ। ଓସାର ବେଶି ହେଲେ ପାଞ୍ଚ ହାତ ବା ଛଅ ହାତ। ତେଣୁ ଘରଗୁଡ଼ିକ ଗୋଟିଏ ପରେ ଗୋଟିଏ ହୋଇ ଟ୍ରେନ୍ କମ୍ପାଟମେଣ୍ଟ ଭଳି। ରାସ୍ତାରୁ ଦେଖିଲେ ବୈଠକଘରଠାରୁ ରୋଷଘର ତଥା ପାଇଖାନା ଦେଖାଯିବା କିଛି ବିଚିତ୍ର ନୁହେଁ। କିନ୍ତୁ ଏ ଘର ଏକ ଛକଯାଗାରେ ଥିବା କାରଣରୁ ରାସ୍ତାକୁ ପ୍ରାୟ ୪ଟି ବାଟ ଥାଏ। ତେଣୁ ଟ୍ରେନ୍ କମ୍ପାଟମେଣ୍ଟ ହେଲେ ମଧ୍ୟ ବିଶେଷ ଅସୁବିଧା ହୁଏ ନାହିଁ। ରାସ୍ତାକୁ ଲାଗି ଘରର ଝରକା ଥାଏ, ତେଣୁ ଆଲୁଅ,

ପବନ ପ୍ରାୟ ମିଳିଯାଏ। ନହେଲେ ବ୍ରହ୍ମପୁରରେ ଘରେ ଆଲୁଅ ଓ ପବନ ପାଇବା ସ୍ୱପ୍ନ ପ୍ରାୟ। ଏତେବଡ଼ ଘର ପ୍ରାୟ ୧୦/୧୨ଟି କୋଠରି। ଅପା ଉପର ମହଲାରେ ଶୁଏ, ଆମ୍ଭେମାନେ ସମସ୍ତେ ତଳ ମହଲାରେ ରହୁ। ଥରେ ଥରେ ଏଭଳି ଅବସ୍ଥା ହୁଏ ଯେ, ଯଦି କିଷାନ ପଟ୍ଟନାୟକ କିମ୍ବା ରବିଭାଇ ବ୍ରହ୍ମପୁର ଆସନ୍ତି ତା'ହେଲେ ସମାଜବାଦୀ ଲୋକଙ୍କର ଘରେ ପ୍ରବଳ ଭିଡ଼ ହୁଏ ଓ ସମସ୍ତେ କାଗଜ ପକାଇ ଶୋଇବାକୁ ବାଧ ହେଉ। ଏ ଅବସ୍ଥା ଆମକୁ ପ୍ରାୟ ୫/୬ ଦିନ ଭୋଗିବାକୁ ହୋଇଥାଏ। ଅନ୍ୟ ସମୟରେ କିଛିଟା କମ୍। ହେଲେ ଅପା ଡାକ୍ତର ହୋଇଥିବା କାରଣରୁ ଓ ବ୍ରହ୍ମପୁର ମେଡିକାଲ କଲେଜରେ ଯୋଗ ଦେଇଥିବାରୁ ରୋଗୀମାନଙ୍କ ସହିତ ସମାଜବାଦୀ ଲୋକଙ୍କ ପରିବାରର ସଦସ୍ୟମାନଙ୍କର ସବୁବେଳେ ଘରେ ଭିଡ଼ ଲାଗି ରହିଥାଏ। ଗାଁରୁ ବୋଉ ପ୍ରତି ମାସରେ ପ୍ରାୟ ୪ ବସ୍ତା ଚାଉଳ, ନଡ଼ିଆ, ଡାଲି ଓ ଖଡ଼ିକା ଝାଡୁ ପଠାଇ ଥାଏ। ତେଣୁ ଅପାର ଟଙ୍କା ଅଭାବ ଥିଲେ ମଧ୍ୟ ଖାଇବାରେ କୌଣସି ଅସୁବିଧା ହୁଏ ନାହିଁ। ଘରେ ଭାତ, ଡାଲି, ମାଛ ତରକାରୀ ମୁଖ୍ୟ ଖାଦ୍ୟ। କାରଣ ରବିଭାଇଙ୍କୁ ନିୟମିତ ଟଙ୍କା ଦେବାକୁ ହୁଏ, ତାଙ୍କର ଚଳିବା ପାଇଁ ତଥା ବସ୍, ଟ୍ରେନ୍‌ରେ ଯାତାୟତ ପାଇଁ। ଅପାପାଖରେ ରହି ବି.ଏସ୍‌ସି ଖଲ୍ଲିକୋଟ୍ କଲେଜରୁ ପାସ୍ କଲା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ସେହିବର୍ଷ ଏମ୍.ଏସ୍‌ସି ନାମ ଲେଖାଇ ୧୯୭୧ ମସିହାରେ ପାସ୍ କଲି ଓ ସେହିବର୍ଷ ନଭେମ୍ବରରେ ଅଞ୍ଚଳ ମହାବିଦ୍ୟାଳୟ, ପଦ୍ମପୁରରେ ଅଧ୍ୟାପକ ଭାବରେ ଯୋଗ ଦେଲି। ସେତେବେଳେ ବଟାନି, ଜୁଲୋଜି ଓ ଇଂରାଜିରେ ଅଧ୍ୟାପକ ମିଳୁ ନଥିବାରୁ ଏମ୍.ଏସ୍‌ସି ପାସ୍ କରିବା ପୂର୍ବରୁ ମୁଁ ଯୋଗଦାନ କରିଥିଲି। ପଦ୍ମପୁରରେ ଯୋଗଦାନ କରିବାର ଆଉ ଏକ କାରଣ ହେଲା ଆମ ଗାଁ ପାଖରୁ ଦୁଇଜଣ ସମ୍ପର୍କୀୟ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦାନ କରିଥାନ୍ତି ତଥା ଅପା ବୁର୍ଲାରେ ୧୯୬୯ ମସିହାରେ ପ୍ରଫେସର ଭାବରେ ଯୋଗଦାନ କରିଥାଏ। ସେତେବେଳେ ମୋର ଦରମା ଡିଏ ସହିତ ଥିଲା ୨୮୦ ଟଙ୍କା। ଚାକିରିରେ ଯୋଗଦେବା ପରେ ପ୍ରତି ସପ୍ତାହରେ ଶନିବାର ବୁର୍ଲା ଆସି ସକାଳୁ ପଦ୍ମପୁର ଫେରିଯାଏ। ସେହି ସମୟରେ ଅପାର କଡ଼ା ତାଗିଦ୍ ଆମ ସମସ୍ତଙ୍କୁ ବିଶେଷକରି ମୋତେ ଓ ବୁଲୁଅପାକୁ, ତୁମେମାନେ ଯେମିତି ହେଲେ ପ୍ରତି ମାସରେ ରବିଭାଇଙ୍କ ପାଇଁ ନିୟମିତ ଟଙ୍କା ପଠାଇବ। ତେଣୁ ମୁଁ ଓ ବୁଲୁଅପା ଦରମା ମିଳିବା ପରେ ୧୦୦ ଟଙ୍କା ଲେଖାଏଁ ଡାକ ଯୋଗେ ମନିଅର୍ଡର କରିବା ପରେ ସେ ମାସ ପାଇଁ ଆମର କର୍ତ୍ତବ୍ୟ ଶେଷ ହୁଏ। ଏହିଭଳି କିଛି ଦିନ ଚାଲିଲା ପରେ ରବିଭାଇ ପୁରୀରୁ ଲୋକସଭା ପାଇଁ ସଂଯୁକ୍ତ ସମାଜବାଦୀ ପାର୍ଟିରୁ କେନ୍ଦ୍ରମନ୍ତ୍ରୀ ବିଭୁଧେନ୍ଦ୍ର ମିଶ୍ରଙ୍କ

ବିରୋଧରେ ବରଗଛ ଚିହ୍ନରେ ନିର୍ବାଚନ ଲଢ଼ି ଜିତିଲେ। ଘରେ ବାହାରେ ଖୁସିର ଲହରି ଖେଳିଗଲା। ମୁଁ ପାଠ ପଢ଼ିବା ସମୟରେ ଅପା ମୋତେ ପ୍ରଥମ ନିର୍ବାଚନରେ ରବିଭାଇଙ୍କ ପାଇଁ ପ୍ରଚାର କରିବାକୁ ପଠାଇଥିଲା । ଯିବା ପୂର୍ବରୁ ହାତରେ ହଠାତ୍ କ'ଣ ଖର୍ଚ୍ଚ ଦରକାର ହେଲେ ୧୫ ଟଙ୍କା ଦେଇଥାଏ। ସେତେବେଳେ ମୁଁ ଓ ଭଅଁରା ଗାଁର ତିନି/ଚାରିଜଣ ପିଲା ସକାଳୁ ଘରୁ ଚୁଡ଼ା, କଦଳି ଖାଇ ବାହାରୁ ନିର୍ବାଚନ ପ୍ରଚାରରେ। ରାସ୍ତାରେ ଯେଉଁ ଗାଁଗୁଡ଼ିକ ପଡ଼େ, କାହା କାହା ଘରେ ମାଗିଲେ ଖାଇବାର ମିଳିଯାଏ ଓ ପୁଣି ସାଇକେଲରେ ରାତିରେ ଘରକୁ ଫେରିଆସୁ। ରାତ୍ରି ଭୋଜନ ପରେ ଶୋଇଯାଉ ଓ ମଦିନନା ପୁଣି ସକାଳୁ ଉଠାଇ ଦିଅନ୍ତି ପ୍ରଚାର କରିବାକୁ ପ୍ରସ୍ତୁତ ହେବା ପାଇଁ। ଯାହାହେଉ ପୁରୀ ଲୋକସଭା ଆସନ ଜିତିବା ପରେ ଆମ ସମସ୍ତଙ୍କର ପରିଶ୍ରମ ସାର୍ଥକ ହେଲା ବୋଲି ଭାବିଥିଲୁ। ଦ୍ୱିତୀୟ ଥର ଓଡ଼ିଶାର ମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କ ବିରୋଧରେ ପୁରୀରୁ ନିର୍ବାଚନ ଲଢ଼ିଲେ କିନ୍ତୁ ବନମାଳୀ ପଟ୍ଟନାୟକ ଶିକ୍ଷା ମନ୍ତ୍ରୀ ଥିବା ସମୟରେ ଏଭଳି ବଦ୍‌ନାମ ହୋଇଥିଲେ ଯେ ନିର୍ବାଚନ ହାରିବା ପ୍ରାୟ ନିଶ୍ଚିତ ଥିଲା। ତେଣୁ ଚକ୍ରାନ୍ତ କରି ପ୍ରଚାର କଲେ ଯେ ରବି ରାୟଙ୍କୁ ଯୋଡ଼ି ବଳଦ ଚିହ୍ନରେ ଭୋଟ୍ ଦିଅ। ତାଙ୍କର ଏହି ଚକ୍ରାନ୍ତ ଫଳବତୀ ହେଲା ଓ ରବିଭାଇ ନିର୍ବାଚନରେ ହାରିଗଲେ। କିନ୍ତୁ ଜନସାଧାରଣଙ୍କର ଧାରଣା ଥିଲା ଯେ ବନମାଳୀ ପଟ୍ଟନାୟକ ନିଶ୍ଚିତ ହାରିବେ ଓ ଯୋଡ଼ି ବଳଦ ଚିହ୍ନରେ ଭୋଟ୍ ଦେଇ କହି ବୁଲିଲେ ଯେ ଏଥର ରବି ରାୟ ବିପୁଳ ଭୋଟ୍‌ରେ ବନମାଳୀ ପଟ୍ଟନାୟକଙ୍କୁ ହରାଇ ନିର୍ବାଚନ ଜିତିବେ। କିନ୍ତୁ ଫଳ ହେଲା ଓଲଟା। ରବିଭାଇ ହାରିଗଲେ, ଜନସାଧାରଣଙ୍କର ନିର୍ବୋଧତା କିମ୍ବା ବନମାଳୀ ପଟ୍ଟନାୟକଙ୍କର ଚକ୍ରାନ୍ତ କାରଣରୁ ତଥା କଂଗ୍ରେସ ଦଳର ସଠିକ ନିର୍ବାଚନ ପରିଚାଳନା କରିବାରୁ।

ତା'ପରେ ରବିଭାଇ ଲଢ଼ିଲେ ଜଗତସିଂହପୁର ଲୋକସଭା ଆସନରୁ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ। ନାକଚ ଭୋଟ୍‌କୁ ମିଶାଇ ସେତେବେଳର କଲେକ୍ଟର ଅଳ୍ପ ଭୋଟ୍‌ରେ ଲକ୍ଷ୍ମଣ ମଲ୍ଲିକ ଜିତିଗଲେ ବୋଲି ଘୋଷଣା କଲେ। ଯଦିଓ କିଛି ଭୋଟ୍ କାଗଜ ରବି ରାୟଙ୍କୁ ଭୋଟ୍ ଦିଆଯାଇ ବାହାରେ ପଡ଼ିଥିବାର ମଧ୍ୟ ଦେଖିବାକୁ ମିଳିଥିଲା। କିନ୍ତୁ ଜିଲ୍ଲାପାଳ ଏହାକୁ ଗ୍ରହଣ କରିନଥିଲେ। ସେତେବେଳେ ମନ୍ତ୍ରୀ ବସନ୍ତ ବିଶ୍ୱାଳ ଥାଆନ୍ତି ଜଗତସିଂହପୁର ନିର୍ବାଚନ ମଣ୍ଡଳୀ ଦାୟିତ୍ୱରେ। ଉଭୟ ଜିଲ୍ଲାପାଳ ଓ ବିଶ୍ୱାଳଙ୍କ ଚକ୍ରାନ୍ତ ଯୋଗୁଁ ରବିଭାଇ ହାରିଗଲେ। ହାଇକୋର୍ଟରେ ମଧ୍ୟ କେସ୍ ଚାଲିଲା। ହାଇକୋର୍ଟ ମଧ୍ୟ ବାହାରେ ପଡ଼ିଥିବା ଭୋଟ୍ କାଗଜ ଗ୍ରହଣ କଲେ ନାହିଁ ତଥା ନାକଚ ଭୋଟ୍

କାଗଜକୁ କାଏମ ରଖି ଶ୍ରୀ ମଲ୍ଲିକଙ୍କୁ ବିଜୟୀ ଘୋଷଣା କରିଥିଲେ କେସ୍ ୪ ବର୍ଷ ଚାଲିଲା ପରେ। ପୁରୀ ଓ ଜଗତସିଂହପୁର ନିର୍ବାଚନ ମଣ୍ଡଳୀରେ ହାରିଯାଇ ମଧ୍ୟ ରବିଭାଇ ଲୋକଙ୍କର ସହାନୁଭୂତିର ପାତ୍ର ହୋଇ ରହିଲେ। କାରଣ ଜନସାଧାରଣଙ୍କ ଦୃଢ଼ ଧାରଣା ଥିଲା ଯେ ରବିଭାଇଙ୍କୁ ଚକ୍ରାନ୍ତ କରି ହରାଇ ଦିଆଯାଇଛି। ସାଧାରଣତଃ ନିର୍ବାଚନରେ ହାରିଗଲେ ଲୋକମାନେ ଦୁଃଖ କରନ୍ତି ଓ ଅନେକ ସମୟରେ ନିଜର ସନ୍ତୁଳନ ହରାଇ ବସନ୍ତି, ଯାହା କେବେ ରବିଭାଇଙ୍କଠାରେ ଦେଖାଯାଇନଥିଲା, ତାଙ୍କର ଦୃଢ଼ ଆତ୍ମବିଶ୍ୱାସ ତଥା ଧୈର୍ଯ୍ୟ ଯୋଗୁଁ। ପରେ ଜନତା ପାର୍ଟି କେନ୍ଦ୍ରୀୟ ପାର୍ଲାମେଣ୍ଟରୀ ବୋର୍ଡ ରବିଭାଇଙ୍କୁ ଏକ ନିରାପଦ ସ୍ଥାନରୁ ନିର୍ବାଚନ ଲଢ଼ିବା ସୁଯୋଗ ଦେବା ପାଇଁ ବିଜୁ ପଟ୍ଟନାୟକଙ୍କୁ କହିଥିଲା। କେନ୍ଦ୍ରୀୟ ପାର୍ଲାମେଣ୍ଟରୀ ବୋର୍ଡର ଏଭଳି ନିର୍ଦ୍ଧାରଣ କରିବା ବୋଧହୁଏ କମ୍ ଲୋକଙ୍କ ପାଇଁ ହୋଇଥାଏ। ଏହାର ମୁଖ୍ୟ କାରଣ ରବିଭାଇଙ୍କର ଦୃଢ଼ ଆତ୍ମବିଶ୍ୱାସ, ଧୈର୍ଯ୍ୟ, ସ୍ପଷ୍ଟବାଦିତା ତଥା ସଚ୍ଚୋଟ ପଣିଆ ଓ ଜନସାଧାରଣଙ୍କ ସହିତ ନିବିଡ଼ ସମ୍ପର୍କ ଯୋଗୁଁ। ସେହି କାରଣରୁ ବିଜୁ ପଟ୍ଟନାୟକ କେନ୍ଦ୍ରାପଡ଼ାରୁ ନ ଲଢ଼ି ରବିଭାଇ ଲଢ଼ିଲେ। କିନ୍ତୁ ସବୁଠାରୁ ବଡ଼ ଅସୁବିଧା କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀ। କାରଣ ବିଜୁ ବାବୁ ଏହି ନିର୍ବାଚନ ମଣ୍ଡଳୀକୁ ଗସ୍ତ କରିବା ସମୟରେ କିମ୍ବା ପ୍ରଚାର କରିବା ସମୟରେ ତାଙ୍କ ସମର୍ଥକମାନେ ପୂର୍ବରୁ ମହିଳାମାନଙ୍କୁ ହୁଳହୁଳି ପକାଇବା ତଥା ଶଙ୍ଖ ବଜାଇବା ପାଇଁ ପ୍ରଚୁର ଅର୍ଥ ଦେଇଥାନ୍ତି। କିନ୍ତୁ ରବିଭାଇଙ୍କ କ୍ଷେତ୍ରରେ ମହିଳାମାନେ ହୁଳହୁଳି ପକାଇବା ଓ ଶଙ୍ଖ ବଜାଇବା ପାଇଁ ଆସିଥିଲେ କୌଣସି ଅର୍ଥର ଆଶା ନ ରଖି। କାରଣ ସେମାନେ ଜାଣିଥିଲେ ଯେ ଅର୍ଥ ଦେଇ ଭୋଟ୍ ସଂଗ୍ରହ କରିବା ରବି ରାୟଙ୍କ ନୀତି ବିରୋଧ। ସେମାନେ ଏହା ମଧ୍ୟ ଜାଣିଥିଲେ ଯେ ରବିଭାଇଙ୍କର ହୃଦୟବତା ତଥା ଜନସାଧାରଣଙ୍କ ପାଇଁ କାମ କରିବାର ପଟାନ୍ତର ନାହିଁ।

ରବିଭାଇ ଲୋକସଭାର ସଦସ୍ୟ ଭାବେ ନିର୍ବାଚନ ଜିତିଲେ। ତାଙ୍କ ସରକାରୀ ପ୍ରଦତ୍ତ ଘରକୁ ମୁଁ ବିଭିନ୍ନ ସମୟରେ ଯାଇଛି, କିନ୍ତୁ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ତଥା ବାଚସ୍ପତି ହେବା ସମୟରେ ନୁହେଁ। ଏହା ମଧ୍ୟ ମୋର ନୀତି ଦୃଷ୍ଟିରୁ। ଅବଶ୍ୟ ମନ୍ତ୍ରୀ ପଦ ଓ ବାଚସ୍ପତି ଦାୟିତ୍ୱ ଶେଷ ହେବା ପରେ ରବିଭାଇଙ୍କର ଘର ଓ ଅନ୍ୟାନ୍ୟ ଜିନିଷ ବଦଳାଇ ଛୋଟ ଘରକୁ ଯିବା ପାଇଁ (ଯାହା କେବଳ ସଦସ୍ୟ ମାନଙ୍କ ପାଇଁ ଉଦ୍ଦିଷ୍ଟ) ମୁଁ ଦିଲ୍ଲୀ ଯାଇଛି।

କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ୨/୩ ଟି ଘଟଣା ଉଲ୍ଲେଖଯୋଗ୍ୟ। ଏମ୍ସର ଡାଇରେକ୍ଟର ପଦ ଖାଲି ଥାଏ। ଶ୍ରୀଯୁକ୍ତ ଚରଣ ସିଂହ ପ୍ରଧାନମନ୍ତ୍ରୀ ଥାନ୍ତି ଓ ତାଙ୍କ ଜ୍ୱାଇଁ

ଡାଇରେକ୍ଟର ପଦରେ ଆସୀନ ହେବା ପାଇଁ ପ୍ରବଳ ଚେଷ୍ଟା ଚଳାଇଥାନ୍ତି ଓ ଦରଖାସ୍ତ ମଧ କରିଥାନ୍ତି । ଅଧିକାଂଶଙ୍କର ବିଶ୍ୱାସ ଥିଲା ଯେ ଚରଣ ସିଂହଙ୍କ ଜ୍ୱାଇଁ ଡ. ସିଂହ ସେହି ପଦ ନିଶ୍ଚିତ ପାଇବେ । ରବି ରାୟଙ୍କ ଚରିତ୍ର ଓ ସାଧୁତା ବିଷୟରେ ଜାଣି ଶ୍ରୀ ଚରଣ ସିଂ ଡାଇରେକ୍ଟର ପଦରେ ତାଙ୍କ ଜ୍ୱାଇଁଙ୍କୁ ମୁକରିର କରିବା ପାଇଁ ଅନୁରୋଧ କରିନଥିଲେ । କିନ୍ତୁ ଚରଣ ସିଂହଙ୍କ ସ୍ତ୍ରୀ ଶ୍ରୀମତୀ ଗାୟତ୍ରୀ ଦେବୀ ରବିଭାଇଙ୍କୁ ଘରକୁ ଡାକି ତାଙ୍କ ଜ୍ୱାଇଁଙ୍କୁ ଡାଇରେକ୍ଟର ପଦରେ ମୁକରିର କରିବାକୁ ଅନୁରୋଧ କରିଥିଲେ । ରବିଭାଇ ଗାୟତ୍ରୀ ଦେବୀଙ୍କୁ କିଛି ନ କହି ଘରକୁ ଫେରିଆସିଲେ ଓ ଚରଣ ସିଂହଙ୍କୁ ଏ ବିଷୟରେ ନିଷ୍ପତ୍ତି ନେବାକୁ ଅନୁରୋଧ କଲେ । ଚରଣ ସିଂହ ରବିଭାଇଙ୍କ ସାଧୁତା ବିଷୟରେ ଜାଣିଥିଲେ ଓ ତାଙ୍କ ଜ୍ୱାଇଁ ସେ ପଦ ପାଇଁ ଯୋଗ୍ୟ ନୁହନ୍ତି ବୋଲି ମଧ ଜାଣିଥିଲେ । ସେଥିପାଇଁ ରବିଭାଇଙ୍କୁ କହିଥିଲେ ତୁମେ ଯାହା ଉଚିତ ମଣିବ ତଥା ନିୟମ ଦର୍ଶାଇବ ସେହି ଅନୁସାରେ କର୍ତ୍ତବ୍ୟ କରିବ କାହା ଦ୍ୱାରା ପ୍ରଭାବିତ ନ ହୋଇ ଓ ଗାୟତ୍ରୀ ଦେବୀଙ୍କ ଅନୁରୋଧକୁ ବିଶେଷ ଧ୍ୟାନ ନ ଦେବାପାଇଁ ।

ଦ୍ୱିତୀୟ ଘଟଣା, ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ଓଡ଼ିଶା ତଥା ଭାରତର ଅଧିକାଂଶ ରାଜ୍ୟ ପାଇଁ କେନ୍ଦ୍ର ସରକାରଙ୍କ ସ୍ୱାସ୍ଥ୍ୟ ବଜେଟ୍ ପୂର୍ବ ସରକାରଙ୍କ ଅପେକ୍ଷା ବଢ଼ାଇ ଦିଆଗଲା । ଓଡ଼ିଶାର ୩ଟି ମେଡିକାଲ କଲେଜ ପାଇଁ ୩ଟି ବିରାଟ ଭ୍ୟାନ୍ ଆସିଥିଲା, ଯାହା ସ୍ୱୟଂସମ୍ପୂର୍ଣ୍ଣ ଡାକ୍ତରଖାନାର ଭୂମିକା ନିର୍ବାହ କରିପାରୁଥିଲା । ସେଥିରେ ଅପରେସନ୍ ଥିଏଟର, ଏକ୍ସ-ରେ ମେସିନ୍ ସହିତ ଅନ୍ୟାନ୍ୟ ଆଧୁନିକ ବ୍ୟବସ୍ଥା ଓ ଯନ୍ତ୍ରପାତି ଖଞ୍ଜାଯାଇଥିଲା ଓ ସେହି ଗାଡ଼ିଗୁଡ଼ିକ ଗ୍ରାମାଞ୍ଚଳକୁ ଯାଇ ସ୍ୱାସ୍ଥ୍ୟ ପ୍ରଦାନ କରିବାରେ ସକ୍ଷମ ଥିଲା । କିନ୍ତୁ ଦୁଃଖର କଥା ଓଡ଼ିଶା ସରକାର ଏହି ଭ୍ରାମ୍ୟମାଣ ଡାକ୍ତରଖାନା ପାଇଁ ଏକ ଗ୍ୟାରେଜ୍ ମଧ ନିର୍ମାଣ କଲେ ନାହିଁ । ଫଳରେ ଖରାବର୍ଷା ପ୍ରଭାବରେ ଏହି ଭ୍ରାମ୍ୟମାଣ ଡାକ୍ତରଖାନା ଗୁଡ଼ିକ ନଷ୍ଟ ହୋଇଯାଇଥିଲା ।

ରବିଭାଇଙ୍କ ପୂର୍ବରୁ ଶ୍ରୀଯୁକ୍ତ ରାଜ ନାରାୟଣଜୀ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ଚୀନ୍‌ର ବେୟାର୍ ଫୁଟ୍ ଡାକ୍ତର ଭଳି ବ୍ୟବସ୍ଥା କରିବା ପାଇଁ ଯୋଜନା କରାଯାଇଥିଲା । ଏହାଦ୍ୱାରା ଅଳ୍ପକିଛି ମାସ ପ୍ରଶିକ୍ଷଣ ନେଇ ଗ୍ରାମାଞ୍ଚଳ ଲୋକମାନଙ୍କର ସାଧାରଣ ରୋଗର ଚିକିତ୍ସା କରିବା ପାଇଁ ଏଭଳି ବ୍ୟବସ୍ଥା ଥିଲା । କିନ୍ତୁ କିଛି ଅସାଧୁ ନେତା ତଥା ଅଫିସରଙ୍କ ଚକ୍ରାନ୍ତ କାରଣରୁ ଅଳ୍ପ କିଛି ଦିନ ଚାଲିବା ପରେ ଏହି ଯୋଜନା ବନ୍ଦ ହୋଇଗଲା । ଏବେ ନୂତନ ଭାବରେ ସେହି ବ୍ୟବସ୍ଥାରେ ସାମାନ୍ୟ ପରିବର୍ତ୍ତନ କରାଯାଇ ଆଶାକର୍ମୀ ତଥା ଭିଲେଜ୍ ହେଲ୍‌ଥ ୱାର୍କର ଭଳି ବ୍ୟବସ୍ଥା ସରକାରଙ୍କ ଦ୍ୱାରା

କରାଯାଇଛି । ପୂର୍ବରୁ ଆୟୁର୍ବେଦ, ସିଦ୍ଧ ଓ ୟୁନାନି ବ୍ୟବସ୍ଥା ଥିଲେ ମଧ୍ୟ ଏଲୋପାଥିକ୍ ଭଳି ଡାକ୍ତରୀ ବ୍ୟବସ୍ଥାକୁ ଅଧିକ ପ୍ରୋତ୍ସାହନ ଦେବା କାରଣରୁ ଏଭଳି ପାରମ୍ପରିକ ବ୍ୟବସ୍ଥା ଅବହେଳିତ ହୋଇଥିଲା । କିନ୍ତୁ ଏହି ବ୍ୟବସ୍ଥା ପ୍ରତି ରବିଭାଇଙ୍କର ବିଶ୍ୱାସ ଥିବାରୁ ସେ ଏହା ଉପରେ ଗୁରୁତ୍ୱ ଦେଇ ସମସ୍ତ ରାଜ୍ୟରେ ଏହାର ପ୍ରସାର ପାଇଁ ଉଦ୍ୟମ କରିଥିଲେ । ସେହି କାରଣରୁ ଚାଇନାର ପାରମ୍ପରିକ ଚିକିତ୍ସା ପଦ୍ଧତିକୁ ଉପଯୋଗ କରି ମ୍ୟାଲେରିଆ ଭଳି ଦୂରାରୋଗ୍ୟ ଭଲ ହୋଇପାରୁଛି ଓ ସେଥିପାଇଁ ଚଳିତବର୍ଷ ଚାଇନାର ଜଣେ ମହିଳାଙ୍କୁ ମେଡିସିନ୍ ପାଇଁ ନୋବେଲ ପୁରସ୍କାର ମିଳିଛି ।

ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ମୁଁ କଲିକତାରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଫେଲୋସିପ୍ ପାଇ ଗବେଷଣାରତ ଥାଏ । ସେହି ସମୟରେ ମୋର ଗାଇଡ୍ ପ୍ରଫେସର ଅର୍ଚ୍ଚନା ଶର୍ମାଙ୍କ ସ୍ୱାମୀ ପ୍ରଫେସର ଅରୁଣ ଶର୍ମା କେନ୍ଦ୍ର ସରକାରଙ୍କ ସ୍ୱାସ୍ଥ୍ୟ କମିଟରେ ସଦସ୍ୟ ଥାଆନ୍ତି । କୌଣସି ଏକ ମିଟିଂରେ ରବିଭାଇ ପ୍ରଫେସର ଶର୍ମାଙ୍କୁ ମୋ ବିଷୟରେ ପଚାରିଥିଲେ । ଦିଲ୍ଲୀରୁ ଫେରିବା ପରେ ପ୍ରଫେସର ଶର୍ମା ମୋତେ ପଚାରିଲେ, "କି ବିଜୟ, ତୁମି ଆମକେ ବୋଲନି କେନ, ତୁମାର ଜାମାଇ ବାବୁ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଆଛେନ୍ ।" ମୁଁ ଉତ୍ତରରେ କହିଥିଲି, "ପାଠ ପଢ଼ିବାକୁ ଆସିଛି, ପିଏଚ୍‌ଡି ଶେଷ ହେବା ପରେ ମୁଁ ଓଡ଼ିଶା ଫେରିଯିବି । ମୋର ପାଠ ପଢ଼ିବା ପାଇଁ ଯାହା ଦରକାର, ମୁଁ ପାଇଛି । ତେଣୁ ରବିଭାଇ କେନ୍ଦ୍ର ମନ୍ତ୍ରୀ ଅଛନ୍ତି ବୋଲି କହିବାର କୌଣସି କାରଣ ନାହିଁ ।" କଲିକତାରେ ପୂଜା ଛୁଟି ପ୍ରାୟ ଏକମାସ ହୁଏ । ସେହି ସମୟରେ ସମସ୍ତ ବିଭାଗ ବନ୍ଦ ରହେ । କିନ୍ତୁ ଯେଉଁମାନେ ଗବେଷଣା ଜାରି ରଖିବାକୁ ଚାହାନ୍ତି, ବିଭାଗକୁ ଯିବାରେ କିଛି ଅସୁବିଧା ନଥାଏ । ତେଣୁ ଛୁଟିରେ ମଧ୍ୟ ମୁଁ କଲିକତାରେ ଗବେଷଣା ଜାରି ରଖିଥାଏ । ଉତ୍ତରପ୍ରଦେଶ, ମିରଟ୍‌ର ମୋର କିଛି ବନ୍ଧୁ ପୂଜା ଛୁଟିରେ ଘରକୁ ଯାଇଥାନ୍ତି । ସେତେବେଳକୁ ପ୍ରଫେସର ଶର୍ମାଙ୍କଠାରୁ ମୋ ବିଷୟରେ ଆମ ବିଭାଗର ପ୍ରାୟ ସମସ୍ତେ ଜାଣି ସାରିଥାନ୍ତି । ମିରଟରେ ପହଞ୍ଚି ସେମାନେ ନିଜ ଘରେ କହିଥିଲେ ଯେ, "ହମାରେ ଏକ ଦୋସ୍ତ ହୈ, ଜିନ୍‌କା ଦାମାଦ୍ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ହୈ ।" ଏହା ଶୁଣି ଜଣେ ବନ୍ଧୁ ଓମ୍‌ପାଲ୍ ସିଂଙ୍କ ବାପା କହିଥିଲେ, "ତୁମ୍‌ହାରା ଦୋସ୍ତ କୈସା ବେବକୁଫ୍ ହୈ, ଜିନ୍‌କା ଦାମାଦ୍ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ହୈ, ଓ୍ୱ ଯହାଁ କଲ୍‌କତା ମେଁ କ୍ୟା ଶୋଧ୍ (ରିସର୍ଚ୍ଚ) କର୍ ରହା ହୈ । ଓ୍ୱ ଅଭି କହିଁ ବାହାର୍ ଲଣ୍ଡନ୍ ୟା ୟୁଏସ୍ଏ ମେଁ ହୋତା ।" ମୋର ଏ ବିଷୟରେ ଉଲ୍ଲେଖ କରିବାର କାରଣ ନା ଆମ ପରିବାରର କେହି ରବିଭାଇ କେନ୍ଦ୍ର ମନ୍ତ୍ରୀ ବା ବାଚସ୍ପତି ହେବା ସମୟରେ କିଛି ବ୍ୟକ୍ତିଗତ ଫାଇଦା

ନେଇଛୁ ନା ସେ ଆମମାନଙ୍କୁ ବା ଆମ ପରିବାରର କାହାକୁ କୌଣସି ଲାଭ ପହଞ୍ଚାଇବାରେ ସାହାଯ୍ୟ କରିଛନ୍ତି ଯାହା ତାଙ୍କର ନୀତି ବିରୋଧ ଓ ତାହା ବର୍ତ୍ତମାନ ଏକ ସାଧାରଣ ନିୟମ ଭାବରେ ପ୍ରଚଳିତ।

ଠିକ୍ ସେହିଭଳି ଲୋକସଭା ବାଚସ୍ପତି ଥିବା ସମୟରେ ରବିଭାଇଙ୍କ ପ୍ରଚେଷ୍ଟାରୁ ଦୂରଦର୍ଶନର ସିଧା ପ୍ରସାରଣ ହୋଇପାରିଥିଲା। ଯାହା ଏକ ଯୁଗାନ୍ତକାରୀ ପଦକ୍ଷେପ ଥିଲା। ଅନ୍ୟ ଏକ ଘଟଣା ଯାହା ତାଙ୍କୁ ମାଭଲଙ୍କରଙ୍କ ପରେ ଦ୍ୱିତୀୟ ଯୋଗ୍ୟତମ ବାଚସ୍ପତି ଭାବେ ବିବେଚିତ କରିଥାଏ। ସେହି ଯୁଗାନ୍ତକାରୀ ନିର୍ଣ୍ଣୟରେ ୭/୮ ଜଣ ମାନ୍ୟବର ଲୋକସଭା ସଦସ୍ୟ ଦଳ ବଦଳ କରି କଂଗ୍ରେସ ଦଳ ସହାୟତାରେ ମନ୍ତ୍ରୀମଣ୍ଡଳ ଗଠନ କଲେ ଓ ଶ୍ରୀ ଚନ୍ଦ୍ରଶେଖର ଏହି ମନ୍ତ୍ରୀମଣ୍ଡଳର ପ୍ରଧାନମନ୍ତ୍ରୀ ହେଲେ। ନିୟମ ଅନୁସାରେ ଦଳ ବଦଳ ହୋଇ ନ ଥିବାରୁ ନିଜ ବନ୍ଧୁ ଶ୍ରୀଯୁକ୍ତ ଚନ୍ଦ୍ରଶେଖରଜୀଙ୍କ ସହିତ ସମସ୍ତ ୮ ଜଣଙ୍କୁ ଲୋକସଭା ସଦସ୍ୟ ପଦରୁ ବହିଷ୍କାର (ସସ୍‌ପେଣ୍ଡ) କରାଗଲା। ରବିଭାଇ ଚାହିଁଥିଲେ ଲୋକସଭାର ଅଧ୍ୟକ୍ଷ ହିସାବରେ ଦଳ ବଦଳକାରୀମାନଙ୍କୁ ବହିଷ୍କାର କରିନଥାନ୍ତେ। ସମସ୍ତ ପ୍ରକାର ପ୍ରଲୋଭନ ଓ ଚାପକୁ ଏଡ଼ାଇ ନିଜ ନିଷ୍ପତ୍ତିରେ ଅଟଳ ରହିଲେ। ଏହିଭଳି ପଦକ୍ଷେପ ବହୁତ କମ୍ ଲୋକ ନେଇପାରନ୍ତି ଓ ନିଜ ସିଦ୍ଧାନ୍ତରେ ଅଟଳ ରହନ୍ତି, ଯାହା ବର୍ତ୍ତମାନ ରାଜନେତାଙ୍କ କ୍ଷେତ୍ରରେ ବିଡ଼ମ୍ବନା ମାତ୍ର।

ରବିଭାଇ ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ଲୋକସଭା ନିର୍ବାଚନ ହେଲା। ବିଜୁ ପଟ୍ଟନାୟକଙ୍କୁ ପାର୍ଟିର ସଭାପତି ହିସାବରେ ନିର୍ବାଚନ ଲଢ଼ିବା ପାଇଁ ଆବଶ୍ୟକ ଅର୍ଥ ମାଗିଲେ। ବିଜୁ ପଟ୍ଟନାୟକ କହିଥିଲେ, "ମୋ ବିଭାଗ (ଷ୍ଟିଲ୍ ଆଣ୍ଡ୍ ମାଇନ୍ସ)ର ବଜେଟ୍ ଅପେକ୍ଷା ସ୍ୱାସ୍ଥ୍ୟ ବିଭାଗର ବଜେଟ୍ ଅଧିକ। ତେଣୁ ତୁମେ ସେହି ହେଲ୍‌ଥ ବଜେଟ୍‌ରୁ ଅର୍ଥ ସଂଗ୍ରହ କରିପାରିଥାଆନ୍ତ। ମୁଁ ଅନ୍ୟମାନଙ୍କୁ ଦେବା କାରଣରୁ ତୁମକୁ ଦେଇପାରିବି ନାହିଁ।" ରବିଭାଇଙ୍କର ସ୍ପଷ୍ଟ ଉତ୍ତର ଥିଲା, "ନିର୍ବାଚନ ନ ଲଢ଼ିଲେ ମୋର ଦୁଃଖ ନାହିଁ, କିନ୍ତୁ ଗରିବ ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ଅର୍ଥ କାଟି ମୋର ନିର୍ବାଚନ ଲଢ଼ିବାର ନାହିଁ ଓ ଏଭଳି ଏକ ଗୁରୁତର ରାଜଦ୍ରୋହ କାମ ମୁଁ କରିପାରିବି ନାହିଁ।" ସେହି କାରଣରୁ ବିଜୁ ବାବୁ ବାଧ ହୋଇ ରବିଭାଇଙ୍କୁ ନିର୍ବାଚନ ଲଢ଼ିବା ପାଇଁ ଆବଶ୍ୟକ ଅର୍ଥ ଦେଇଥିଲେ। ଏହିସବୁ ବିଷୟରୁ ପ୍ରମାଣିତ ଯେ ରବିଭାଇ ବ୍ୟକ୍ତିଗତ, ସାମାଜିକ, ମନ୍ତ୍ରୀ କିମ୍ବା ବାଚସ୍ପତି ଥିବା ସମୟରେ ସରକାରୀ ତହବିଲ୍‌ରୁ ନିଜ ସ୍ୱାର୍ଥ ପାଇଁ କୌଣସି ଅର୍ଥ ଖର୍ଚ୍ଚ କରିନାହାନ୍ତି, ଯାହା ବର୍ତ୍ତମାନ ଏକ ପ୍ରଚଳିତ ବ୍ୟବସ୍ଥାରେ ପରିଣତ ହୋଇଛି।

ଲୋକସଭା ସଦସ୍ୟ ଥିବା ସମୟରେ ମୁଁ କଲିକତାରେ ପାଠ ପଢୁଥାଏ। ଥରେ ଅପା, ମୁଁ ଓ ରବିଭାଇ ତିନିଜଣ ଦିଲ୍ଲୀ ଯାଉଥିଲୁ। ମୋର ଟ୍ରେନ୍ ଟିକେଟ୍ ଥ୍ରୀ-ଟାୟାର 'ସ୍ଲିପର୍‌ରେ ଥାଏ। ଟିଟିଇ ମଧ୍ୟ ମୋର ଟିକେଟ୍ ଯାଞ୍ଚ କରିଥାନ୍ତି। ଅପା କହିଥାଏ ଯେ ମୋଗଲସରାଇ ଷ୍ଟେସନ୍‌ରେ ଗାଡ଼ି ବହୁତ ସମୟ ରହେ। ସେହି ସମୟରେ ଆସିଲେ ଆମେ ସମସ୍ତେ ସାଥୀ ହୋଇ ଖାଇବା। ମୁଁ ସାମାନ୍ୟ ବିଳମ୍ବରେ ତୃତୀୟ ଶ୍ରେଣୀ ଡବାରୁ ପ୍ରଥମ ଶ୍ରେଣୀ ଡବାକୁ ଗଲି। ଅଳ୍ପ ସମୟ ପରେ ଗାଡ଼ି ଷ୍ଟେସନ୍ ଛାଡ଼ିଦେଲା। ହଠାତ୍ ସେହି ପ୍ରଥମ ଶ୍ରେଣୀ ଡବାକୁ ମୋର ଟିକେଟ ଯାଞ୍ଚ କରିଥିବା ଟିଟିଇ ଓ ରେଳ ବିଭାଗର ଭିଜିଲାନ୍ସ ସ୍କ୍ୱାର୍ଡର ଜଣେ ଅଧିକାରୀ ଟିକେଟ ଯାଞ୍ଚ କରିବା ପାଇଁ ପହଞ୍ଚିଲେ। ମୋର ତୃତୀୟ ଶ୍ରେଣୀର ଟିକେଟ ହୋଇଥିବା ଓ ମୁଁ ପ୍ରଥମ ଶ୍ରେଣୀରେ ବସିଥିବା କାରଣରୁ ମୁଁ କହିବା ସତ୍ତ୍ୱେ ମଧ୍ୟ ମୋର ମୋଗଲସରାଇଠାରୁ ଆଗ୍ରା ପର୍ଯ୍ୟନ୍ତ ଜରିମାନା ସହିତ ପ୍ରଥମ ଶ୍ରେଣୀ ଟିକେଟ୍ ଟଙ୍କା ଦେବାକୁ ବାଧ୍ୟ ହେଲି। କିନ୍ତୁ ଅପା ରବିଭାଇଙ୍କ ସାଥୀରେ ସ୍ପାଉସ୍ ପାସ୍‌ରେ ଯାଉଥିଲା ଓ ଟିକେଟ୍‌ରେ ଅପାର ନାମ ଡାକ୍ତର ସରସ୍ୱତୀ ସ୍ୱାଇଁ ଉଲ୍ଲିଖିତ ଥିଲା। ଭିଜିଲାନ୍ସ ଅଫିସର ଅପାକୁ ପ୍ରଶ୍ନ କଲେ, "ଏହା କିପରି ସମ୍ଭବ ଯେ ଆପଣ ଡାକ୍ତର ସରସ୍ୱତୀ ସ୍ୱାଇଁ ଓ ଆପଣଙ୍କ ସ୍ୱାମୀ ଶ୍ରୀ ରବି ରାୟ।" ଅପାର ଉତ୍ତର ଥିଲା, "ମୁଁ ମେଡିକାଲ କଲେଜର ଜଣେ ସିନିଅର ପ୍ରଫେସର, ତେଣୁ ମୋର ନାମ ପରିବର୍ତ୍ତନ କରିବାର କୌଣସି କାରଣ ନାହିଁ।" ରବିଭାଇ ଅପାର ଏହି ବକ୍ତବ୍ୟକୁ ମଧ୍ୟ ସ୍ୱୀକାର କରିଥିଲେ। ଏହା ସତ୍ତ୍ୱେ ମଧ୍ୟ ସେହି ଅଫିସର ଅପାର କଲିକତାଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଜରିମାନା ସହ ପ୍ରଥମ ଶ୍ରେଣୀରେ ଟିକେଟ୍ କରିବାକୁ ବାଧ୍ୟ କଲେ ଓ ଅପା ଟିକେଟର ଦେୟ ଦେଇଥିଲା। ଏ ବିଷୟରେ ଲୋକସଭାରେ ପ୍ରଶ୍ନ କରାଯିବାରୁ ସେତେବେଳର ରେଳମନ୍ତ୍ରୀ ଦୁଃଖ ପ୍ରକାଶ କରିବା ସହିତ ଜରିମାନା ଅର୍ଥ ଫେରସ୍ତ କରିବାକୁ ଆଦେଶ ଦେଇଥିଲେ।

ରବିଭାଇ ଅନ୍ୟ କାହା ଉପରେ ରାଗିବା ମୁଁ କେବେ ଦେଖିନାହିଁ। ଥରେ କଲେଜରୁ ଆସିବା ପରେ ମୋ ବଡ଼ଭାଇ ଭାଉଜଙ୍କୁ କୌଣସି କାରଣରୁ ବିରକ୍ତ ହେଉଥାନ୍ତି। ରବିଭାଇ ଶୁଣିଲା ପରେ ଭାଇଙ୍କୁ କହିଥିଲେ, ଏହା ମୋର ପ୍ରଥମ ଓ ଶେଷ କଥା। ଅନ୍ୟ କାହା ଉପରେ ବା ମିନି ଉପରେ ଆଉ ରାଗିବା ମୁଁ ଯେମିତି କେବେ ଦେଖିବି ନାହିଁ।

ରବିଭାଇଙ୍କର ସ୍ମୃତିଶକ୍ତି ପ୍ରବଳ। ବ୍ରହ୍ମପୁର ଜେଲ୍‌ରେ ଥିବା ସମୟରେ ମୁଁ ମୋର ବନ୍ଧୁମାନଙ୍କ ସାଥିରେ ସକାଳୁ ଯାଏ ରବିଭାଇ ତଥା ଜେଲ୍ ଥିବା ତାଙ୍କର ବନ୍ଧୁମାନଙ୍କ

ପାଇଁ ଖାଇବା ନେଇ। ଯଦିଓ ଜେଲ୍‌ରେ ବାହାର ଖାଦ୍ୟ ପ୍ରବେଶ ନିଷେଧ ବା ନିୟମ ନାହିଁ ତଥାପି ଅପା ମେଡିକାଲ କଲେଜରେ ପ୍ରଫେସର ଥିବା କାରଣରୁ ସିଡିଏମ୍‌ଓ ଜେଲ୍‌କୁ ଖାଦ୍ୟ ନେବା ପାଇଁ ଅନୁମତି ଦେଇଥାନ୍ତି। ମୋର ସେହି ବନ୍ଧୁମାନଙ୍କୁ ଥରେ ଦେଖିବା ପରେ ତା'ର ଠିକଣା, ବାପା ମା'ଙ୍କ ବିଷୟରେ ସଠିକ ବୁଝିଥାନ୍ତି ଓ ମନେରଖିଥାନ୍ତି। ବହୁବର୍ଷ ପରେ ଦେଖା ହେଲେ ମଧ୍ୟ ସେମାନଙ୍କୁ ସେମାନଙ୍କର ବାପା ମା' ଓ ଗାଁ ବିଷୟରେ ପଚାରିଥାନ୍ତି। ଏଭଳି ସ୍ପଷ୍ଟ ମନେରଖିବା ଅନ୍ୟମାନଙ୍କଠାରେ ବିରଳ ଓ ତଥାକଥିତ ରାଜନୈତିକ ନେତାମାନେ ମନେନଥିଲେ ମଧ୍ୟ ହସି ଦେଇ ଛଳନା କରି ଉତ୍ତର ଦେଇଥାନ୍ତି, ଯେଭଳି ବହୁ ଦିନରୁ ସେମାନଙ୍କୁ ଚିହ୍ନିଛନ୍ତି।

ରବିଭାଇ ତାଙ୍କ ଜୀବନରେ କେବେ ମଦ ଛୁଇଁ ନାହାନ୍ତି, ପିଇବା ତ ଦୂରର କଥା। ଲୋକସଭା ସଦସ୍ୟ ଥିବା ସମୟରେ ବାଚସ୍ପତି ସଂଜିବ ରେଡ୍ଡୀଙ୍କ ନେତୃତ୍ୱରେ ଏକ ପାର୍ଲାମେଣ୍ଟାରି ଡେଲିଗେସନ୍ ରୁଷ ତଥା ଉଜ୍‌ବେଗିସ୍ତାନ ଗସ୍ତରେ ଯାଇଥାନ୍ତି। ସେଠାର ମେୟର ଥାନ୍ତି ଜଣେ ଭଦ୍ରମହିଳା। ସେ ରବିଭାଇଙ୍କ ପାଖରେ ମିଟିଂ ସମୟରେ ବସିଥାନ୍ତି। ହଠାତ୍ ରବିଭାଇଙ୍କର ପାଣି ପିଇବାର ଇଚ୍ଛା ହେଲା ଓ ପାଣି ମାଗିଲେ। ବହୁ କଷ୍ଟରେ ପାଣି ଯୋଗାଡ଼ ହେଲା। କିନ୍ତୁ ସେ ମହିଳା ବହୁତ ଅନୁରୋଧ କଲେ ଯେ ମଦ ପିଇବା ପାଇଁ। ରବିଭାଇ ଯେତେ ମନାକଲେ ମଧ୍ୟ ସେ ଭଦ୍ରମହିଳା ବିଶ୍ୱାସ କରିପାରିଲେ ନାହିଁ ଯେ ରବିଭାଇ ମଦ ପିଅନ୍ତି ନାହିଁ ବୋଲି। ବହୁ ଅନୁରୋଧ ପରେ ସେ ଭଦ୍ରମହିଳା କହିଲେ, ଏଠାକୁ ଯେଉଁମାନେ ପାର୍ଲାମେଣ୍ଟାରି ଡେଲିଗେସନ୍‌ରେ ଆସନ୍ତି ମଦ ପିଇବା ଏକ ପ୍ରଚଳିତ ପ୍ରଥା। ବାଧ୍ୟ ହୋଇ ରବିଭାଇ ସେହି ଭଦ୍ରମହିଳାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଗୋଟିଏ ଗ୍ଲାସ ପାଣିରେ ଗୋଟିଏ ବୁନ୍ଦା ମଦ ମିଶାଇ ପିଇଥିଲେ। ପରେ ସଂଜିବ ରେଡ୍ଡୀ ଇତ୍ୟାଦି ଏ ବିଷୟରେ ଶୁଣିବା ପରେ ସମସ୍ତଙ୍କୁ ଏହା ହସର ଖୋରାକ ଯୋଗାଇଥିଲା।

ମୋ ବୋଉ ଭଳି ରବିଭାଇଙ୍କ ବୋଉ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି। ଦୁହେଁ ଦେଖିବାକୁ ଡେଙ୍ଗା ଓ ପତଳା। ସବୁଠାରୁ ବଡ଼କଥା ଉଭୟେ ବହୁତ ସ୍ନେହୀ। ମୋ ବୋଉ ଯେପରି ଅନେକ ପିଲାଙ୍କୁ (ନିଜ ପିଲାଙ୍କ ବ୍ୟତୀତ) ପାଳି ମଣିଷ କରିଛି, ଠିକ୍ ସେହିଭଳି ରବିଭାଇଙ୍କ ବୋଉ ନିଜ ବାପାଙ୍କର ଦ୍ୱିତୀୟ ପକ୍ଷ ସ୍ତ୍ରୀ ହୋଇଥିଲେ ମଧ୍ୟ ସବୁ ପିଲାମାନଙ୍କୁ ସମାନ ସ୍ନେହ ମମତା ଦେଇ ପାଳିଥାନ୍ତି ଓ ରବିଭାଇଙ୍କର ବଡ଼ଭାଇ ମଦିନନାଙ୍କର ସମସ୍ତ ପିଲାମାନଙ୍କୁ ପାଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି। ସମାଜବାଦୀ ଆନ୍ଦୋଳନ ସହିତ ଜଡ଼ିତ ଥିବାରୁ ବହୁ ସମୟରେ ଘରୁ ବାହାରେ ରହୁଥାନ୍ତି ଓ ରବିଭାଇଙ୍କୁ ଅତ୍ୟଧିକ ସ୍ନେହ କରୁଥିବା କାରଣରୁ ଗୋଟିଏ କବିତା ବହି 'ସୁନାମଣି

କାନ୍ଦ' ନିଜ ହାତରେ ବେଶ୍ ଗୋଲ୍ ଗୋଲ୍ ଅକ୍ଷରରେ ଲେଖିଥିଲେ, ଯାହା କୌଣସି କାରଣରୁ ଛାପା ଯାଇ ପାରିନାହିଁ।

ରବିଭାଇଙ୍କ ନୂଆଦିଲ୍ଲୀସ୍ଥିତ ସରକାରୀ ବାସଗୃହ ଏକ ଶୃଙ୍ଖଳିତ ଧର୍ମଶାଳା ଥିଲା। ଯେକୌଣସି ବ୍ୟକ୍ତି ସେଠାରେ ରହିବାରେ ଅସୁବିଧା ନଥିଲା। ଲୋକସଭା ସଦସ୍ୟ ହିସାବରେ ରବିଭାଇଙ୍କୁ ବିଭିନ୍ନ ସମୟରେ ଅତୁଲ ଗ୍ରୋଭ୍ ରୋଡ୍ ଓ ମିନାବାଗ୍ ବାସଭବନ ମିଳିଥିଲା। ବୋଧହୁଏ ଅତୁଲ ଗ୍ରୋଭ୍ ରୋଡ୍‌ରେ ଥିବା ଘର ଟିକିଏ ବଡ଼ ଓ ଏଥିରେ ଗୋଟିଏ ମୁଖ୍ୟ ବାସଗୃହ, ଗୋଟିଏ ବୈଠକ ଘର ଓ ଆଉ ଗୋଟିଏ ଛୋଟ କୋଠରୀ। କିନ୍ତୁ ଏହାର ବାରଣ୍ଡା ବହୁତ ଓସାର ଥିଲା। ଥରେ ମୁଁ ଆମ କଲେଜର ପ୍ରାୟ ୨୦ଜଣ ତଥା ବ୍ରହ୍ମପୁର ମେଡିକାଲ କଲେଜର ୩୦ ଜଣ ଛାତ୍ରଛାତ୍ରୀଙ୍କୁ ନେଇ ଦିଲ୍ଲୀ ଓ ଆଗ୍ରା ଷ୍ଟଡିଟୁର୍‌ରେ ଯାଇଥିଲୁ। ଛୋଟ କୋଠରୀଟିରେ ଦୁଇ କଲେଜର ଝିଅମାନେ ରହିଲେ ଓ ପୁଅପିଲାମାନେ ବାରଣ୍ଡାରେ ବିଶ୍ରାମ ନେଇଥିଲେ। ଅନ୍ୟ କୌଣସି ଓଡ଼ିଆ ଲୋକସଭା ସଦସ୍ୟଙ୍କ ପାଖରେ ରହିବାର ସୁଯୋଗ ଆମକୁ ମିଳିନଥିଲା। ରବିଭାଇଙ୍କ ଘରେ ଭାତ ଓ ଡାଲ୍‌ମା ଖାଇ ୪ ଦିନ ପରେ ସମସ୍ତ ଛାତ୍ରଛାତ୍ରୀ ଓଡ଼ିଶା ଫେରିଲେ। ଏଠାରେ ରହିବାରେ ସାମାନ୍ୟତମ ଅସୁବିଧା ହୋଇଥିଲେ ମଧ୍ୟ ସମସ୍ତେ ବେଶ୍ ଖୁସି ଥିଲେ। ଏଥିରୁ ପ୍ରମାଣିତ ଯେ ରବିଭାଇଙ୍କର ଓଡ଼ିଶା ପ୍ରୀତି।

ନିଜ ଘର ଭଅଁରାଗଡ଼ରୁ ପ୍ରଥମ ଆନ୍ଦୋଳନର ସୂତ୍ରପାତ। ରବିଭାଇଙ୍କ ବାପା ଶ୍ରୀଯୁକ୍ତ ଘନଶ୍ୟାମ ରାୟ ପିତାମ୍ବର ମହାପାତ୍ର ଜମିଦାର ଥିବା କାରଣରୁ ଭଅଁରାଗଡ଼ ଜଙ୍ଗଲରୁ କିଛି ଅଂଶ ପ୍ରାୟ ୨୦ ଏକର ଜମି ନିଜ ସାନ ଝିଅ କଇଅପା (ରବିଭାଇଙ୍କ ଭଉଣୀ)ଙ୍କ ନାମରେ ରେଜେଷ୍ଟ୍ରି କରିଦେଲେ। ପୁନନନା (କଇଅପାଙ୍କ ସ୍ୱାମୀ) ଜଙ୍ଗଲ ସଫାକରି ଚାଷ ଆରମ୍ଭ କରିବାରୁ ପୁନନନା ତଥା ନିଜ ବାପାଙ୍କ ବିରୁଦ୍ଧରେ ଗାଁ ଲୋକଙ୍କ ସହିତ ମିଶି ଜନ ଆନ୍ଦୋଳନ ଆରମ୍ଭ କରିଥିଲେ ରବିଭାଇ ଗଛ ତଥା ଜଙ୍ଗଲ ପ୍ରତି ନିଜର ମମତ୍ୱଭାବ କାରଣରୁ। ଆଜିକାଲି ଲୋକ, ସରକାର ବା ରାଜନୈତିକ ବ୍ୟକ୍ତିଙ୍କର ଜଙ୍ଗଲ ସଫାକରି ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଏକ ପ୍ରତିଯୋଗିତା ଚାଲିଛି। ଉପରୋକ୍ତ ଅନେକ କାରଣ ତଥା ନିଜର ସଚ୍ଚୋଟ ବ୍ୟକ୍ତିତ୍ୱ, ସ୍ପଷ୍ଟବାଦିତା, ଦରଦୀ ହୃଦୟ ଓ ସଠିକ ନିଷ୍ପତ୍ତି ନେବାରେ ଦୃଢ଼ତା ରବିଭାଇଙ୍କୁ ଏକ ବିରଳ ବ୍ୟକ୍ତିତ୍ୱରେ ପରିଣତ କରିଥିଲା।

■ ■ ■

# ସମାଜବାଦୀ ଆଦର୍ଶର ଅଲିଭା ଅଗ୍ନିଶିଖା

**ଡ. ବିଭୂତି ପଟ୍ଟନାୟକ**

ଆଜିକାଲି ସମାଜବାଦ କଥା କହିଲେ ଅନେକ ତାହା ଏକ ଅତୀତର ସ୍ମୃତି ବୋଲି ଭାବି ଦୀର୍ଘଶ୍ୱାସ ପକାନ୍ତି। ଆମ ସମ୍ବିଧାନରେ ଭାରତବର୍ଷ ଏକ ଗଣତାନ୍ତ୍ରିକ, ଧର୍ମନିରପେକ୍ଷ, ସମାଜବାଦୀ, ସାଧାରଣତନ୍ତ୍ର ବୋଲି ଉଲ୍ଲେଖ ଥିଲେ ସୁଦ୍ଧା ସମାଜବାଦ ଭାରତବର୍ଷର ରାଜନୈତିକ ଅଭିଧାନର ଏକ ବାତିଲ ହୋଇଯାଇଥିବା ଶବ୍ଦ ବୋଲି ଧରି ନିଆଯାଏ। କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ମୋ ଭଳି ପ୍ରଗତିଶୀଳ ରାଜନୀତି-ସଚେତନ ଛାତ୍ରମାନଙ୍କ ପାଇଁ ଏହି ସମାଜବାଦ (Socialism) ଶବ୍ଦଟି ଥିଲା ମନ୍ତ୍ର ଭଳି; ଏଇ ଶବ୍ଦର ଯାଦୁକରୀ ଆକର୍ଷଣରେ ମୋ ଭଳି ବହୁ କଲେଜ ପଢୁଥିବା ଛାତ୍ର, ଯୁବକ ସୋସାଲିଷ୍ଟ ଆନ୍ଦୋଳନରେ ଯୋଗ ଦେଇଥିଲେ। ବ୍ରିଟିଶ୍ ଶାସନରୁ ମୁକ୍ତ ହେଲା ପରେ ଦେଶ ରାଜନୈତିକ ସ୍ୱାଧୀନତା ପାଇଥିଲା, କିନ୍ତୁ ଭାରତବର୍ଷର ସଂଖ୍ୟାଗରିଷ୍ଠ କୋଟି କୋଟି ଖଟିଖିଆ, ଚାଷୀ, ମୂଲିଆ, ଦରିଦ୍ର ଓ ମଧ୍ୟବିତ୍ତ ଲୋକଙ୍କୁ ଅର୍ଥନୈତିକ ନିରାପତ୍ତା ମିଳିନଥିଲା। ସେମାନଙ୍କ ପାଇଁ ସେତେବେଳେ ସ୍ୱାଧୀନତା ଥିଲା ଏକ ଦୁଃସ୍ୱପ୍ନ। ଅନାହାର, ଅର୍ଦ୍ଧାହାରରେ କାଳ କାଟୁଥିବା କୋଟି କଣ୍ଠରେ ସେତେବେଳେ ଉଚ୍ଚାରିତ ହେଉଥିଲା – "ଏ ଆଜାଦି ଝୁଟି ହେ, ଦେଶ୍ କି ଜନତା ଭୁକି ହେ।"

ଦେଶର ଏହି ତିନି-ଚତୁର୍ଥାଂଶ ଲୋକଙ୍କ ଆଖିରୁ ଲୁହ ପୋଛି ହସ ଫୁଟାଇବା ପାଇଁ ଧନୀ ପୁଞ୍ଜିପତି, ଶିଳ୍ପପତି, ଜମିଦାର, ସାହୁକାରମାନଙ୍କ ଶୋଷଣ ବିରୁଦ୍ଧରେ ଆପୋଷହୀନ ସଂଗ୍ରାମ ଜରୁରୀ ମନେ ହୋଇଥିଲା। ଦେଶରୁ ଅର୍ଥନୈତିକ ବୈଷମ୍ୟ, ସାମାଜିକ ଭେଦଭାବ ଦୂରକରି ଏକ ଶ୍ରେଣୀହୀନ, ଶୋଷଣହୀନ ସାମ୍ୟ ସମାଜ ପ୍ରତିଷ୍ଠା ଲାଗି ସମାଜବାଦ ଏକମାତ୍ର ରାସ୍ତା – ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଯେଉଁମାନେ ସରକାରୀ ଚାକିରି, ପାରିବାରିକ ସୁଖସ୍ୱାଚ୍ଛନ୍ଦ୍ୟ ଜଳାଞ୍ଜଳି ଦେଇ ସମାଜବାଦୀ ଆନ୍ଦୋଳନରେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ସାଥି ରବି ରାୟ ଥିଲେ ମଣି।

୧୯୫୩-୫୪ କଟକ ଓଡ଼ିଆ ବଜାର, ଯଦୁନାଥ ଭବନ ସୋସାଲିଷ୍ଟ ପାର୍ଟି ଅଫିସରେ ମୁଁ ଶୁଣିଥିଲି ଏଇ ସ୍ଲୋଗାନ –

"ଲୋହିଆ, ଅରୁଣା, ଜୟପ୍ରକାଶ
ରବି, ଶ୍ୟାମଳୀ, ଗୋବିନ୍ଦ ଦାସ"।

ରବି ରାୟଙ୍କୁ ଦେଖିବା ଆଗରୁ ମୋର ସମବୟସ୍କ ସାଥୀମାନଙ୍କ କଣ୍ଠର ଏଇ ସ୍ଲୋଗାନ ମତେ ତାଙ୍କ ପ୍ରତି ଆକର୍ଷିତ କରିଥିଲା। ଭାରତ ସ୍ୱାଧୀନତା ଆନ୍ଦୋଳନର ଶେଷପର୍ବ, ୧୯୪୨ ଅଗଷ୍ଟ ବିପ୍ଲବର ତିନି ଅଗ୍ରଣୀ ସାହସୀ ଯୋଦ୍ଧା ଡକ୍ଟର ରାମମନୋହର ଲୋହିଆ, ଅରୁଣା ଆସଫ ଅଲ୍ଲି ଏବଂ ଜୟପ୍ରକାଶ ନାରାୟଣଙ୍କ ସହିତ ଓଡ଼ିଶାର ତିନି ଯୁବ ସୋସାଲିଷ୍ଟ ରବି ରାୟ, ଶ୍ୟାମଳୀ ଲାହିଡ଼ି ଏବଂ ଗୋବିନ୍ଦ ଦାସଙ୍କ ତୁଳନା ଆମ ଆଗରେ ସେମାନଙ୍କର ବିପ୍ଲବୀ-ବ୍ୟକ୍ତିତ୍ୱର ଆଦର୍ଶ ଟେକି ଧରିଥିଲା। ବ୍ରିଟିଶ୍ ସରକାରଙ୍କୁ ଭାରତ ଛାଡ଼ ଆହ୍ୱାନ ଦେଇ ଗାନ୍ଧି, ନେହେରୁ ଆଜାଦ ପ୍ରମୁଖ ବୃଦ୍ଧ କଂଗ୍ରେସ ନେତାମାନେ କାରାରୁଦ୍ଧ ହେଲାପରେ ନିଜ ଜୀବନକୁ ବିପନ୍ନ କରି ଅଗଷ୍ଟ ଆନ୍ଦୋଳନକୁ ତେଜେଇ ରଖିଥିଲେ ତିନି ବିପ୍ଲବୀ ସୋସାଲିଷ୍ଟ ଯୁବନେତା ଲୋହିଆ, ଅରୁଣା, ଜୟପ୍ରକାଶ; ସେହିମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ରବି ରାୟ ୧୯୪୬ ମସିହାରେ ରେଭେନ୍‌ସା କଲେଜ ବାର୍ଷିକ କ୍ରୀଡ଼ା ଉତ୍ସବରେ ବ୍ରିଟିଶ୍ ୟୁନିୟନ ଜ୍ୟାକ୍ ପତାକାକୁ ପାଦରେ ଦଳି ତ୍ରିରଙ୍ଗା ଝଣ୍ଡା ଉତ୍ତୋଳନ କରିଥିଲେ। ଫଳରେ ଏହି ଦେଶପ୍ରେମୀ ଛାତ୍ରମାନଙ୍କୁ କଲେଜରୁ ବିତାଡ଼ିତ ଓ ହଷ୍ଟେଲରୁ ବହିଷ୍କାର କରାଯାଇଥିଲା। ତା'ର ପ୍ରତିବାଦରେ ଏକ ବିଶାଳ ଛାତ୍ର ଶୋଭାଯାତ୍ରାର ନେତୃତ୍ୱ ନେଇ ରବି ରାୟ କାରାବରଣ କରିଥିଲେ। ସେତେବେଳେ ସେ ଥିଲେ ରେଭେନ୍ସା କଲେଜ ତୃତୀୟବାର୍ଷିକ ଶ୍ରେଣୀ ଛାତ୍ର ଓ କଲେଜ ଦିବାଧାୟୀ ଛାତ୍ର ସଂସଦର ସମ୍ପାଦକ। କମ୍ୟୁନିଷ୍ଟ ଛାତ୍ର ସଂଘର କଲେଜ ୟୁନିୟନ, ଛାତ୍ର ୟୁନିୟନ ସଭାପତି ପଦ ପ୍ରାର୍ଥୀ ମନମୋହନ ମିଶ୍ରଙ୍କୁ ପରାସ୍ତ କରି ସେହିବର୍ଷ ସୋସାଲିଷ୍ଟ ଛାତ୍ର କଂଗ୍ରେସର ପ୍ରାର୍ଥୀ ପ୍ରଦୀପ୍ତ କିଶୋର ଦାସ ରେଭେନ୍ସା ଛାତ୍ର ୟୁନିୟନର ସଭାପତି ନିର୍ବାଚିତ ହୋଇଥିଲେ। ରେଭେନ୍ସା ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ଆରମ୍ଭ ହେବାପୂର୍ବରୁ ବ୍ରିଟିଶ୍ ୟୁନିୟନ ଜ୍ୟାକ୍‌କୁ ପାଦରେ ଦଳି ରବି ରାୟ ସରକାରୀ ଆକ୍ରୋଶର ଶିକାର ହୋଇଥିଲେ କିନ୍ତୁ ତାଙ୍କର ସେହି ଜେଲଦଣ୍ଡ ତାଙ୍କୁ ଜଣେ ସଂଗ୍ରାମୀ ଛାତ୍ରନେତାର ମାନ୍ୟତା ଆଣି ଦେଇଥିଲା। ପର ବର୍ଷ ସେ ଛାତ୍ର ସଂଘର ପ୍ରାର୍ଥୀ ଗଙ୍ଗାଧର ରଥଙ୍କୁ ହରାଇ ରେଭେନ୍ସା କଲେଜ ୟୁନିୟନ ସଭାପତି ଭାବରେ ନିର୍ବାଚିତ ହୋଇଥିଲେ।

ଛାତ୍ର ରାଜନୀତିରୁ ସେ ଯେପରି ସମାଜବାଦୀ ଆନ୍ଦୋଳନକୁ ଆସି ପାର୍ଟିର ଯୁବ ସଂଗଠନ ସମାଜବାଦୀ ଯୁବକ ସଭାର ନେତୃତ୍ୱ ନେଇଥିଲେ, ମୁଁ ସେହି ପରି ଛାତ୍ର

ସଂଗଠନ ଏବଂ ସୀମା ଆନ୍ଦୋଳନର ନେତୃତ୍ୱ ନେଇ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇଥିଲି। ସେତେବେଳେ ମୋର ଆଦର୍ଶ ଥିଲେ ରବି ରାୟ। ସୋସାଲିଷ୍ଟ ଛାତ୍ର କଂଗ୍ରେସ ଓ କମ୍ୟୁନିଷ୍ଟ ଛାତ୍ରସଂଘ ମଧ୍ୟରେ ନିର୍ବାଚନ ବେଳେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲେ ମଧ୍ୟ ଛାତ୍ରମାନଙ୍କର ସାମୂହିକ ଦାବି ହାସଲ କରିବାପାଇଁ ଛାତ୍ରକଂଗ୍ରେସ ଓ ଛାତ୍ରସଂଘ ଯେପରି ଐକ୍ୟବଦ୍ଧ ହୋଇ ସରକାରୀ ଅବିଚାର ଏବଂ ପୋଲିସ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିଥିଲେ, ୧୯୫୬ ସୀମା ଆନ୍ଦୋଳନ ବେଳେ ଆମେ ସେହିପରି ଛାତ୍ର ୟୁନିୟନ ଛାତ୍ରସଂଘ ଏକାଠି ହୋଇ ସୀମା କମିଶନ ଅବିଚାର ବିରୁଦ୍ଧରେ ସଫଳତାର ସହିତ ଆନ୍ଦୋଳନ କରିଥିଲୁ। ମୁଁ ସେତେବେଳେ ଖ୍ରୀଷ୍ଟ କଲେଜ ଛାତ୍ର ୟୁନିୟନ ସଭାପତି ଏବଂ ଉତ୍କଳ ଛାତ୍ର ୟୁନିୟନ ସମ୍ପାଦକ ଥିଲି। ସୀମା ଆନ୍ଦୋଳନକୁ ଅହିଂସା ଉପାୟରେ ପରିଚାଳନା କରିବାର ମୋ ପାଇଁ ପ୍ରେରଣାର ଉତ୍ସ ଥିଲେ ରବିରାୟ।

ତ୍ରାଭାଙ୍କୋର କୋଚିନର ପ୍ରଜା-ସୋସାଲିଷ୍ଟ ପାର୍ଟିର କଂଗ୍ରେସ ସମର୍ଥିତ ସରକାରର ଗୁଳିଚାଳନାକୁ କେନ୍ଦ୍ର କରି ପାର୍ଟିରେ ଯେଉଁ ବିଭାଜନ ହେଲା, ସେଇଟା ବ୍ୟକ୍ତିଗତ ଭାବରେ ମୋ ପାଇଁ ଥିଲା ସଂକଟର ମୁହୂର୍ତ୍ତ। ରବିବାବୁ ମତେ ଗୋଟିଏ ପୋଷ୍ଟକାର୍ଡରେ ଲେଖିଥିଲେ, ତମର ଯଦି ସମାଜବାଦୀ ଯୁବକ ସଭା ପ୍ରତି ଆନୁଗତ୍ୟ ଥାଏ, ତାହାହେଲେ ପକ୍ଷାଘାତଗ୍ରସ୍ତ ସୋସାଲିଷ୍ଟ ପାର୍ଟି ଛାଡ଼ି ଚାଲିଆସ। ମୁଁ ସେତେବେଳେ ପ୍ରଜା-ସୋସାଲିଷ୍ଟ ପାର୍ଟିର ପ୍ରାଥମିକ ସଭ୍ୟ ନଥିଲି କିନ୍ତୁ ସମାଜବାଦୀ ଯୁବକ ସଭାର ସବୁ ରାଜନୈତିକ ତାତ୍ତ୍ୱିକ ଆଲୋଚନା ସଭାରେ ନିୟମିତ ଅଂଶଗ୍ରହଣ କରୁଥିଲି। ପ୍ରକୃତରେ କିଶନ ପଟ୍ଟନାୟକଙ୍କ ହିଁ ଥିଲେ ମୋର ରାଜନୈତିକ ତତ୍ତ୍ୱଗୁରୁ ଏବଂ ଗାଇଡ୍। ମୁଁ କୌଣସି ଦିନ ଗାନ୍ଧିବାଦୀ ସୋସାଲିଷ୍ଟ ନଥିଲି, ଥିଲି ମାର୍କ୍ସପନ୍ଥୀ ସମାଜବାଦୀ। ସେ ଦୃଷ୍ଟିରୁ ଡକ୍ଟର ଲୋହିଆଙ୍କ ଅପେକ୍ଷା ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ରାଜନୈତିକ ଆଦର୍ଶ ପ୍ରତି ମୋର ଆନୁଗତ୍ୟ ଥିଲା ଅଧିକ। ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଅନିଚ୍ଛା ସତ୍ତ୍ୱେ ଡକ୍ଟର ଲୋହିଆ ଯେପରି ସୋସାଲିଷ୍ଟ ପାର୍ଟି ସହ ଆଚାର୍ଯ୍ୟ କୃପାଳିନୀଙ୍କ କୃଷକ ମଜଦୁର ପାର୍ଟିର ମିଶ୍ରଣ ପାଇଁ ଆଗ୍ରହୀ ହୋଇ ଉଠିଥିଲେ, ତାହା ମୋ ପାଇଁ ଉତ୍ସାହଜନକ ନଥିଲା। ଦୁଇ ଦଳର ମିଶ୍ରଣ ପରେ ଗଠିତ ହୋଇଥିଲା ପ୍ରଜା-ସୋସାଲିଷ୍ଟ ପାର୍ଟି। ନୂତନ ପାର୍ଟିର ସଭାପତି ହେଲେ ଆଚାର୍ଯ୍ୟ କୃପାଳିନୀ ଆଉ ସାଧାରଣ ସମ୍ପାଦକ ଥିଲେ ଡକ୍ଟର ଲୋହିଆ। ତ୍ରାଭାଙ୍କୋର କୋଚିନର ମୁଖ୍ୟମନ୍ତ୍ରୀ ଥିଲେ ଗାନ୍ଧିବାଦୀ ସୋସାଲିଷ୍ଟ ପଟ୍ଟମଥାନୁ ପିଲ୍ଲାଇ। ବିଚ୍ଛିନ୍ନତାବାଦୀ କଂଗ୍ରେସ ସମର୍ଥକ ହିଂସ୍ର ଶୋଭାଯାତ୍ରା ଉପରେ ଗାନ୍ଧିବାଦୀ ସୋସାଲିଷ୍ଟ ମୁଖ୍ୟମନ୍ତ୍ରୀ ଯଦି ଗୁଳିଚାଳନା କରିବାକୁ ପୋଲିସକୁ ନିର୍ଦ୍ଦେଶ

ଦେଇଥାଆନ୍ତି ଏବଂ ଡକ୍ଟର ଲୋହିଆଙ୍କ ନିର୍ଦ୍ଦେଶ ମାନି ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ନଥାନ୍ତି, ସେଥିପାଇଁ ସୋସାଲିଷ୍ଟ ପାର୍ଟି ଓ କୃଷକ ମଜଦୁର ପାର୍ଟିର ମିଶ୍ରଣ ଅନେକାଂଶରେ ଦାୟୀ ବୋଲି ମୋର ଧାରଣା।

ଏକ ସୋସାଲିଷ୍ଟ ସରକାର ହିଂସ୍ର ବିକ୍ଷୋଭକାରୀମାନଙ୍କ ଉପରେ ଗୁଳିଚାଳନା କରିବା ଉଚିତ କି ଅନୁଚିତ ସେ ବିଷୟରେ ଆଲୋଚନା ପାଇଁ ନାଗପୁରରେ ପ୍ରଜାସୋସାଲିଷ୍ଟ ପାର୍ଟିର ବିଶେଷ ଅଧିବେଶନ ବସିଲା। ସଂଖ୍ୟାଧିକ ମତରେ ଲୋହିଆଙ୍କ ପ୍ରସ୍ତାବ କାଟ ଖାଇଲା। ଏକ ଗଣତାନ୍ତ୍ରିକ ଦଳରେ ସଂଖ୍ୟାଗରିଷ୍ଠ ମତକୁ ଗ୍ରହଣ କରିବା ଥିଲା ସଂଖ୍ୟାଲଘୁ ଗୋଷ୍ଠୀର କର୍ତ୍ତବ୍ୟ। ଯେଉଁମାନେ ଡକ୍ଟର ଲୋହିଆଙ୍କ ପ୍ରସ୍ତାବ ବିରୁଦ୍ଧରେ ଭୋଟ ଦେଇଥିଲେ, ସେମାନଙ୍କ ମଧ୍ୟ ଅଧିକାଂଶ ଥିଲେ ତାଙ୍କର ଦୃଢ଼ ସମର୍ଥକ। ତାଙ୍କ ପ୍ରସ୍ତାବ ସପକ୍ଷରେ ସାରଙ୍ଗଧର ଦାସଙ୍କ ଭଳି ଯେଉଁମାନେ ଭୋଟ ଦେଇଥିଲେ ସେମାନେ କେବେ ଆଶା କରି ନଥିଲେ ଯେ ଏଇ ପ୍ରସଙ୍ଗକୁ ଆଳକରି ସେ ଯେଉଁ ପ୍ରଜାସୋଲିଷ୍ଟ ପାର୍ଟିକୁ ଗଢ଼ିଥିଲେ, ତାକୁ ଛାଡ଼ି ଚାଲିଯିବେ। ପୁଣି ପାର୍ଟିର ନବ ନିର୍ବାଚିତ ସଭାପତି ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଡକ୍ଟର ଲୋହିଆ ଯେଉଁମାନଙ୍କ ପାର୍ଟି କାର୍ଯ୍ୟକାରୀ କମିଟିରେ ନେବାକୁ ଚାହୁଁଥିଲେ ସେମାନଙ୍କୁ ନେଇଥିଲେ, ଯେଉଁମାନଙ୍କୁ ନେବାକୁ ଚାହୁଁ ନଥିଲେ ତାଙ୍କୁ ପାର୍ଟି କାର୍ଯ୍ୟକାରୀ କମିଟିରୁ ବାଦ୍ ଦେଇଥିଲେ। ଏହାସତ୍ତ୍ୱେ ଡକ୍ଟର ଲୋହିଆ ଏବଂ ତାଙ୍କର ସହଯୋଗୀମାନେ ପ୍ରଜାସୋସାଲିଷ୍ଟି ପାର୍ଟିକୁ ଏକ ପକ୍ଷାଘାତଗ୍ରସ୍ତ ସୋସାଲିଷ୍ଟ ପାର୍ଟି କହି ଦଳ ଛାଡ଼ି ଅନ୍ୟ ଏକ ସୋସାଲିଷ୍ଟ ପାର୍ଟି ଗଠନ କଲେ। ସୋସାଲିଷ୍ଟ ପାର୍ଟିରେ ଏ ବିଭାଜନ ଯେତେଟା ଜାତିଗତ ନଥିଲା, ତା'ଠାରୁ ବେଶି ଥିଲା ବ୍ୟକ୍ତିଗତ।

ବ୍ୟକ୍ତିଗତ ଭାବରେ ସାଥି ରବି ରାୟ ଏବଂ କିଶନ ପଟ୍ଟନାୟକ ପାର୍ଟି ଛାଡ଼ି ଚାଲିଗଲା ପରେ ପ୍ରଜାସୋସାଲିଷ୍ଟ ପାର୍ଟିରେ ମୁଁ ଏକ ପ୍ରକାର ଏକୁଟିଆ ହୋଇଯାଇଥିଲି। ସାରଙ୍ଗଧର ଦାସ ଯଦି ସେତେବେଳେ 'କୃଷକ' ପ୍ରେସ୍‌ରେ ଆସି ରହୁ ନଥାନ୍ତେ, ମୁଁ ରାଜନୀତ ଛାଡ଼ି ସାହିତ୍ୟରେ ମନୋନିବେଶ କରିଥାଆନ୍ତି। କାରଣ ଯେଉଁ ଲୋହିଆ, ଅରୁଣା, ଜୟପ୍ରକାଶ ତ୍ରିମୂର୍ତ୍ତି ମୋ ଭଳି ବହୁ ତରୁଣ ଛାତ୍ରଙ୍କୁ ସମାଜବାଦୀ ଆନ୍ଦୋଳନରେ ଝାସଦେବା ପାଇଁ ଅନୁପ୍ରାଣୀତ କରିଥିଲେ, ଜୟପ୍ରକାଶଙ୍କ ରାଜନୈତିକ ସନ୍ନ୍ୟାସ, ଅରୁଣାଙ୍କର ପାର୍ଟି ପରିତ୍ୟାଗ ଏବଂ ଲୋହିଆଙ୍କ ନୂତନ ଦଳ ଗଠନ ପରେ ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନ ତା'ର ବେଗ ହରାଇଥିଲା। ଫଳରେ ଅଶୋକ ମେହେଟ୍ଟା, ଚନ୍ଦ୍ରଶେଖର ଏବଂ ସୁରେନ୍ଦ୍ର ଦ୍ୱିବେଦୀ ପ୍ରମୁଖ କଂଗ୍ରେସରେ ଯୋଗଦେଲେ।

ଡକ୍ଟର ଲୋହିଆ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କର ନବ ଗଠିତ ସୋସାଲିଷ୍ଟ ପାର୍ଟି ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନକୁ ଏକ ପ୍ରଧାନ କଂଗ୍ରେସ-ବିରୋଧୀ ରାଜନୈତିକ ଶକ୍ତି ଭାବରେ ଠିଆ କରିଥିଲେ। ରବି ରାୟ ଥିଲେ ଲୋହିଆପନ୍ଥୀ ସୋସାଲିଷ୍ଟ ଆନ୍ଦୋଳନର ଅନ୍ୟତମ ଶକ୍ତିସ୍ତମ୍ଭ। ଦେଶରେ ଶ୍ରେଣୀହୀନ, ଶୋଷଣହୀନ, ସମାଜବାଦୀ ସମାଜ ଗଠନ ପାଇଁ ତାଙ୍କର ଆବେଗ, ଉତ୍କଣ୍ଠା ଏବଂ ଆଗ୍ରହ ତାଙ୍କୁ ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନର ଜଣେ ଶିଖର ପୁରୁଷ ଭାବରେ ପ୍ରତିଷ୍ଠିତ କରିଥିଲା। କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଏବଂ ଲୋକସଭାର ବାଚସ୍ପତି ଭାବରେ ତାଙ୍କର ଦରିଦ୍ର-ଦରଦି, ନିର୍ଭୀକ ଭାବମୂର୍ତ୍ତି ଯୋଗୁଁ ସେ ଭାରତବର୍ଷର ଜନମାନସରେ ଅମ୍ଳାନ ଦ୍ୟୁତିରେ ଝଲସିତ ହେଉଥିଲେ। ଦେଶରେ ଏକ ଶ୍ରେଣୀହୀନ ସମାଜବାଦୀ ସମାଜ ପ୍ରତିଷ୍ଠା ଲକ୍ଷ୍ୟରେ ସେ ଶାସନ କ୍ଷମତା ଦଖଲ କରିବାପାଇଁ ଲଢ଼େଇ କରିଛନ୍ତି; କିନ୍ତୁ ଶାସନ କ୍ଷମତା ହାସଲ କରିବାପାଇଁ ସମାଜବାଦୀ ଆଦର୍ଶ ସହିତ ସାଲିସ କରିବାକୁ ଯାହିଁନାହାନ୍ତି। ସେଥିପାଇଁ ତାଙ୍କର ସହଯୋଦ୍ଧା ଜର୍ଜ ଫର୍ଣ୍ଣାଡ଼ିଜ୍, ଶରଦ ଯାଦବ ପ୍ରମୁଖ ବି.ଜେ.ପି ନେତୃତ୍ୱରେ ଗଠିତ ଏନ୍.ଡ଼ି.ଏ. ସରକାରରେ ଭାଗୀଦାର ହେବାପାଇଁ ନିର୍ବାଚନ ଲଢୁଥିବାବେଳେ ସେ ନିର୍ବାଚନ ରାଜନୀତିରୁ ଦୂରରେ ରହିଥିଲେ। କିନ୍ତୁ ସମାଜବାଦୀ ଆଦର୍ଶରୁ କେବେ ବିଚ୍ୟୁତ ହୋଇ ନଥିଲେ କିମ୍ବା ହୋଇନାହାନ୍ତି। ସବୁ ଦୀପ ଲିଭି ଯାଉଥିବା ବେଳେ ସେ ଆମ ପାଇଁ ସମାଜବାଦୀ ଆଦର୍ଶର ଅଲିଭା ଅଗ୍ନିଶିଖା, ବାର୍ଦ୍ଧକ୍ୟ ଏହି ଶିଖାର ଜ୍ୟୋତିକୁ ମଳିନ କରିପାରି ନାହିଁ।

▮▮▮

# ଅର୍ଦ୍ଧଶତାବ୍ଦୀର ସମ୍ପର୍କ

**ଶ୍ରୀ ବିଶ୍ୱନାଥ ଧଳ**

୧୯୬୨ ମସିହା, ସେ ବର୍ଷ ମୁଁ କଟକର ଖ୍ରୀଷ୍ଟ ମହାବିଦ୍ୟାଳୟରେ ପ୍ରାକ୍ ବିଶ୍ୱବିଦ୍ୟାଳୟରେ କଳା ବିଭାଗରେ ନାମ ଲେଖାଇଥାଏ। ବକ୍ସିବଜାର ପୋଲିସ ଲାଇନ୍‌ରେ ମୋର ଭଉଣୀ ଘର ରହି ପଢୁଥାଏ। ସେ ବର୍ଷ ଚୀନ୍ ଭାରତ ଉପରେ ଅତର୍କିତ ଆକ୍ରମଣ କରି ନେଫା ଓ ଲାଦାଖର ବହୁ ଅଞ୍ଚଳ ଦଖଲ କରିନେଲା। ଭାରତୀୟ ସେନା ଅତି ଦୟନୀୟ ଭାବରେ ଚୀନା ସେନାଦ୍ୱାରା ପରାସ୍ତ ହେଲେ। ସେ ବର୍ଷ କଟକର ନାରୀସଂଘ ସଦନ ସମ୍ମୁଖ ପଡ଼ିଆରେ ୧୯୪୨ ଅଗଷ୍ଟ ବିପ୍ଳବର ମହାରଥୀ ଡଃ. ରାମମନୋହର ଲୋହିଆଙ୍କର ଏକ ସଭା ହେବ ବୋଲି ଜାଣି ମୁଁ ସେ ସଭାକୁ ଯୋଗଦେବାକୁ ଯାଇଥିଲି।

ମୋର ଘର ଭାରତର ସମାଜବାଦୀ ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଲୋକସଭା ନିର୍ବାଚନ ମଣ୍ଡଳୀ ହୋଇଥିବାରୁ ମୁଁ ପିଲାଦିନୁ ସମାଜବାଦୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲି। ଡଃ. ଲୋହିଆଙ୍କ ଭାଷଣ ଶୁଣିଲା ପରେ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଲି। ସେହି ସଭାରେ ମୁଁ ପ୍ରଥମେ ରବି ରାୟଙ୍କୁ ସଭାମଞ୍ଚରେ ଦେଖିଲି ଓ ତାଙ୍କର ଭାଷଣ ମୋର ହୃଦୟକୁ ସ୍ପର୍ଶ କରିଥିଲା। ମାତ୍ର ତାଙ୍କୁ ସାକ୍ଷାତ କରିବାକୁ ଇଚ୍ଛା ଥିଲେ ମଧ୍ୟ ସେ ସୁଯୋଗ ପାଇ ନଥିଲି। ୧୯୬୩ ମସିହାରେ ମୁଁ ପ୍ରଥମ ବାର୍ଷିକ ଡିଗ୍ରୀ ପଢ଼ିବା ପାଇଁ ରେଭେନ୍ସା କଲେଜରେ ନାମ ଲେଖାଇଲି। ବୌଦ୍ଧ ଅଞ୍ଚଳର ଶ୍ରୀ ଶଙ୍କର ପ୍ରସାଦ ଅଗ୍ରୱାଲ ମୋର ସହପାଠୀ ଥିଲେ। ଟିକରପଡ଼ା ଯୋଜନା ବିରୁଦ୍ଧରେ ତାଙ୍କ ଅଞ୍ଚଳରେ ଜନଆନ୍ଦୋଳନ ହେଉଥାଏ। ଶଙ୍କର କିଛି ପ୍ରଚାରପତ୍ର ସହ ରବି ରାୟଙ୍କୁ ଭେଟିବାକୁ ଯିବା ସମୟରେ ମୋତେ ଡାକିଲେ। ମୁଁ ତାଙ୍କ ସହ ଯାଇ ରେଭେନ୍ସା କଲେଜ ସମ୍ମୁଖରେ ଥିବା କଲେଜ କ୍ୟାବିନ୍‌ରେ ରବି ରାୟଙ୍କୁ ଭେଟିଲୁ। ତାଙ୍କ ସହିତ ବହୁତ ଆଲୋଚନା ହେଲା। ରବିବାବୁ ସେତେବେଳେ କଟକ ରେଲଷ୍ଟେସନ ନିକଟ ପାଟରା ସାହିର ଭାରତୀ ଭବନରେ ରହୁଥିଲେ। ଭାରତୀ ଭବନ ତାଙ୍କ ସାଙ୍ଗ ଶ୍ରୀ ନରେନ୍ଦ୍ର ଜେନାଙ୍କ ଭଡ଼ାଘର ଥିଲା। ମୋର କ୍ଲାସ୍ ସରିଲା ପରେ ମୁଁ ରବିବାବୁଙ୍କ ପାଖକୁ ପ୍ରାୟ

ଡକ୍ଟର ଲୋହିଆ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କର ନବ ଗଠିତ ସୋସାଲିଷ୍ଟ ପାର୍ଟି ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନକୁ ଏକ ପ୍ରଧାନ କଂଗ୍ରେସ-ବିରୋଧୀ ରାଜନୈତିକ ଶକ୍ତି ଭାବରେ ଠିଆ କରିଥିଲେ। ରବି ରାୟ ଥିଲେ ଲୋହିଆପନ୍ଥୀ ସୋସାଲିଷ୍ଟ ଆନ୍ଦୋଳନର ଅନ୍ୟତମ ଶକ୍ତିସ୍ତମ୍ଭ। ଦେଶରେ ଶ୍ରେଣୀହୀନ, ଶୋଷଣହୀନ, ସମାଜବାଦୀ ସମାଜ ଗଠନ ପାଇଁ ତାଙ୍କର ଆବେଗ, ଉତ୍କଣ୍ଠା ଏବଂ ଆଗ୍ରହ ତାଙ୍କୁ ଭାରତବର୍ଷରେ ସମାଜବାଦୀ ଆନ୍ଦୋଳନର ଜଣେ ଶିଖର ପୁରୁଷ ଭାବରେ ପ୍ରତିଷ୍ଠିତ କରିଥିଲା। କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଏବଂ ଲୋକସଭାର ବାଚସ୍ପତି ଭାବରେ ତାଙ୍କର ଦରିଦ୍ର-ଦରଦି, ନିର୍ଭୀକ ଭାବମୂର୍ତ୍ତି ଯୋଗୁଁ ସେ ଭାରତବର୍ଷର ଜନମାନସରେ ଅମ୍ଳାନ ଦ୍ୟୁତିରେ ଝଲସିତ ହେଉଥିଲେ। ଦେଶରେ ଏକ ଶ୍ରେଣୀହୀନ ସମାଜବାଦୀ ସମାଜ ପ୍ରତିଷ୍ଠା ଲକ୍ଷ୍ୟରେ ସେ ଶାସନ କ୍ଷମତା ଦଖଲ କରିବାପାଇଁ ଲଢ଼େଇ କରିଛନ୍ତି; କିନ୍ତୁ ଶାସନ କ୍ଷମତା ହାସଲ କରିବାପାଇଁ ସମାଜବାଦୀ ଆଦର୍ଶ ସହିତ ସାଲିସ କରିବାକୁ ଯାହିଁନାହାନ୍ତି। ସେଥିପାଇଁ ତାଙ୍କର ସହଯୋଦ୍ଧା ଜର୍ଜ ଫର୍ଣ୍ଣାଣ୍ଡିଜ୍, ଶରଦ ଯାଦବ ପ୍ରମୁଖ ବି.ଜେ.ପି ନେତୃତ୍ୱରେ ଗଠିତ ଏନ୍.ଡ଼ି.ଏ. ସରକାରରେ ଭାଗୀଦାର ହେବାପାଇଁ ନିର୍ବାଚନ ଲଢୁଥିବାବେଳେ ସେ ନିର୍ବାଚନ ରାଜନୀତିରୁ ଦୂରରେ ରହିଥିଲେ। କିନ୍ତୁ ସମାଜବାଦୀ ଆଦର୍ଶରୁ କେବେ ବିଚ୍ୟୁତ ହୋଇ ନଥିଲେ କିମ୍ବା ହୋଇନାହାନ୍ତି। ସବୁ ଦୀପ ଲିଭି ଯାଇଥିବା ବେଳେ ସେ ଆମ ପାଇଁ ସମାଜବାଦୀ ଆଦର୍ଶର ଅଲିଭା ଅଗ୍ନିଶିଖା, ବାର୍ଦ୍ଧକ୍ୟ ଏହି ଶିଖାର ଜ୍ୟୋତିକୁ ମଳିନ କରିପାରି ନାହିଁ।

■■■

# ଅର୍ଦ୍ଧଶତାବ୍ଦୀର ସମ୍ପର୍କ

**ଶ୍ରୀ ବିଶ୍ୱନାଥ ଧଳ**

୧୯୬୨ ମସିହା, ସେ ବର୍ଷ ମୁଁ କଟକର ଖ୍ରୀଷ୍ଟ ମହାବିଦ୍ୟାଳୟରେ ପ୍ରାକ୍ ବିଶ୍ୱବିଦ୍ୟାଳୟରେ କଳା ବିଭାଗରେ ନାମ ଲେଖାଇଥାଏ। ବକ୍ସିବଜାର ପୋଲିସ ଲାଇନ୍‌ରେ ମୋର ଭଉଣୀ ଘର ରହି ପଢୁଥାଏ। ସେ ବର୍ଷ ଚୀନ୍ ଭାରତ ଉପରେ ଅତିର୍କିତ ଆକ୍ରମଣ କରି ନେଫା ଓ ଲାଦାଖର ବହୁ ଅଞ୍ଚଳ ଦଖଲ କରିନେଲା। ଭାରତୀୟ ସେନା ଅତି ଦୟନୀୟ ଭାବରେ ଚୀନା ସେନାଦ୍ୱାରା ପରାସ୍ତ ହେଲେ। ସେ ବର୍ଷ କଟକର ନାରୀସଂଘ ସଦନ ସମ୍ମୁଖ ପଡ଼ିଆରେ ୧୯୪୨ ଅଗଷ୍ଟ ବିପ୍ଳବର ମହାରଥୀ ଡଃ. ରାମମନୋହର ଲୋହିଆଙ୍କର ଏକ ସଭା ହେବ ବୋଲି ଜାଣି ମୁଁ ସେ ସଭାକୁ ଯୋଗଦେବାକୁ ଯାଇଥିଲି।

ମୋର ଘର ଭାରତର ସମାଜବାଦୀ ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଲୋକସଭା ନିର୍ବାଚନ ମଣ୍ଡଳୀ ହୋଇଥିବାରୁ ମୁଁ ପିଲାଦିନୁ ସମାଜବାଦୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲି। ଡଃ. ଲୋହିଆଙ୍କ ଭାଷଣ ଶୁଣିଲା ପରେ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଲି। ସେହି ସଭାରେ ମୁଁ ପ୍ରଥମେ ରବି ରାୟଙ୍କୁ ସଭାମଞ୍ଚରେ ଦେଖିଲି ଓ ତାଙ୍କର ଭାଷଣ ମୋର ହୃଦୟକୁ ସ୍ପର୍ଶ କରିଥିଲା। ମାତ୍ର ତାଙ୍କୁ ସାକ୍ଷାତ କରିବାକୁ ଇଚ୍ଛା ଥିଲେ ମଧ୍ୟ ସେ ସୁଯୋଗ ପାଇ ନଥିଲି। ୧୯୬୩ ମସିହାରେ ମୁଁ ପ୍ରଥମ ବାର୍ଷିକ ଡିଗ୍ରୀ ପଢ଼ିବା ପାଇଁ ରେଭେନ୍ସା କଲେଜରେ ନାମ ଲେଖାଇଲି। ବୌଦ୍ଧ ଅଞ୍ଚଳର ଶ୍ରୀ ଶଙ୍କର ପ୍ରସାଦ ଅଗ୍ରୱାଲ ମୋର ସହପାଠୀ ଥିଲେ। ଟିକରପଡ଼ା ଯୋଜନା ବିରୁଦ୍ଧରେ ତାଙ୍କ ଅଞ୍ଚଳରେ ଜନଆନ୍ଦୋଳନ ହେଉଥାଏ। ଶଙ୍କର କିଛି ପ୍ରଚାରପତ୍ର ସହ ରବି ରାୟଙ୍କୁ ଭେଟିବାକୁ ଯିବା ସମୟରେ ମୋତେ ଡାକିଲେ। ମୁଁ ତାଙ୍କ ସହ ଯାଇ ରେଭେନ୍ସା କଲେଜ ସମ୍ମୁଖରେ ଥିବା କଲେଜ କ୍ୟାବିନ୍‌ରେ ରବି ରାୟଙ୍କୁ ଭେଟିଲୁ। ତାଙ୍କ ସହିତ ବହୁତ ଆଲୋଚନା ହେଲା। ରବିବାବୁ ସେତେବେଳେ କଟକ ରେଳଷ୍ଟେସନ ନିକଟ ପାଟରା ସାହିର ଭାରତୀ ଭବନରେ ରହୁଥିଲେ। ଭାରତୀ ଭବନ ତାଙ୍କ ସାଙ୍ଗ ଶ୍ରୀ ନରେନ୍ଦ୍ର ଜେନାଙ୍କ ଭଡ଼ାଘର ଥିଲା। ମୋର କ୍ଲାସ୍ ସରିଲା ପରେ ମୁଁ ରବିବାବୁଙ୍କ ପାଖକୁ ପ୍ରାୟ

ଯାଉଥିଲି। ଦେଶର ବୈଦେଶିକ ନୀତି, ଶିକ୍ଷା ନୀତି, ଭାଷା ନୀତି ଓ ଅନ୍ୟାନ୍ୟ ସଦ୍ୟ ସମସ୍ୟା ଉପରେ ଆଲୋଚନା ତାଙ୍କ ସହ ହେଉଥିଲା। ସମୟକ୍ରମେ ମୁଁ ତାଙ୍କର ଉତ୍ତମ ବ୍ୟବହାର ଯୋଗୁ ତାଙ୍କ ପ୍ରତି ଆକୃଷ୍ଟ ହୋଇ ୧୯୬୪ ମସିହାରେ ସଂଯୁକ୍ତ ସୋସିଆଲିଷ୍ଟ ପାର୍ଟିରେ ତାଙ୍କର ପାର୍ଟିଖାତାରେ ସଭ୍ୟ ହେଲି। ଏଇ ସମୟରେ ଡଃ. ଲୋହିଆ "କଂଗ୍ରେସ ହଟାଓ ଦେଶ ବଞ୍ଚାଅ" ଆହ୍ୱାନ ଦେଲେ। ରବି ରାୟ ମୋତେ ଭୁବନେଶ୍ୱରରେ ଏକ ସଭାରେ ଯୋଗଦେବାକୁ ଡାକିଲେ। ଓଡ଼ିଶାର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ସେ ସଭାରେ ମୁଖ୍ୟବକ୍ତା ଥିଲେ। ସେ ସଭାରେ ରବି ରାୟ ସଭାପତିତ୍ୱ କରିଥିଲେ। ୧୯୬୬ ମସିହାରେ ମୁଁ ବି.ଏ. ପରୀକ୍ଷା ଦେଇଥାଏ। ରବିବାବୁ ମୋତେ ଜାତୀୟ ଛାତ୍ର ଆନ୍ଦୋଳନରେ ଯୋଗ ଦେବାପାଇଁ ଦିଲ୍ଲୀ ପଠାଇଲେ। ମୋ ସହ ପୁରୀର ବାବାଜୀ ମହାପାତ୍ର, ବରପାଲିର ସିଂହନାଦ ପ୍ରଧାନ, ଭଦ୍ରକ ସଚ୍ଚିଦାନନ୍ଦ ମହାନ୍ତି ଯାଇଥିଲେ। ସେଠାରେ ଆମ୍ଭେମାନେ ଶ୍ରୀ କିଷାନ ପଟ୍ଟନାୟକଙ୍କ (ଲୋକସଭା ସଦସ୍ୟ) କ୍ୱାଟରରେ ରହିଲୁ। ମାତ୍ର ସଚ୍ଚିଦାନନ୍ଦ ମହାନ୍ତିଙ୍କ ବ୍ୟତୀତ ଆମ୍ଭମାନଙ୍କୁ ଦିଲ୍ଲୀ ପୋଲିସ ଗିରଫ କରି ତିହାର କେନ୍ଦ୍ର ଜେଲ୍‌ରେ ବନ୍ଦୀ ଭାବେ ରଖିଲା। ସେଠାରେ ଡଃ. ଲୋହିଆ, ରାଜନାରାୟଣ, ମଣିରାମ ବାଗ୍ରୀ, ଜନେଶ୍ୱର ମିଶ୍ର ଆଦି ନେତା ଆମ ସହ ଜେଲ୍‌ରେ ଥିଲେ। ମାସେ ଜେଲ୍‌ରେ ରହିଲା ପରେ ମୁଁ ବିନା ଦୋଷରେ ଜେଲ୍‌ରୁ ମୁକ୍ତ ହେଲି ଏବଂ ଓଡ଼ିଶା ଫେରି ପଟ୍ଟାମୁଣ୍ଡାଇରେ ପ୍ରଜାସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀ ଶ୍ରୀ ବିଶ୍ୱନାଥ ମଳିକଙ୍କ ପାଇଁ ଭୋଟ ପ୍ରଚାର ରବି ରାୟଙ୍କ ନିର୍ଦ୍ଦେଶରେ କଲି। ଓଡ଼ିଶାକୁ କଂଗ୍ରେସ ଦଳ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଭୋଟ ଲଢ଼ି ଅତି ଶୋଚନୀୟ ଭାବେ ପରାସ୍ତ ହେଲା। ଆମ ଦଳରୁ ଗଣନାଥ ପ୍ରଧାନ ଓ ନାରାୟଣ ସାହୁ ୧୯୬୭ ମସିହାରେ ବିଧାନସଭାକୁ ନିର୍ବାଚିତ ହୋଇ ଆସିଲେ ଓ ଆମ ଦଳ ସମର୍ଥନରେ ସ୍ୱାଧୀନ ପ୍ରାର୍ଥୀ ଭାବରେ ଶ୍ରୀ ସୁରେନ୍ଦ୍ର ପ୍ରଧାନ ମଧ ବିଧାନସଭାକୁ ନିର୍ବାଚିତ ହୋଇ ଆସିଲେ। ସ୍ୱତନ୍ତ୍ର ଓ ଜନକଂଗ୍ରେସର ମିଳିତ ସରକାର ହେଲା। ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଶ୍ରୀ ରବି ରାୟ ସଂଯୁକ୍ତ ସମାଜବାଦୀ ଦଳର ପ୍ରାର୍ଥୀ ହିସାବରେ କଂଗ୍ରେସ ପ୍ରାର୍ଥୀ ଶ୍ରୀ ବିଭୁଧେନ୍ଦ୍ର ମିଶ୍ରଙ୍କୁ ଲକ୍ଷାଧିକ ଭୋଟରେ ହରାଇ ଲୋକସଭାକୁ ନିର୍ବାଚିତ ହେଲେ।

ଡଃ. ଲୋହିଆ ଉତ୍ତର ପ୍ରଦେଶର ଫରୁକାବାଦ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହେଲେ। ସେଥର ଆମ ଦଳ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ୨୩ ଜଣ ଲୋକସଭା ସଦସ୍ୟ ଥିଲେ। ଶ୍ରୀ ମଧୁ ଲିମାୟେ ଲୋକସଭାରେ ସଂସଦୀୟ ଦଳର ନେତା ନିର୍ବାଚିତ ହେଲେ, ଶ୍ରୀ ରବି ରାୟ ଉପନେତା ନିର୍ବାଚିତ ହେଲେ। ୧୯୬୭

ଅକ୍ଟୋବର ୧୨ ତାରିଖ ଦିନ ଡଃ. ଲୋହିଆଙ୍କର ମୃତ୍ୟୁ ଦଳକୁ ବହୁତ ଆଘାତ ଦେଇଥିଲା। ରବି ରାୟ ପାର୍ଲାମେଣ୍ଟରେ ଭଲ କରିବା ହେତୁ ତାଙ୍କୁ ପରେ ସଂସଦୀୟ ଦଳର ନେତା ନିର୍ବାଚିତ କରାଗଲା।

୧୯୬୭ ନିର୍ବାଚନ ପରେ ପଟ୍ଟାମୁଣ୍ଡାଇ ନିର୍ବାଚନ ମଣ୍ଡଳୀରେ ସଂଯୁକ୍ତ ସମାଜବାଦୀ ଦଳର ସଂଗଠନ କାର୍ଯ୍ୟ ଆରମ୍ଭ କରି ଶ୍ରୀ ରବି ରାୟ ବହୁଥର ପଟ୍ଟାମୁଣ୍ଡାଇ ଯାଇ ସଂଗଠନରେ ସାହାଯ୍ୟ କରିବା ଫଳରେ ୧୯୭୦ ମସିହାରେ ପଟ୍ଟାମୁଣ୍ଡାଇ ବ୍ଲକ୍‌ରେ ୩ ଜଣ ସରପଞ୍ଚ ପାର୍ଟି ତରଫରୁ ନିର୍ବାଚିତ ହୋଇ ଆସିଲେ। ୧୯୬୭ ମସିହାରେ ପଟ୍ଟାମୁଣ୍ଡାଇ ଅଞ୍ଚଳରେ ଏକ ଭୟଙ୍କର ବାତ୍ୟା ହୋଇଥିଲା। ରବି ରାୟ ବାତ୍ୟା ଅଞ୍ଚଳ ଗସ୍ତ କରି ବାତ୍ୟାର ଭୟାବହତା ବିଷୟରେ ସରକାରଙ୍କଠାରେ ଉପସ୍ଥାପିତ କରିଥିଲେ।

୧୯୭୧ ମସିହାରେ ପାର୍ଲାମେଣ୍ଟ ନିର୍ବାଚନରେ ରବିବାବୁ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳୀରୁ ପୁଣି ଲଢ଼ି ହାରିଗଲେ। ସେ ନିର୍ବାଚନରେ ପ୍ରଚାର ପାଇଁ ଡଃ ବାସୁଦେବ ପାତ୍ରଙ୍କ ନେତୃତ୍ୱରେ ବହୁକର୍ମୀ ପୁରୀ ଆସି ନିର୍ବାଚନ କାର୍ଯ୍ୟରେ ଯୋଗ ଦେଇଥିଲେ। ନିର୍ବାଚନ ହାରିବା ପରେ ରବି ବାବୁ 'ସମତା' ନାମକ ଏକ ମାସିକ ପତ୍ରିକାର ସମ୍ପାଦନା କରିଥିଲେ। ମୋତେ ତା'ର ପରିଚାଳନା ଦାୟିତ୍ୱ ଦେଲେ। ମୁଁ ସରପଞ୍ଚ ଭାବେ ନିର୍ବାଚିତ ହୋଇଥିବାରୁ ଅଳ୍ପଦିନ ପରେ ସେଥିରୁ ବିଦାୟ ନେଲି ଓ ଶ୍ରୀ ଚିତ୍ତରଞ୍ଜନ ମହାନ୍ତିଙ୍କୁ ସେ ଦାୟିତ୍ୱ ଦିଆଗଲା। ୧୯୭୪ ମସିହାରେ ଉତ୍କଳ କଂଗ୍ରେସ ନେତା ଶ୍ରୀ ବିଜୁ ପଟ୍ଟନାୟକ ଓ ସ୍ୱତନ୍ତ୍ର ପାର୍ଟି ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶ୍ରୀ ରବି ରାୟଙ୍କ ନେତୃତ୍ୱରେ ପ୍ରଗତି ଦଳ ନାମକ ଏକ ରାଜନୈତିକ ମଞ୍ଚ ଗଠନ କରାଗଲା। ସେ ବର୍ଷ ବିଧାନସଭା ନିର୍ବାଚନରେ ପ୍ରଗତି ଦଳ ଅଳ୍ପସଂଖ୍ୟା ବ୍ୟବଧାନରେ ସରକାର ଗଠନ କରିପାରିଲା ନାହିଁ। ପ୍ରଗତି ଦଳ ତରଫରୁ ରବି ବାବୁଙ୍କୁ ରାଜ୍ୟସଭାକୁ ପଠାଗଲା। ରାଜ୍ୟସଭାରେ ତାଙ୍କର ଅବଦାନ ଉଲ୍ଲେଖନୀୟ ଥିଲା। ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉପରେ ଈର୍ଷାନ୍ୱିତ ହୋଇ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ପୋଲିସ ଲଗାଇ ବିଜୁବାବୁଙ୍କ ଜର୍ମାନୀ ଗସ୍ତ ସମୟରେ ତାଙ୍କର ଦିଲ୍ଲୀ ବାସଭବନକୁ ଖାନତଲାସ କରି କିଛି ଟଙ୍କା, ମଦ ଓ ବନ୍ଧୁକ ଜବତ କଲେ। ମାତ୍ର ରବି ରାୟ ରାଜ୍ୟସଭାରେ ବିଜୁବାବୁଙ୍କ ସପକ୍ଷରେ ଏପରି ବଳିଷ୍ଠ ଯୁକ୍ତି ଉପସ୍ଥାପିତ କଲେ ଯେ ଇନ୍ଦିରା ଗାନ୍ଧୀ ବାଧ ହୋଇ ବିଜୁ ବାବୁଙ୍କ ବିରୁଦ୍ଧରେ ଥିବା କେସ୍‌କୁ ପ୍ରତ୍ୟାହାର କରିନେଲେ ଏବଂ ପାର୍ଲାମେଣ୍ଟରେ କ୍ଷମା ମାଗିଲେ।

ରାଜନାରାୟଣଙ୍କଠାରୁ ଇନ୍ଦିରା ଗାନ୍ଧୀ ନିର୍ବାଚନ କେସ୍‌ରେ ଆହ୍ଲାବାଦ ହାଇକୋର୍ଟରେ ହାରିଗଲା ପରେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି କଲେ।

ଦେଶର ସମସ୍ତ ବଡ଼ ବଡ଼ ନେତାମାନଙ୍କୁ ଗିରଫ କରିନେଲେ। ରବି ରାୟଙ୍କୁ ମଧ୍ଯ ଗିରଫ କରାଗଲା। ୧୯୭୭ ମସିହାରେ ଇନ୍ଦିରା ଗାନ୍ଧି ଦେଶରେ ନିର୍ବାଚନ କଲେ। ଜୟପ୍ରକାଶ ନାରାୟଣ ଓ ଆଗ୍ଧର୍ଯ୍ୟ କୃପାଳିନୀଙ୍କ ନେତୃତ୍ୱରେ ସମସ୍ତ ଅଣକଂଗ୍ରେସ ଦଳ ଏକତ୍ରିତ ହୋଇ ଜନତା ପାର୍ଟି ନାମରେ ଏକ ନୂତନ ଦଳ ଗଠନ କଲେ। ୧୯୭୭ ସାଧାରଣ ନିର୍ବାଚନରେ ଜନତା ପାର୍ଟି ବିପୁଳ ଭୋଟରେ ଜୟଯୁକ୍ତ ହେଲା। ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ନିର୍ବାଚିତ ହେଲେ। ସେ ରବି ରାୟଙ୍କୁ ରାଷ୍ଟ୍ରମନ୍ତ୍ରୀ ପଦ ଯାଚିଲେ। ମାତ୍ର ରବିବାବୁ ତାଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ। ପରେ ରାଜନାରାୟଣ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଲାପରେ ରବିବାବୁଙ୍କୁ କ୍ୟାବିନେଟ ପାହ୍ୟା ସ୍ୱାସ୍ଥ୍ୟମନ୍ତ୍ରୀ କରାଗଲା। ସ୍ୱାସ୍ଥ୍ୟମନ୍ତ୍ରୀ ହିସାବରେ ରବି ବାବୁ ତାଙ୍କର କାର୍ଯ୍ୟଦକ୍ଷତାର ପ୍ରମାଣ ଦେଲେ। ବ୍ରିଟିଶ ଏଡ୍ ଜରିଆରେ ଭ୍ରାମ୍ୟମାଣ ଡାକ୍ତରଖାନା, ଗ୍ରାମାଞ୍ଚଳରେ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା ପାଇଁ ଅନୁମତି ଦେଲେ। ମାତ୍ର ସତେଇଶ ମାସ ଶାସନ ପରେ ଜନତା ପାର୍ଟି ବିଭାଜନ ହେଲା। ଶ୍ରୀଯୁକ୍ତ ଚରଣ ସିଂହ ପ୍ରଧାନମନ୍ତ୍ରୀ ହେଲେ। ତାଙ୍କ ମନ୍ତ୍ରିମଣ୍ଡଳରେ ରବି ରାୟ ପୁଣି ସ୍ୱାସ୍ଥ୍ୟମନ୍ତ୍ରୀ ହେଲେ। ଶ୍ରୀ ଚରଣ ସିଂହ ପାର୍ଲାମେଣ୍ଟରେ ସଂଖ୍ୟାଗରିଷ୍ଠତା ପ୍ରମାଣ ନକରି ପାରିବାରୁ ଇସ୍ତଫା ଦେଲେ। ପୁନର୍ବାର୧୯୮୦ ମସିହାରେ ଦେଶରେ ଲୋକସଭା ପାଇଁ ନିର୍ବାଚନ ହେଲା। ରବିବାବୁଙ୍କୁ ଦଳ ତରଫରୁ ଜଗତସିଂହପୁର ଲୋକସଭା ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ କରାଗଲା। ସେ ଅଳ୍ପ ଭୋଟରେ ନିର୍ବାଚନ ହାରିଗଲେ। କାରଣ ଜନତା ପାର୍ଟି ଠିକ୍ ଭାବରେ ଶାସନ ଚଳାଇ ନପାରିବାରୁ ଲୋକଙ୍କ ଆସ୍ଥା ହରାଇଥିଲା। ୧୯୮୪ ଲୋକସଭା ନିର୍ବାଚନରେ ଜଗତସିଂହପୁର ଲୋକସଭା ଆସନରୁ ରବି ରାୟ ପୁଣି ଅଳ୍ପ ଭୋଟରେ ପରାସ୍ତ ହେଲେ। ୧୯୮୯ ମସିହାରେ ଲୋକସଭା ନିର୍ବାଚନରେ ବିଜୁବାବୁ ରବିବାବୁଙ୍କୁ ଜଗତସିଂହପୁର ଲୋକସଭା ଆସନରୁ ପ୍ରାର୍ଥୀ କରିବାକୁ ଚାହିଁଲେ ନାହିଁ। ତାଙ୍କୁ ପୁରୀ ଆସନରୁ ପ୍ରାର୍ଥୀ ହେବାକୁ କହିଲେ। ରବିବାବୁ ତହିଁରେ ରାଜିହେଲେ ନାହିଁ। ସେତେବେଳେ ବିମଳ ମହାପାତ୍ର, ପଦ୍ମଚରଣ ନାୟକ ଓ ମୁଁ ପ୍ରତିଦିନ ତାଙ୍କ ପାଖକୁ ଯାଉଥିଲୁ। ଶେଷରେ ବିଜୁବାବୁ ବାଧ୍ୟ ହୋଇ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ତାଙ୍କୁ ନିର୍ବାଚନ ଲଢ଼ିବାକୁ ଅନୁରୋଧ କଲେ। ଦଳର ଚାପରେ ରବିବାବୁ ବାଧହୋଇ ବିଜୁବାବୁଙ୍କ ପ୍ରସ୍ତାବକୁ ଗ୍ରହଣ କଲେ। କେନ୍ଦ୍ରାପଡ଼ା ଲୋକସଭା ଆସନରୁ ରବିବାବୁ ବିପୁଳ ଭୋଟରେ ବିଜୟୀ ହେଲେ। ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ପ୍ରଧାନମନ୍ତ୍ରୀ ହେଲେ। ରବି ରାୟ ଲୋକସଭାର ବାଚସ୍ପତି ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲେ। ବାଚସ୍ପତି ଭାବରେ ତାଙ୍କର ଦକ୍ଷତା ପ୍ରଦର୍ଶନ କରି ଓଡ଼ିଶାର

ମାନସମ୍ମାନ ରଖିଲେ। ବାଚସ୍ପତି ରୂପେ ସେ ସଂପୂର୍ଣ୍ଣ ନିରପେକ୍ଷ ଭାବରେ ଗୃହ ପରିଚାଳନା କରୁଥିଲେ।

୧୯୮୯ ମସିହାରେ ବିଜୁବାବୁଙ୍କ ସହ ତାଙ୍କ ଭିନ୍ନମତ ହେବାରୁ ସେ ଜର୍ଜ ଫର୍ଣ୍ଣାଡିସ୍‌ଙ୍କ ସହ ମିଶି ସମତା ପାର୍ଟି ଗଠନ କଲେ। ଓଡ଼ିଶାରେ ତାଙ୍କ ନେତୃତ୍ୱରେ ସମତା ପାର୍ଟି ଶୋଚନୀୟ ଭାବେ ପରାସ୍ତ ହେଲା। ମୁଁ ସମତା ପାର୍ଟିର ରାଜ୍ୟ ସାଧାରଣ ସମ୍ପାଦକ ଥିଲି। ଏହାପରେ ରବି ରାୟ ଆଉ ଦଳୀୟ ରାଜନୀତି ନ କରିବାକୁ ସିଦ୍ଧାନ୍ତ ନେଲେ। ସେହି ଦିନଠାରୁ ତାଙ୍କ ସହ ମୁଁ ମଧ୍ୟ ଆଉ କୌଣସି ଦଳୀୟ ରାଜନୀତିରେ ନାହିଁ।

ରବି ରାୟ ଜଣେ ବନ୍ଧୁବତ୍ସଳ, ସାଧୁ ଓ ଜ୍ଞାନୀ ରାଜନୀତିଜ୍ଞ। ତାଙ୍କ ସହ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ରହି ମୁଁ ନିଜକୁ ଗୌରବାନ୍ୱିତ ମନେକରୁଛି। ଯୁବସମାଜ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହେବାକୁ ମୋର ନିବେଦନ।

■■■

# ଅକୁତୋଭୟ ରବିରାୟ

ଶ୍ରୀ ବିଶ୍ୱନାଥ ସାମଲ

'ଅନ୍ୱେଷାର ଆକାଶ' ଆଡ଼କୁ ଆଖି ପକେଇଥିବା ଜଣେ ଆଜନ୍ମ କ୍ରାନ୍ତିମୁଖୀ ସ୍ୱାଧୀନତା ସଂଗ୍ରାମୀ ତଥା ଅହିଂସା ସତ୍ୟାଗ୍ରହୀ ରବିରାୟ ଆଜି ଜୀବନ ସାୟାହ୍ନର ସେଇ ଅନନ୍ତ ଆକାଶର ଅନ୍ୱେଷଣରେ ତଥାପି ସଚେତନ। ପ୍ରାୟ ୯୦ ବର୍ଷ ବୟସରେ ଆମର ଏଇ କଟକ ସହରର ଉପକଣ୍ଠସ୍ଥ କଲ୍ୟାଣୀ ନଗରସ୍ଥ ତାଙ୍କ ବାସଭବନରେ ନିତ୍ୟ ନୈମିତ୍ତିକ ଦିନଚର୍ଯ୍ୟାରେ ଆମ ପାଇଁ ଏକ ଜ୍ୱଳନ୍ତ ଦୀପ ଶିଖା। ଭଳି ଏକାନ୍ତରେ ଏକ ଅଗ୍ରଗାମୀ ସାମାଜିକ ଓ ରାଜନୈତିକ ଆଚାର ବିଚାରର ଖୋଲା ବହିଟିଏ ହୋଇ ରହିଛନ୍ତି। ସାରା ଜୀବନ ସେ ପ୍ରଶାସନର ସ୍ଥାଣୁତାକୁ ଭାଙ୍ଗି ଲୋକଶକ୍ତିର କ୍ଷୀଣ ସ୍ରୋତା ତଟିନୀଟିକୁ ପ୍ରବାହିତ କରି ରଖିଛନ୍ତି – ଏକ ଜାତୀୟ ଦୃଶ୍ୟପଟରୁ ରାଜ୍ୟସ୍ତରୀୟ ଦିଗ ଦିଗନ୍ତକୁ। ଜଣେ ସଂସଦ ଭାବରେ ସେ ଗଣତନ୍ତ୍ରର ଦେବାଳୟ ଭାବେ ପ୍ରତିଷ୍ଠିତ ସଂସଦ ଭବନରେ ନିଜର ସଂଗ୍ରାମମୟ ଜୀବନକୁ ସାଧସାଧନାର ଶୃଙ୍ଖଳାରେ ଯେପରି ଭାବେ ସାମ୍ବିଧାନିକ ବିଧିବ୍ୟବସ୍ଥା ଭିତରେ ତେଜସ୍ୱିୟ ଶୈଳୀରେ ଉପସ୍ଥାପିତ କରି ଇତିହାସ ସୃଷ୍ଟି କରିଥିଲେ ଜଣେ ବାଚସ୍ପତି ଭାବରେ ତାହା ତାଙ୍କର ନିରପେକ୍ଷତା ନିର୍ଭୀକତାର ଏକ ଯୁଗାନ୍ତକାରୀ ଦଲିଲ ହୋଇ ପାରିଥିଲା। ଓଡ଼ିଶାର ଏହି ଲୋହିଆପନ୍ଥୀ ସମାଜବାଦୀ ନେତା ବାସ୍ତବିକ ଏକ ବ୍ୟତିକ୍ରମ – ଜାତୀୟ ସ୍ତରର ବହୁ ବିଶିଷ୍ଟ ନେତା, ମନ୍ତ୍ରୀ, ପ୍ରଧାନମନ୍ତ୍ରୀ ତାଙ୍କର ବ୍ୟକ୍ତିତ୍ୱ ଓ ନୀତି ନିଷ୍ଠତାରେ ହତଚକିତ ହୋଇ ଯାଇଥାନ୍ତି। ଜଣେ ଓଡ଼ିଆ, ଓଡ଼ିଶାର ମଣିଷ ଯେ ଜାତୀୟ ସ୍ତରରେ ବହୁ ଚର୍ଚ୍ଚିତ ନେତା ବିଜୁ ପଟ୍ଟନାୟକଙ୍କ ଭଳି ପ୍ରାସଙ୍ଗିକ ହୋଇ ଗଣମାଧ୍ୟମମାନଙ୍କରେ ଓଡ଼ିଶାର ଅନଗ୍ରସରତା ଓ ଅପାରଗ ପ୍ରଶାସନିକ ଚକ୍ରବ୍ୟୂହକୁ ଭେଦକରି ଜଣେ ପ୍ରତିସ୍ପର୍ଦ୍ଧୀ ରାଜନେତା ତଥା ଚିନ୍ତାନାୟକ ଭାବେ ଇତିହାସକୁ ରୋମାଞ୍ଚିତ କରି ପାରିଛି ଓ ତାହାହିଁ ଆମ ସମସ୍ତ ଓଡ଼ିଆଙ୍କ ପାଇଁ ଗର୍ବର ବିଷୟ ହୋଇ ରହିବ।

ସେଦିନ ତିବ୍ବତର ଧର୍ମଗୁରୁ ଦଲାଇଲାମା ଦିଲ୍ଲୀଠାରେ ରବିରାୟଙ୍କ ଅଶୀତମ ଜନ୍ମଦିବସ ଅବକାଶରେ ଆୟୋଜିତ ଏକ ଉତ୍ସବରେ ସ୍ପଷ୍ଟ ଭାବରେ ତାଙ୍କର ସୁମନାସ

ଜଣାଇଲେ କହିଥିଲେ ଯେ - ଷାଠିଏ ଦଶକରେ ତିବ୍ବତବାସୀଙ୍କୁ ମୁକ୍ତି ଆନ୍ଦୋଳନରେ ସହଯୋଗର ହାତ ବଢ଼େଇଥିବା ଭାରତୀୟ ନେତାମାନଙ୍କ ମଧ୍ୟରେ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ ଓ ରବିରାୟଙ୍କୁ ଆମେ ତିବ୍ବତୀୟ ଗୁରୁତୁଲ୍ୟ ସମ୍ମାନ କରୁ। ବିଶ୍ୱ ରାଜନୀତିରେ ଚୀନ୍‌ର ଏକାଧିପତ୍ୟକୁ ଅସ୍ୱୀକାର କରି ତିବ୍ବତବାସୀଙ୍କୁ ଯେଉଁମାନେ ସହଯୋଗ କରିଥିଲେ ସେମାନଙ୍କ ମଧ୍ୟ ରବି ରାୟ ହେଉଛନ୍ତି ସବୁଠାରୁ ଜଣେ ପ୍ରଗଲ୍‌ଭ ସ୍ୱାଧୀନଚେତା ଯେ ସବୁ ଦେଶୀ ବିଦେଶୀ କଟକଣା ବିରୁଦ୍ଧରେ ଆମ ସହିତ ସ୍ୱର ମିଳାଇ ଆସିଛନ୍ତି। ଦଲାଇଲାମାଙ୍କୁ ଅବଶ୍ୟ ଭାରତ ସରକାର ମହାମାନ୍ୟ ଅତିଥିଭାବେ ଯଥାବିଧି ସୌଜନ୍ୟ ଦେଖାଇ ଆସିଛି। ତିବ୍ବତ ଜନଗଣଙ୍କ ମୁକ୍ତି ଆନ୍ଦୋଳନକୁ ଭାରତ ଅନୌପଚାରିକ ଭାବେ ସମର୍ଥନ କରି ଆସିଛି। କାରଣ ଚୀନ୍ ଭଳି ଏକ ବିଶାଳ କମ୍ୟୁନିଷ୍ଟ ରାଷ୍ଟ୍ରଶକ୍ତି ବିରୁଦ୍ଧରେ ସ୍ୱର ଉଠାଇବା ଏତେ ସହଜ କଥା ନୁହେଁ। ଚୀନ୍-ଭାରତ ଯୁଦ୍ଧ ପଛରେ ତିବ୍ବତକୁ ସ୍ୱାଧୀନ ରାଷ୍ଟ୍ର ମର୍ଯ୍ୟାଦା ଦେବାରେ ଭାରତ ସମର୍ଥନ ହିଁ ଏଥିପାଇଁ ମୁଖ୍ୟତଃ ଦାୟୀ।

ସେ ଯାହାହେଉ ରବି ରାୟ ନବମ ଲୋକସଭାର ବାଚସ୍ପତି ଭାବରେ ଦଳବଦଳ ଆଇନକୁ ବଳବତ୍ତର କରିବାରେ ନିଜର ଅତି ପ୍ରିୟ ସମର୍ଥକ ବନ୍ଧୁ ତଥା ସହଯୋଗୀ ଚନ୍ଦ୍ରଶେଖରଙ୍କୁ ମଧ୍ୟ ସଂସଦରେ ବିରୋଧ କରି ନିଜର ରୁଲିଂ ଦେଇଥିଲେ। ସେହିପରି ଜଣେ ବିଚାରପତିଙ୍କ ଦୁର୍ନୀତି ପ୍ରମାଣିତ ହେବାପରେ ତାଙ୍କୁ ସଂସଦରେ ଭର୍ତ୍ସନା କରିବାର ନିଷ୍ପତ୍ତି ଶୁଣାଇଥିଲେ – ଲୋକସଭାର ବାଚସ୍ପତି ଭାବରେ ସେ ଏତେ ନିରପେକ୍ଷ ଓ ନିର୍ଭୀକ ନ୍ୟାୟ ପ୍ରତିଷ୍ଠା ପାଇଁ ଏକ ଜାତୀୟ ଆଦର୍ଶର ଦୃଷ୍ଟାନ୍ତ ହୋଇ ରହିଛନ୍ତି। କେନ୍ଦ୍ରରେ ସ୍ୱାସ୍ଥ୍ୟମନ୍ତ୍ରୀ ଥିବା ସମୟରେ ସେ ସାଧାରଣ ଲୋକଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇଦେବା ଲକ୍ଷ୍ୟରେ ବିଦେଶ ରାଷ୍ଟ୍ରମାନଙ୍କଠାରୁ ସହାୟତା ଆଣିବାରେ ସମର୍ଥ ହୋଇଥିଲେ। ସେ ସାଂସଦ ଥିବା ସମୟରେ ରେଳବିଭାଗ ସହିତ ଲଗାତାର ଲଢ଼େଇ କରି ଭୁବନେଶ୍ୱରରୁ ଦିଲ୍ଲୀ ସିଧାସଳଖ ଟ୍ରେନ୍ ଚଳାଚଳର ବ୍ୟବସ୍ଥା କରି ପାରିଥିଲେ। ରବି ରାୟ ଓଡ଼ିଆ ଭାଷା ଓ ସାହିତ୍ୟର ଦୁର୍ଦ୍ଦିନ ଓ ଦୁର୍ଦ୍ଦଶା ପାଇଁ ଜଣେ ଚିର ଜାଗ୍ରତ ପ୍ରହରୀ ଭଳି ଆଜି ପର୍ଯ୍ୟନ୍ତ ସଂଗ୍ରାମ କରି ଆସିଛନ୍ତି। ଅଣଓଡ଼ିଆ ସାଇନବୋର୍ଡ଼, ନାମଫଳକ ଉପର କଳାବୋଳିବା ଭଳି ଆନ୍ଦୋଳନ ତାଙ୍କରି ନେତୃତ୍ୱରେ ଆରମ୍ଭ ହୋଇଥିଲା। ଓଡ଼ିଆରେ ସରକାରୀ କାର୍ଯ୍ୟ କରିବା ପାଇଁ ଯେଉଁ ନୀତି ଓ ନିଷ୍ପତ୍ତି ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଗ୍ରହଣ କରାଯାଇଥିଲା, ତାହାକୁ ସେ ବାରମ୍ବାର ଆନ୍ଦୋଳନ ଦ୍ୱାରା ଗୃହୀତ କରିବାରେ ଚେଷ୍ଟା କରିଆସିଛନ୍ତି। ଜାନକୀବଲ୍ଲଭ ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ମଧ୍ୟ

ଓଡ଼ିଆ ଭାଷାରେ ସରକାରୀ ନଥିପତ୍ର ପ୍ରଚଳନ ଉପରେ ଗୁରୁତ୍ୱ ଦେଇ ଆଦେଶ ଦେଇଥିଲେ। କିନ୍ତୁ ଓଡ଼ିଶାର ଦୁର୍ଭାଗ୍ୟ ଯେ ଓଡ଼ିଶାର ଶାସକ କଳକୁ ଦଖଲ କରି ରହିଥିବା ଅମଲାତନ୍ତ୍ର ଓଡ଼ିଆ ଭାଷାକୁ ଘୃଣା କରି ଆସିଛନ୍ତି। ଏଇ ନୂଆ ଉପନିବେଶବାଦୀମାନେ ହିଁ ଓଡ଼ିଶାର ବିକାଶ ନୁହେଁ ବିନାଶ ହିଁ କରି ଆସିଛନ୍ତି। ଆଜି ଓଡ଼ିଶାର ମୁଖ୍ୟମନ୍ତ୍ରୀ ବାଧ୍ୟ ହୋଇ ଓଡ଼ିଆ ଭାଷାର ସରକାରୀ ବ୍ୟବହାର ପାଇଁ ଆଦେଶ ଦେଲେ ମଧ୍ୟ ତାଙ୍କର ସରକାରୀ କମକର୍ତ୍ତାଙ୍କ ଉଦାସୀନତା ଯୋଗୁଁ କାର୍ଯ୍ୟକାରୀ ହୋଇ ପାରୁନାହିଁ। ଯେହେତୁ ସେ ନିଜେ ଓଡ଼ିଆ ଭାଷା ବୁଝନ୍ତି ନାହିଁ କି କହି ପାରନ୍ତି ନାହିଁ। ଏହି ହେଉଛି ଆମର ଓଡ଼ିଶା - ସେଇ ଓଡ଼ିଶାରୁ ରବି ରାୟଙ୍କ ଭଳି ଜଣେ ଚିରନ୍ତନ ସଂଗ୍ରାମୀ ଆଜି ମଧ୍ୟ ଦେଶର ମୌଳିକ ସମସ୍ୟା ନେଇ ତାଙ୍କର ଲୋକଶକ୍ତି ଅଭିଯାନ ଆନ୍ଦୋଳନକୁ ବଞ୍ଚାଇ ରଖିଛନ୍ତି।

ସେଦିନ 'ସମ୍ବାଦ' ଦୈନିକ ପତ୍ରିକା କଟକ ସଂସ୍କରଣ ଉନ୍ମୋଚନ ଅବକାଶରେ ରବିରାୟ କହିଥିଲେ ଯେ ସମ୍ବାଦପତ୍ର ଓ ସାମ୍ବାଦିକ ଆତ୍ମାନୁଶାସନ ଭଳି କାର୍ଯ୍ୟ କରନ୍ତୁ। କିନ୍ତୁ ସାମ୍ବାଦିକତା ଆଜି ହୋଇଗଲାଣି ଏକ ବ୍ୟବସାୟିକ ସଂସ୍ଥା - ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କୁ ସୁରକ୍ଷା ଦେବାପାଇଁ ଆଜି ମୁଦ୍ରିତ ଗଣମାଧ୍ୟମ 'ଅନୁଶାସନ' କ'ଣ ଜାଣନ୍ତି ନାହିଁ। କେବଳ ଅର୍ଥ ଲାଳସା - ସୁବିଧା ହାସଲ କରିବା - ଅବାନ୍ତର ବ୍ୟକ୍ତି ଓ ବିଷୟବସ୍ତୁକୁ ପ୍ରାଧାନ୍ୟ ଦେଇ ସ୍ୱାର୍ଥ ହାସଲ କରିବାରେ ଆଜିର ସାମ୍ବାଦିକ ଓ ସମ୍ବାଦପତ୍ର କୌଣସି ଆଚରଣ ସଂହିତା ପାଳନ କରୁନାହାନ୍ତି। ରବି ରାୟ କେବେହେଲେ ଏ ପ୍ରକାର ନିମ୍ନସ୍ତରର ସାମ୍ବାଦିକତାକୁ ପ୍ରଶ୍ରୟ ଦେଇ ନାହାନ୍ତି କି ଗଣମାଧ୍ୟମକୁ ନିଜର ରାଜନୈତିକ ପ୍ରଶସ୍ତି ପାଇଁ ବ୍ୟବହାର କରି ନାହାନ୍ତି।

ଦୈନିକ ସମ୍ବାଦପତ୍ର 'ସମ୍ବାଦ' ପକ୍ଷରୁ ଯେତେବେଳେ ତାଙ୍କୁ ପ୍ରଶ୍ନ କରାଯାଇଥିଲା ଯେ - "ଆପଣ ରାଜନୀତିରୁ ସନ୍ନ୍ୟାସ ନେଲେଣି କି ? ତା'ର ଉତ୍ତରରେ ସେ କହିଥିଲେ, "ନା - ମୁଁ ସନ୍ନ୍ୟାସ ନେଇ ନାହିଁ। ମୁଁ ରାଜନୀତିର ଗତି ପ୍ରକୃତି ସହିତ ସଂପୂର୍ଣ୍ଣ ଅବହିତ ହୋଇ ଦଳୀୟ ରାଜନତୀର ଊର୍ଦ୍ଧ୍ୱରେ ରହି ନିର୍ଦ୍ଦଳରୟ ଲୋକଶକ୍ତି ଜାଗ୍ରତ କରିବାପାଇଁ ଏକ ବୌଦ୍ଧିକ ସଂଗ୍ରାମ କରୁଛି। ସେଥିରେ କେତେକ ଶକ୍ତିମାନ ଯୁବକଙ୍କୁ ପ୍ରୋତ୍ସାହିତ କରି ଲୋକଙ୍କ ଭିତରେ ଏକ ପ୍ରସଙ୍ଗଭିତ୍ତିକ ବିଚାର ମନ୍ଥନ ପାଇଁ ସୁଯୋଗ ସୃଷ୍ଟି କରୁଛି। ରାଜନୀତି ମୋର ସହଜାତ ପ୍ରବୃତ୍ତି। ମୁଁ କୈଶୋର ବୟସରୁ ସାମାଜିକ ପରିବର୍ତ୍ତନ ପାଇଁ ଅଙ୍ଗୀକାରବଦ୍ଧ ହୋଇ ଆଜି ପର୍ଯ୍ୟନ୍ତ ଦୀର୍ଘପଥ ଅତିକ୍ରମ କରିଆସିଛି।" ଏଇ ହେଲେ ରବିରାୟ। ଓଡ଼ିଶାର ଡଃ ରାମମନୋହର ଲୋହିଆଙ୍କ ଦ୍ୱିତୀୟ ସଂସ୍କରଣ।

ଜଣେ ଧୀମାନ, ସଂଗ୍ରାମୀ, ସାରାଜୀବନ ନିର୍ଯ୍ୟାତିତ ଓ ଲାଞ୍ଛିତ ଲୋକଙ୍କ ଉତ୍‌ଥାନ ପାଇଁ ସେ ଯେଉଁ ନିଷ୍ପାପର ଉଦ୍ୟମ କରି ଆସିଛନ୍ତି ସେଥିରେ ସେ ସାଂସଦ ହୋଇ ସଂସଦୀୟ ଗଣତନ୍ତ୍ରର ଭିତ୍ତିଭୂମିକୁ ସୁଦୃଢ଼ କରିବାରେ ପ୍ରୟସୀ ହୋଇଛନ୍ତି। ତାଙ୍କ ଅନ୍ୱେଷାର ଆକାଶ ଅନନ୍ତ – ତାହା ଭୂଗୋଳ ଇତିହାସରେ ସୀମିତ ନୁହେଁ।

ଅନେକ ସମାଜସେବୀ ଜାତୀୟତାବାଦୀ ସଂଗଠନ ପକ୍ଷରୁ ତାଙ୍କୁ ଜନ୍ମବାସରୀୟ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା। ବିଶ୍ୱବିଦ୍ୟାଳୟ ଅଧ୍ୟାପକ ସଂଘ, ହିମାଳୟ ବୁଦ୍ଧିଜୀବୀ ସଂଘ, ସମାଦବାଦୀ ପାର୍ଟି, ଦକ୍ଷିଣ-ଏସୀୟ ଗଣତାନ୍ତ୍ରିକ ଆନ୍ଦୋଳନ, ନେପାଳ ଗଣତାନ୍ତ୍ରିକ ଆନ୍ଦୋଳନ, ସର୍ବୋଦୟ ପରିବାର, ଜାମିୟାମିଲିଆ ବିଶ୍ୱବିଦ୍ୟାଳୟ, ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ସାମ୍ବାଦିକ କୁଲଦୀପ୍ ନୟାର, ସୁରେନ୍ଦ୍ର ମୋହନ, ନିର୍ମଳା ଦେଶପାଣ୍ଡେ, ଶରତ ଯାଦବ, ରଂଜନା କୁମାରୀ ପ୍ରମୁଖ ତାଙ୍କ ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା କରିଥିଲେ। ଏହି ସମାରୋହରେ ମୁଖ୍ୟଅତିଥି ଭାବେ ଯୋଗଦେଇ ତତ୍କାଳୀନ କେନ୍ଦ୍ର ଗୃହମନ୍ତ୍ରୀ ଶିବରାଜ ପାଟିଲ ରବି ରାୟଙ୍କ ନବମ ଲୋକସଭାରର ବାଚସ୍ପତି ଭାବେ କାର୍ଯ୍ୟଧାରା ତାଙ୍କୁ ପ୍ରଭାବିତ କରିଥିଲା ବୋଲି କହିଥିଲେ।

ଅନେକ ରବିରାୟଙ୍କୁ ଓଡ଼ିଆ ବୋଲି ମନେ କରୁନଥିଲେ। ଓଡ଼ିଶା ଯେ ଏପରି ଜଣେ ଦୁର୍ଦ୍ଧର୍ଷ ମହାସଂଗ୍ରାମୀଙ୍କୁ ସୃଷ୍ଟି କରି ପାରେ ସେକଥା କେହି କଳନା କରି ପାରି ନଥିଲେ। ତାଙ୍କୁ ଶ୍ରଦ୍ଧାରେ ସମସ୍ତେ "ରବିଦାଦା" ବୋଲି ସମ୍ବୋଧନ କରିଥାନ୍ତି। ତାଙ୍କ ସମକାଳୀନ ବହୁ ରାଜନେତା, ମନ୍ତ୍ରୀ, ସାଂସଦ, ରାଜ୍ୟପାଳ, ପ୍ରଧାନମନ୍ତ୍ରୀ (ଚନ୍ଦ୍ରଶେଖର) ହୋଇଥିଲେ କିନ୍ତୁ ସେ କାହାରି ପାଖରେ ନିଜର ମଥାନତ କରିନଥିଲେ। ଜଣେ ସ୍ପଷ୍ଟବାଦୀ, ନିର୍ଭୀକ ଓ ସ୍ୱାଧୀନଚେତା ସମାଜବାଦୀ ନେତା ଭାବରେ ସେ ଆଜି ପର୍ଯ୍ୟନ୍ତ ଭାରତୀୟ ରାଜନୀତିର ସରହଦରେ ଜାଜ୍ୱଲ୍ୟମାନ ହୋଇ ଅଛନ୍ତି। ଆଜି ତାଙ୍କର ୯୦ ବର୍ଷ ପୂର୍ତ୍ତି ଅବସରରେ ଆମେ ଓଡ଼ିଶାବାସୀ ତାଙ୍କର ଶତାୟୁ ହେବାର କାମନା କରୁଛୁ। ସେ ଜଣେ ବୁଦ୍ଧିଜୀବୀ ଭାବରେ ଅନ୍ୱେଷାର ପଥଯାତ୍ରୀ ହୋଇ ଆସିଛନ୍ତି। ସେ ଯେଉଁ ଅନ୍ୱେଷାର ଆକାଶକୁ ପ୍ରଦକ୍ଷିଣ କରିଛନ୍ତି ତାହା ସର୍ବଦା ବ୍ୟାପକରୁ ବ୍ୟାପକତର ହୋଇ ଚାଲିଥିବ। ତାଙ୍କର ଜୀବନୀ 'ଅନ୍ୱେଷାର ଆକାଶ' ବାସ୍ତବିକ ଓଡ଼ିଆ ସାହିତ୍ୟର ଏକ ବଳିଷ୍ଠ ସ୍ୱାକ୍ଷରରେ ସମୃଦ୍ଧ ହୋଇ ପାରିଛି।

ଆଜି ମଧ୍ୟ ପରିଣତ ବୟସରେ ସେ ସ୍ମୃତିର ଅସରନ୍ତି ଗନ୍ତାଘରକୁ ଖୋଲିଦେଲାବେଳେ ମନେହୁଏ ସେ ଏକ ଜୀବନ୍ତ ଗ୍ରନ୍ଥ। ତାଙ୍କୁ ଆମ ସ୍ୱଦେହରେ ଆମ ଗହଣରେ ଉପସ୍ଥିତ ରହିବାରୁ ଯେଉଁ ଆନନ୍ଦ ଅନୁଭବ କରୁ - ତାହା ବର୍ଣ୍ଣନା

କରିହେବ ନାହିଁ। ତାଙ୍କ ଜୀବନର ସହଯାତ୍ରିଣୀ ଭାବେ ଡା. ସରସ୍ୱତୀ ସ୍ୱାଇଁ ତାଙ୍କୁ ଯେ ସୁସ୍ଥ ଓ ସକ୍ରିୟ ରଖିପାରିଛନ୍ତି ସେଥିପାଇଁ ସେ ଆମ ସମସ୍ତଙ୍କ ନିକଟରେ ନମସ୍ୟା।

ରବି ରାୟ ବାସ୍ତବିକ ଅକୁତୋଭୟ। ପୁରୀ ଜିଲ୍ଲାର ଭଅଁରା ଗଡ଼ର ଏକ କୁଳୀନ ଖଣ୍ଡାୟତ ପରିବାରରେ ସେ ଜନ୍ମ ହୋଇ କଟକରେ ସ୍ନାତକ ସମାପ୍ତ କରିଥିଲେ ଏବଂ ସ୍ୱାଧୀନତା ଆନ୍ଦୋଳନର ସେଇ ଧୂମାବର୍ତ୍ତ ଭିତରେ ସେ ରେଭେନ୍ସା କଲେଜରେ ହିଁ ଏକ ସ୍ୱାଧୀନ ଭାରତବର୍ଷର ନୀଳନକ୍ସାକୁ ଅନ୍ୟ ବନ୍ଧୁ, ସହପାଠୀଙ୍କ ସହିତ ମିଶି ପଶ୍ଚିମ ଛାତ୍ରାବାସକୁ ବ୍ରିଟିଶ୍ ଶାସକ ମୁକ୍ତ ଏକ ସ୍ୱାଧୀନ ଦେଶର ପୀଠ ଭାବରେ ଘୋଷଣା କରିଥିଲେ। ଅନେକ ସଂଗ୍ରାମ, ଅନେକ ଜ୍ୱଳାମୟୀ ବକ୍ତୃତା ଆଉ ସିଦ୍ଧାନ୍ତର ସତ୍ୟପାଠ କରେ ରବି ରାୟଙ୍କ ଜୀବନ ଓ ଯାତ୍ରାପଥ। ସେ ଅନ୍ୱେଷା ଆକାଶକୁ ଚାହିଁଛନ୍ତି ଏହାହିଁ ଆମ ସମସ୍ତଙ୍କ ପାଇଁ ପ୍ରେରଣାର ବିଷୟ।

# ମୋ ଦୃଷ୍ଟିରେ ରବିରାୟ

**ପ୍ରଫେସର ବୀରେନ୍ଦ୍ର ନାୟକ**

ମୂଲ୍ୟବୋଧଭିତ୍ତିକ ରାଜନୀତିର ଏକ ସଚ୍ଚୋଟ ପ୍ରବକ୍ତା । ଏକ ସଚ୍ଚା ଦେଶପ୍ରେମୀ । ସାଧାରଣ ମଣିଷର ସ୍ଥିତି ଓ ଅସ୍ତିତ୍ୱକୁ ବିପନ୍ନ କରୁଥିବା ସମସ୍ତ ପ୍ରକ୍ରିୟା ବିରୋଧରେ ଏକ ବେସାଲିସ ସ୍ୱର । ମଣିଷକୁ ଭଲ ପାଉଥିବା ଏକ ଦରଦୀ - ହୃଦୟ । ବୁଡ଼ି ଯାଉଥିବା ଅସହାୟ ଲୋକଙ୍କୁ ହାତ ବଢ଼ାଇ ଦେଇପାରୁଥିବା ବେପରୁଆ ମଣିଷ । ଅଯାଚିତ ସ୍ନେହ, ଶ୍ରଦ୍ଧା, ଅନୁକମ୍ପା ଓ ସାହସ ଯୋଗାଇ ଦେଉଥିବା ଏକ ବଳିଷ୍ଠ ବ୍ୟକ୍ତିତ୍ୱ । ସବୁବେଳେ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱରେ ସେ, ଉଭୟ ସାମାଜିକ ଓ ରାଜନୈତିକ ଜୀବନରେ । ତାଙ୍କ ପ୍ରତିବାଦର ସ୍ୱର ଯେତେ ତୀବ୍ର ହେଲେ ମଧ ସେଥିରେ ନଥାଏ ଅସୂୟା ବା ଘୃଣା । ଥାଏ ଏକ ବ୍ୟାକୁଳତା - ଅବକ୍ଷୟରୁ ସମାଜରୁ ମୁକ୍ତ କରିବା ପାଇଁ । ରାଜନୈତିକ ଜୀବନରେ ବହୁ ଉଚ୍ଚପଦବୀର ଅଧିକାରୀ ହୋଇଛନ୍ତି ସେ - ପଦବୀର ଗାରିମାକୁ ଅକ୍ଷୁଣ୍ଣ ରଖିଛନ୍ତି - ପଦବୀର ଅହଂକାର ଦ୍ୱାରା ଆକ୍ରାନ୍ତ ହୋଇନାହାନ୍ତି । ଜନତାଙ୍କ ସ୍ୱପ୍ନ ବିକି ନାହାନ୍ତି - ବାସ୍ତବତା ସହ ମୁହାଁମୁହିଁ କରାଇଛନ୍ତି । ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରିବାର ସାହସ ଦେଇଛନ୍ତି, ଦେଉଛନ୍ତି ଓ ଦେଉଥିବେ – ଏଭଳି ବିଶ୍ୱାସ ମୋର ରହିଛି ।

ତାଙ୍କଠାରୁ ଯଥେଷ୍ଟ କନିଷ୍ଠ ମୁଁ, ମୋର ଏହାହିଁ କାମନା ଯେ ସେ ଆମ ଗହଣରେ ବହୁଦିନ ଧରି ବିଚରଣ କରୁଥାନ୍ତୁ ଓ ଆମକୁ ତାଙ୍କର ସ୍ନେହ, ଉପଦେଶ ଓ ମାର୍ଗଦର୍ଶନ ଦେଉଥାନ୍ତୁ । ପୃଥିବୀରେ ଜୀବନ ଧାରଣକୁ ସହଜ, ସରସ କରିବାର ଉପାୟମାନ କହୁଥାନ୍ତୁ ।

*(ସଂଗୃହୀତ ଲେଖା)*

▮▮▮

# ଛୋଟ ଆଖିରେ ସୂର୍ଯ୍ୟ

**ଶ୍ରୀ ବ୍ରଜକିଶୋର ପ୍ରଧାନ**

ରବି ରାୟଙ୍କ ସଂପର୍କରେ ଯେତିକି ଯାହା ଲେଖାଯାଇଛି ତା' କିଛି କମ୍ ନହେଲେ ମଧ୍ୟ ମୋ ବିଚାରରେ ତାଙ୍କ ବ୍ୟକ୍ତିତ୍ୱକୁ ସଂପୂର୍ଣ୍ଣ ବିସ୍ତାରିତ ଢଙ୍ଗରେ ଉପସ୍ଥାପନ କରିବାକୁ ଅନ୍ତତଃ ଯେତେ ଲେଖାଯିବା କଥା ତା' ତୁଳନାରେ କିଛି କରାଯାଇ ପାରିନାହିଁ। ବୋଧହୁଏ ଓଡ଼ିଶା ମାଟିରେ ଜନ୍ମ ହୋଇଥିବା କାରଣରୁ ଉପଯୁକ୍ତ ପ୍ରସିଦ୍ଧି ନ ପାଇବା ଏଠିକା ପାଣି ପବନଜନିତ ପ୍ରାକୃତିକ ବିଡ଼ମ୍ବନା। ଯାହାର ପ୍ରଭାବରେ ଊଣା ଅଧିକେ ସବୁ ଓଡ଼ିଆ ଆକ୍ରାନ୍ତ।

୧୯୬୭ ସାଲର କଥା। ପୁରୀ ଜିଲ୍ଲାର ପିପିଲିଠାରୁ ଡେ଼ଲାଙ୍ଗ ରାସ୍ତାରେ ୫ କି.ମି ଗଲେ ପଡ଼େ ଓଡ଼ାକଙ୍ଗ ଗାଁ। ନିହାତି ମଫସଲ ହେତୁ ସେତେବେଳର ପରିସ୍ଥିତିକୁ ଚାହିଁ ଗାଁ ଦାଣ୍ଡରେ ପେଣ୍ଡାଲ ସଜାଡ଼ି ମାଇକ୍ ବଜାଇଲେ ସାଇଯାକର ପିଲା ଗୁଣ୍ଡ ହୋଇଯାଆନ୍ତି ଅଜଣା କୌତୁହଳରେ। ଗୌରାଙ୍ଗ ପ୍ରଧାନ ପୁଅ ବ୍ରଜ କି ସେଥିରୁ ବାଦ୍ ପଡ଼ନ୍ତା! ସିଏ ତ ପୁଣି ୫ମ ଶ୍ରେଣୀର ବଡ଼ ଛାତ।

ବେଳ ଗଡ଼ି ଆସୁଥିଲା। ଗାଁ ଦାଣ୍ଡରେ ଧୂଳି ଉଠାଇ ନାଲି ଜିପ୍‌ଟିଏ ଆସି ପେଣ୍ଡାଲ ପାଖରେ ଅଟକିଲା। ନେତାଳିଆ ଧଳା ପୋଷାକରେ ଆସିଥିବା କେତେଜଣ ଯାଇ ପେଣ୍ଡାଲ ଉପରେ ଆସ୍ଥାନ ଜମାଇଲେ। ସିଏ ଥିଲା ଭାରତୀୟ ସଂସଦ ପାଇଁ ଏକ ଗାଉଁଲି ନିର୍ବାଚନ ସଭା। ଆଗ ଆଗ କିଏ କ'ଣ କହିଗଲେ ଆଜି ସ୍ମୃତି ଆଡ଼େଇଲେ ତା'ର ଚିହ୍ନବର୍ଣ୍ଣ ନଥିଲାବେଳେ; ମୁଖ୍ୟବକ୍ତା ତଥା ସାଂସଦ ପ୍ରାର୍ଥୀ ରବି ରାୟଙ୍କ ଭାଷଣ ଦେବା ଠାଣୀ, ଦେଶ ଗଠନରେ ଜନସାଧାରଣଙ୍କ ଦାୟିତ୍ୱ ବିଷୟରେ ଆଲୋଚନା, ସର୍ବଶେଷରେ ତାଙ୍କୁ "ବରଗଛ" ଚିହ୍ନରେ ଭୋଟ୍‌ଦେବା ପାଇଁ ନିବେଦନ – ସବୁକିଛି ଅବିକଳ ମନେପଡ଼ି ଯାଏ। ଆଉ ସେଦିନ ୧୦ ବର୍ଷର ବ୍ରଜ, ତା' କଅଁଳ ମନର ନରମ ମାଟିରେ ରବି ରାୟଙ୍କୁ ଆଦର୍ଶମାନୀ ରାଜନୀତି ମାଧ୍ୟମରେ ଦେଶ ସେବାର ଛୋଟ ବରଗଛଟିକୁ ଅଜାଣତରେ ରୋପଣ କରିଦିଏ।

ସମୟ ଡେଉରେ ପଡ଼ିଉଠି ବ୍ରଜ କୌଣସିମତେ କଲେଜ ପାଠ ସାରିଦିଏ ଆଉ ପରିବାରର ଆର୍ଥିକ ବ୍ୟବସ୍ଥାକୁ ଚାହିଁ ସରକାରୀ ଚାକିରିଟିଏ ଆଦରି ନିଏ। ଚାକିରିର

ସର୍ତ୍ତ ସିନା ସକ୍ରିୟ ରାଜନୀତିକୁ ଆପଣେଇବାରେ ବାଧାସାଜେ କିନ୍ତୁ ରବି ରାୟଙ୍କ ଭାଷଣଣ୍ଣୁ ସେଦିନ ପାଇଥିବା ପ୍ରେରଣା ମନେ ମନେ ଘରା ବରଗଛଟିକୁ ବଢ଼େଇ ଘଲେ। ପୁଣି ସେଇ ସମୟ - ରବି ରାୟଙ୍କୁ ଭାରତର ରାଜନୀତିରେ ଜଣେ ଅବିସମ୍ବାଦୀୟ ନେତାରୂପ ସ୍ୱୀକୃତି ଦେଇ ସମୟକ୍ରମେ ଜନତା ପାର୍ଟିର ସାଧାରଣ ସମ୍ପାଦକ, କେନ୍ଦ୍ର ସରକାରରେ ସ୍ୱାସ୍ଥ୍ୟମନ୍ତ୍ରୀ ଓ ଲୋକସଭାର ବାଚସ୍ପତି ଆସନରେ ଅଳଙ୍କୃତ କରିଦିଏ। ଏଣେ ଭାରତୀୟ ଗଣତାନ୍ତ୍ରିକ ପୃଷ୍ଠଭୂମିରେ ରବି ରାୟଙ୍କ ସକ୍ରିୟ ଉପସ୍ଥିତି ଓ ଅଗ୍ରଗତିର ଟିକିନିଖି ଖବର ବ୍ରଜ ପାଇଁ ତା' ଦୈନନ୍ଦିନ ଜୀବନଚର୍ଯ୍ୟାର ଏକ ସ୍ୱାଭାବିକ ଅଙ୍ଗ ପାଲଟିଯାଏ।

ରବି ରାୟଙ୍କ ସରକାରୀ କାର୍ଯ୍ୟସ୍ଥଳୀ ମୁଖ୍ୟତଃ ଦିଲ୍ଲୀ ହୋଇଥିବା ସତ୍ତ୍ୱେ ବିଭିନ୍ନ ରାଜନୈତିକ କାର୍ଯ୍ୟକ୍ରମ ଓ ତାଙ୍କର ସମାଜବାଦୀ ବିଘର ତାଙ୍କୁ ଓଡ଼ିଶା ସହିତ ପ୍ରାୟତଃ ଯୋଡ଼ି ରଖିଥାଏ। ଭୁବନେଶ୍ୱରରେ ଆଜି ସଭା ସମିତି କରିବାକୁ ସଦୃଶ୍ୟ ଭବ୍ୟ ପ୍ରେକ୍ଷାଳୟ ସବୁ ଉପଲବ୍ଧ ହେଉଥିବା ସ୍ଥଳେ ତାଙ୍କ ହାତଗଢ଼ା ଲୋହିଆ ଏକାଡ଼େମୀ ବିକଳ୍ପ ରାଜନୈତିକ ପରୀକ୍ଷା ନିରୀକ୍ଷାର ପ୍ରାଣକେନ୍ଦ୍ର ପାଲଟିଛି। ବ୍ରଜର ସରକାରୀ ନିଯୁକ୍ତି କ୍ଷେତ୍ର ଭୁବନେଶ୍ୱରରେ ହୋଇଥିବା ହେତୁ ବିଭିନ୍ନ ସମୟରେ ରବିରାୟଙ୍କର ଭୁବନେଶ୍ୱରଠାରେ ଅନୁଷ୍ଠିତ ହେଉଥିବା ସଭା ସମିତିରେ ନିଜ ସାଙ୍ଗ ୫/୧୦ ଜଣଙ୍କୁ ନେଇ ଉପସ୍ଥିତ ହୋଇ ତାଙ୍କ ମୁହଁରୁ ଦି ପଦ ଦେଶ ଗଠନର ମନ୍ତ୍ର ଶୁଣିବାରେ ବ୍ରଜ ବଡ଼ ଆଗ୍ରହ। ପୁଣି ସଭା ଆୟୋଜନରେ ଯାହା ଯେତେବେଳେ ଆବଶ୍ୟକ ହୁଏ ସେଥିରେ ସହଯୋଗ କରିବାରେ ବି ବ୍ରଜର ଆଗଭର ଥାଏ। ତା'ର ରବି ରାୟଙ୍କର ପ୍ରତି ମାତ୍ରାଧିକ ଆସକ୍ତିର ଏକମାତ୍ର କାରଣ ରବିବାବୁ ଏତେ ବଡ଼ ବଡ଼ ପଦବୀରେ ଅଧିଷ୍ଠିତ ହୋଇ ବି ଥିଲେ ଅତ୍ୟନ୍ତ ନିରହଙ୍କାର ଓ ବ୍ୟକ୍ତିଗତ ସଂପତ୍ତି ଆହରଣରେ ଏକାନ୍ତ ଉଦ୍ୟମ ରହିତ। ସ୍ୱାର୍ଥ ଉଦାସୀନ ରବିବାବୁଙ୍କ ନଜର କିନ୍ତୁ ତାଙ୍କ ପାଖରେ ଆତଯାତ ହେଉଥିବା ଲୋକ ଅସଲ ଉଦ୍ଦେଶ୍ୟ ବୁଝିବାରେ ସର୍ବଦା ସଜାଗ ରହିଥାଏ।

ଭାରତରେ କ୍ଷୁଧାତୁର, ବେକାର ଓ କର୍ମସଂସ୍ଥାନବିହୀନ କେହି ରହିବେନି। ସମସ୍ତ ଭାରତୀବାସୀ ସଂହତି ସୂତ୍ରରେ ବାନ୍ଧି ହୋଇ ଭାରତକୁ ରବିରାୟଙ୍କୁ ନେତୃତ୍ୱରେ ବିଶ୍ୱର ଏକ ନମ୍ବର ରାଷ୍ଟ୍ରକରି ଠିଆ କରିଦେବେ; ଏମିତି ସୁଦୂର ପରାହତ କଳ୍ପନା ବିଳାସରେ ବୁଡ଼ିରହିବାର ହେଲା ବ୍ରଜ ଚରିତ୍ରର ସବୁଠୁ ବଡ଼ ଆଲୁଦୋଷ। ଏଇ ଦୋଷ ହେତୁ ସକାଳ ପାହିଲେ ବ୍ରଜ ହାତରେ ଥାଏ ସେ ଦିନର ଗଣ୍ଡାଏ ସରିକି ଖବରକାଗଜ। ସବୁ କାଗଜରୁ ରାଜନୈତିକ ଖବର ସହିତ ମୁଖ୍ୟ ଆକର୍ଷଣ ଥାଏ ବଡ଼ ବଡ଼ ଲୋକମାନେ ଦେଶ ଗଠନର ନକ୍ସା ଦେଖାଇଛନ୍ତି କେଉଁ କେଉଁ ଲେଖାରେ – ତାକୁ ମନଦେଇ

ପଢ଼ିବା ଆଉ କାଟିକରି ସାଇତି ରଖିବା ସତେ ଯେମିତି ସେଗୁଡ଼ିକ ଅବସମ୍ଭାବୀ ଯୁଦ୍ଧରେ ଲକ୍ଷ୍ୟ ହାସଲ ପାଇଁ ଆବଶ୍ୟକ ହେଉଥିବା ନିର୍ଦ୍ଦିଷ୍ଟ ଅସ୍ତ୍ରସବୁ।

ଦିନେ ବ୍ରଜ ଦୃଷ୍ଟିରେ ଖବରକାଗଜରେ ବାହାରିଥିବା ଏମିତି ଉପାଦେୟ ଲେଖାଟିଏ ପଡ଼ିଲା ଯାହା ଥିଲା ଖୁବ୍ ମର୍ମସ୍ପର୍ଶୀ ଆଉ ତା'ର ଲେଖକଙ୍କ ବାସଗୃହ ଥିଲା ଭୁବନେଶ୍ୱଠାରୁ ମାତ୍ର ୩୦ କି.ମି. ଦୂରରେ। ବ୍ରଜର ମନେହେଲା ଲେଖକଙ୍କୁ ନେଇ ଯଦି ରବିବାବୁଙ୍କ ସହଯୋଗୀ ଭାବେ କିଛି ରାଜନୈତିକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଏ ତେବେ ଦେଶ ଗଠନର ବେଗ ତ୍ୱରାନ୍ୱିତ ହୋଇପାରିବ। ଅସମ୍ଭାଳ ଉତ୍ସାହରେ ବ୍ରଜ ଜଣେ ଆପାତତଃ ଦେଶପ୍ରେମୀ ମନେ ହେଉଥିବା କନିଷ୍ଠ ଭ୍ରାତାତୁଲ୍ୟ ବନ୍ଧୁଙ୍କୁ ନେଇ ମାଡ଼ିଗଲା ଲେଖକଙ୍କ ଗାଁକୁ! ଭାବ ଗମ୍ଭୀର ଆଲୋଚନା ସତ୍ତ୍ୱେ ଲେଖକ ମହାଶୟଙ୍କ ଯୁବପ୍ରାଣ ବ୍ରଜ କଥାରେ ଘରୁ ଗୋଡ଼ କାଢ଼ିବାକୁ ଆଗଭର ହୋଇପାରିଲାନି। ବ୍ରଜ ଫେରିଆସି ରବିବାବୁଙ୍କ ଶୁଣାଇଲା ନିଜ ଅସମର୍ଥତାର ଭଗ୍ନାଂଶ। ଶୁଣିବାମାତ୍ରେ ରବିବାବୁଙ୍କ ପ୍ରତିକ୍ରିୟା କିନ୍ତୁ ଦେଖିବା ଯୋଗ୍ୟ ଥିଲା। ଉନ୍ମାଦ ଭଳି କୁଦିପଡ଼ି ଡାକପକାଇଲେ ତାଙ୍କ ପୁତୁରାଙ୍କୁ, "ଚଗଲା! ଚଗଲା! ଦେଖ, ବ୍ରଜ କ'ଣ କରି ଆସିଛି। କାମ ପରି କାମଟିଏ। ଯାହା କରିବାକୁ ମୁଁ ବି କେବେ ସମର୍ଥ ହୋଇନାହିଁ। ସେମିତି କାମଟିଏ ବ୍ରଜ କରିପାରିଛି। ଲୋହିଆଙ୍କ ବିଗ୍ୱର ଥିଲା ଠିକ୍ ଏମତି ଢଙ୍ଗରେ ଲୋକଙ୍କ ପାଖକୁ ଯାଇ ତାଙ୍କୁ ଉଦ୍‌ବୁଦ୍ଧ କରି ଦେଶ ଗଠନରେ ଅନୁପ୍ରାଣୀତ କରିବା। ଫଳାଫଳ କ'ଣ ହେଲା ସେ'ଟା ବଡ଼ କଥା ନୁହେଁ। ବଡ଼କଥା ହେଉଛି ନିରନ୍ତର ଉଦ୍ୟମ। ଯାହା ବ୍ରଜ କରୁଛି।"

ବିଫଳତାରେ ଭାଙ୍ଗିପଡ଼ିଥିବା ବ୍ରଜ ପାଇଁ ସେଦିନ ରବିବାବୁଙ୍କ କଥାର ପ୍ରଭାବ ଥିଲା ବାଜି ଜିତିସାରି ମୁକୁଟ ମଣ୍ଡିତ ହେବାପରି ଉପଲବ୍‌ଧି। ସତରେ ରବି ରାୟଙ୍କ ପରି ବଡ଼ଲୋକ ହିଁ (ଧନୀ ନୁହେଁ) ଛୋଟ କଥାଟିରେ ଆବିଷ୍କାର କରିପାରନ୍ତି ଅପୂର୍ବ ବିଶେଷତ୍ୱ। ଦିନେ କହିଲେ, "ବ୍ରଜ! ଆମର ଏ କାମରେ (ଦେଶସେବା) ସହଯୋଗ ଦେବା ହେଲା ତୋର ରୁଚି। ସେତିକିରେ ତୁ ଖୁସି।"

ବ୍ରଜ ପାଇଁ ତା' ଗ୍ୱକିରି ଯେଣୁ ବିକଳ୍ପବିହୀନ ଆଧାର, ତେଣୁ ଆମ୍ଭାରେ ସେ ଜଣେ ଦେଶ ସେବକ କି ନୁହେଁ ତା'ର ମୂଲ୍ୟାୟନ କରିପାରି ନାହିଁ କିନ୍ତୁ ରବି ରାୟଙ୍କ ବ୍ୟକ୍ତିତ୍ୱ ପ୍ରତି ଆଜୀବନ ସମର୍ପିତ ରହି ତାଙ୍କର ସବୁ କାର୍ଯ୍ୟରେ ନିରବ ସମର୍ଥନ ଓ କେବେ କେବେ ଛୋଟ ସହଯୋଗୀଟିଏ ହୋଇପାରିଥିବା ତା' ପାଇଁ ଜୀବନର ଏକାନ୍ତ ବ୍ୟକ୍ତିଗତ ମୁଗ୍ଧ ଅନୁଭବ।

▮▮▮

# ସ୍ମୃତିରେ ରବି ରାୟ

**ଶ୍ରୀ ଭଗବାନ ସାହୁ**

ରବି ରାୟ, ଭାରତୀୟ ରାଜନୀତିରେ ଏକ ନିର୍ବିବାଦୀୟ ବ୍ୟକ୍ତିତ୍ୱ। ସମାଜବାଦୀ ଆନ୍ଦୋଳନର ମୁଖ୍ୟ ପୁରୋଧା ଓ କର୍ଣ୍ଣଧାର। ସାମ୍ପ୍ରତିକ ସମାଜର ସାମ୍ୟବାଦରେ ବିଶ୍ୱାସ ରଖୁଥିବା ତଥା ମଣିଷପଣିଆକୁ ଭଲ ପାଉଥିବା ନିରୋଳା ସରାଟିଏ। କ୍ଷମତାଶୀଳ ରାଜନୀତିରେ ସକ୍ରିୟ ଭାବରେ ଥାଇ ବି ସାଧାରଣ ଓ ନିରାଡ଼ମ୍ବର ଜୀବନ ବିତେଇ ପାରୁଥିବା ଜଣେ ଅସାଧାରଣ ମଣିଷ।

ଆଜିକାଲି ଯେଉଁଠି ରାଜନୀତିରେ ଥିବା ଶତପ୍ରତିଶତ ଲୋକ ଅର୍ଥ ଓ ପ୍ରତିପତ୍ତି ପାଇଁ ନିଜର ନୀତି ଆଦର୍ଶକୁ ଜଳାଞ୍ଜଳି ଦେଇଦେଉଛନ୍ତି ସେଭଳି କ୍ଷେତ୍ରରେ ରବି ରାୟ ଏପରି ଏକ ବ୍ୟତିକ୍ରମ ଯେ କି ନିଜର ଆଦର୍ଶ, ସ୍ୱାଭିମାନ ଓ ସମ୍ମାନବୋଧ ପାଇଁ ରାଜନୀତିଠାରୁ ମୁହଁ ଫେରାଇ ନେବାକୁ କୁଣ୍ଠିତ ହୋଇନାହାନ୍ତି। ଗୋଟିଏ ସାମନ୍ତବାଦୀ ସମ୍ଭ୍ରାନ୍ତ ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ ନିଜ ପରିବାରର ନୀତି ନିୟମ ଓ ସାମାଜିକ ବ୍ୟବସ୍ଥାକୁ ନାପସନ୍ଦ କରି ସାମାଜିକ ସମତା ପାଇଁ ସତତ ଚେଷ୍ଟିତ ହୋଇଛନ୍ତି। ଛାତ୍ରାବସ୍ଥାରୁ ସମାଜବାଦୀ ଆନ୍ଦୋଳନରେ ଭାଗ ନେଇ ବାରମ୍ବାର ଜେଲ୍ ଯିବା ସତ୍ତ୍ୱେ ବି ସେ କେବେହେଲେ ନିଜର ନୀତି ଆଦର୍ଶରୁ ଦୂରେଇ ନାହାନ୍ତି। ୧୯୪୬-୪୭ ମସିହାରେ ଭିଙ୍ଗାରପୁର ହାଇସ୍କୁଲରେ ପଢ଼ିବାବେଳେ ଜୟପ୍ରକାଶ ନାରାୟଣ ଓ ରାମମନୋହର ଲୋହିଆଙ୍କ ଆଦର୍ଶରେ ଅନୁପ୍ରାଣିତ ହେବା ସହିତ ମହାତ୍ମାଗାନ୍ଧିଙ୍କ ଅହିଂସା ନୀତିକୁ ଆପଣେଇ ନେଇଥିଲେ ନିଜ ଭିତରେ।

୧୯୪୮ ମସିହା ଯେତେବେଳେ ସାରା ଭାରତରେ କଂଗ୍ରେସର ଏକଛତ୍ର ଆଧିପତ୍ୟ ସେ ସମୟର ମଧ୍ୟ ସେ କଂଗ୍ରେସ ଓ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀଙ୍କୁ ହରାଇ ରେଭେନ୍‌ସା କଲେଜ ଛାତ୍ର ଇଉନିୟନ୍‌ର ସଭାପତି ଭାବରେ "ତରୁଣ ସମାଜବାଦୀ ସଂଘ" ତରଫରୁ ନିର୍ବାଚିତ ହୋଇଥିଲେ। ଏହା ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ଓ ପାରିବାପଣିଆର ପରିଚୟ ନିଶ୍ଚୟ। ନିଜେ ଜଣେ ସଂଗ୍ରାମୀ ହେବା ସହିତ ଶହଶହ ପିଲାଙ୍କୁ ନିଜ ଆଡ଼କୁ ଆକର୍ଷିତ କରିବାରେ ମଧ୍ୟ ସେ ଥିଲେ ସଫଳ ସଂଗଠନିକ।

ସମାଜବାଦୀ ପାର୍ଟି ପାଇଁ ପାଣ୍ଠି ସଂଗ୍ରହ କରି ସଂଗଠିତ ଭାବରେ ବହୁ ପିଲାଙ୍କୁ ନିଜ ସାଙ୍ଗରେ ନେଇ ସୁଦୂର ବାଲେଶ୍ୱରରେ ଲୋହିଆଙ୍କୁ ସାକ୍ଷାତ କରିବା କେବେହେଲେ ସାମାନ୍ୟ ଘଟଣା ହୋଇ ନପାରେ। ସମାଜରୁ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର କରିବାପାଇଁ ସେ ଯେଉଁ ପ୍ରୟାସ ଜାରି ରଖିଥିଲେ ତା' ମଧ୍ୟରୁ ଯୌତୁକ ବିରୋଧୀ ଆନ୍ଦୋଳନ ଥିଲା ପ୍ରମୁଖ ଘଟଣା। ରେଭେନ୍‌ସା କଲେଜରୁ ଶିକ୍ଷା ସମାପ୍ତ କରି ମଧୁସୂଦନ ଆଇନ ମହାବିଦ୍ୟାଳୟରେ ମଧ ସେ ୧୯୫୦ ମସିହାରେ ସଭାପତି ଭାବରେ ନିଯୁକ୍ତି ହୋଇଥିଲେ। ତାଙ୍କର କାର୍ଯ୍ୟନିଷ୍ଠା ଓ ବଳିଷ୍ଠ ନେତୃତ୍ୱରେ ପ୍ରଭାବିତ ହୋଇ ୧୯୫୬ ମସିହାରେ ତାଙ୍କୁ ସଂଯୁକ୍ତ ସମାଜବାଦୀ ଦଳର ଜାତୀୟ କାର୍ଯ୍ୟକାରିଣୀ ସଭ୍ୟ ଭାବରେ ଓଡ଼ିଶାରୁ ନିଯୁକ୍ତ ଦିଆଯାଇଥିଲା।

୧୯୬୭ ମସିହାରେ ସେ ଯେତେବେଳେ ପ୍ରଥମେ ପାର୍ଲିଆମେଣ୍ଟକୁ ନିର୍ବାଚିତ ହେଲେ ତାଙ୍କର ପ୍ରଥମ ଭାଷଣ ସେ ଦୀର୍ଘ ୩୦ ମିନିଟ୍ କାଳ ଓଡ଼ିଆରେ କହି ଏକ ଇତିହାସ ସୃଷ୍ଟି କରିଥିଲେ। କେବଳ ସେତିକି ନୁହେଁ ୧୯୭୧ ମସିହାରେ ଇନ୍ଦିରା ଗାନ୍ଧିଙ୍କ ଜରୁରୀକାଳୀନ ପରିସ୍ଥିତି ସମୟରେ, ଆସାମର ଗୌହାଟିଠାରେ ଓଡ଼ିଆ ଭାଷାରେ ଭାଷଣ ଦେଇ ସେ ଆଉ ଏକ ଉଦାହରଣ ସୃଷ୍ଟି କରିଥିଲେ। ୧୯୬୭, ୧୯୭୪ ଓ ୧୯୮୯ ତିନିତିନି ଥର ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇଥିବା ରବିରାୟଙ୍କ ତୃତୀୟ ପାଳି ଥିଲା ସବୁଠୁ ଉଲ୍ଲେଖନୀୟ ଘଟଣା।

୧୯୮୯ ମସିହା ଡିସେମ୍ବର ୧୯ ତାରିଖରେ ସେ ଲୋକସଭାର ବାଚସ୍ପତି ଭାବରେ ସର୍ବସମ୍ମତିକ୍ରମେ ନିର୍ବାଚିତ ହୋଇଥିଲେ। ଏହି ଦିନଟି ଓଡ଼ିଶା ପାଇଁ ଏକ ଗର୍ବ ଓ ଗୌରବର ଦିନ ଥିଲା। ପାର୍ଲାମେଣ୍ଟରେ କୌଣସି ଦଳର ସଂଖ୍ୟାଗରିଷ୍ଠତା ନଥାଇ ମଧ ସେ ସର୍ବସମ୍ମତିରେ ନିର୍ବାଚିତ ହେବା ତାଙ୍କର ସାଧୁତା, ନିରପେକ୍ଷତା ଓ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ଦିଏ। ସ୍ୱାଧୀନତାର ୬୮ ବର୍ଷ ବିତିଯାଇଥିଲେ ମଧ ଓଡ଼ିଶାର ରାଜନୈତିକ ଇତିହାସରେ ରବି ରାୟ ଏକମାତ୍ର ବ୍ୟକ୍ତି ଯେ କି ସଂସଦର ଏଭଳି ସମ୍ମାନଜନକ ପଦବୀରେ ଅବସ୍ଥାପିତ ହୋଇପାରିଥିଲେ। ତାଙ୍କ ପୂର୍ବରୁ ବା ପରେ ସେଭଳି ସୌଭାଗ୍ୟ ଓଡ଼ିଶା ପାଇଁ ଆଉଥରେ ଆସିବ କି ନା ସନ୍ଦେହ।

ବ୍ୟକ୍ତିଗତ ଜୀବନରେ ମୁଁ ତାଙ୍କ ସଂସ୍ପର୍ଶରେ ସେତେ ଅଧିକ ଆସି ନଥିଲେ ମଧ ଯେଉଁ କିଛି ମୁହୂର୍ତ୍ତର ସୌଭାଗ୍ୟ ପାଇଛି, ତାହା କେବେହେଲେ ଭୁଲିବାର ନୁହେଁ। ତାଙ୍କର ହସହସ ମୁହଁ, ନିଷ୍କପଟ ସରଳ ହୃଦୟ ଓ ଆତ୍ମୀୟତା, ବିଶେଷ କରି ଜଣେ ସାଧାରଣ ଲୋକ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭଲ ପାଇବା ମୋତେ ବେଶ୍ ପ୍ରଭାବିତ କରିଛି। ତାଙ୍କ

ନିକଟରେ ଏମିତି ଏକ ଐଶ୍ୱରୀୟ ଶକ୍ତି ଅଛି ଥରେ ଯାହା ସହିତ ସେ ମିଶିଥିବେ ତାକୁ ସବୁଦିନ ପାଇଁ ନିଜର କମ୍ପ୍ୟୁଟର ମସ୍ତିଷ୍କରେ ସାଇତି ରଖିଥିବେ।

ମନେପଡ଼େ ୧୯୯୨ ମସିହାର ଗୋଟିଏ ସକାଳ। ଏକ ଭିନ୍ନ କାମରେ ମୁଁ ଯାଇଥାଏ କଟକ, କଲ୍ୟାଣୀନଗରରେ ଥିବା ତାଙ୍କ ବାସଗୃହକୁ। ସମୟ ସକାଳ ୮/୯ଟା ହେବ। ସେ ଗୋଟିଏ ଧଳା ଲୁଙ୍ଗି ବା ଲୁଗା ଓ ଦେହରେ ଗୋଟିଏ ଗଞ୍ଜି ପିନ୍ଧି ବୁଲୁଥାନ୍ତି ନିଜ ଘର ଅଗଣାରେ ଥିବା ଛୋଟିଆ ବଗିଚାରେ। ପ୍ରଥମେ ମୋ ନମସ୍କାରର ପ୍ରତିନମସ୍କାର ଜଣାଇ ପ୍ରଶ୍ନକଲେ, "କ'ଣ ହେଲା ବାବୁ ?" ମୋର ପରିଚୟ ଓ ଆସିବାର ଅଭିପ୍ରାୟ ଜାଣିବା ପରେ ସେ ଏତେ ଅନ୍ତରଙ୍ଗ ଭାବରେ କଥା ହେଲେ ଲାଗୁଥିଲା ସତେ ଯେମିତି ଆମେ ବହୁ ଆଗରୁ ଜଣାଶୁଣା ଥିଲୁ। ମୋ ବାପାଙ୍କ ନାଁ ଶୁଣି ସେ ଆହୁରି ଆଗ୍ରହ ପ୍ରକାଶ କରି ବାପାଙ୍କ ଭଲମନ୍ଦ ପଚାରି ବୁଝିଥିଲେ। ମୁଁ ଭାବିପାରୁ ନଥାଏ ଯେ, ଭାରତର ବାଚସ୍ପତିଙ୍କ ସହ କଥା ହେଉଛି ନା ଜଣେ ସାଧାରଣ ଲୋକ ସହିତ। ଏଭଳି ଅମାୟିକ ବ୍ୟକ୍ତିତ୍ୱ ଆଜିକାଲି ଦୁନିଆରେ ବିରଳ ନିଶ୍ଚୟ।

ଜୀବନର ଅପରାହ୍ନରେ ନିଜର ବୟସାଧିକ୍ୟ କାରଣରୁ ନିଜ ଶରୀରଠାରୁ ସେ ହାରଯାଇଛନ୍ତି ସତ, ହେଲେ ତାଙ୍କ ଭିତରେ ଥିବା ସରଳ ଓ ଛଳଛଳ ମନଟି ସଦାସର୍ବଦା ସେମିତି ଉଜ୍ଜୀବିତ ହୋଇ ରହିଥିବ। ଖାଲି ଓଡ଼ିଶା ନୁହେଁ ସାରା ଭାରତରେ ଗୋଟିଏ ଲଢୁଆ ଆଦର୍ଶ, ନୀତିନିଷ୍ଠ ବ୍ୟକ୍ତିତ୍ୱ ଭାବରେ ଯେଉଁ ପରିଚୟ ସୃଷ୍ଟି କରିଛନ୍ତି ତାହା କାଳକାଳକୁ ଏକ ଉଦାହରଣ ହୋଇ ରହିଯିବ। ଈଶ୍ୱରଙ୍କ ନିକଟରେ ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି।

# ମୋର ବାଲ୍ୟବନ୍ଧୁ ରବି ରାୟ

**ମହାପାତ୍ର ନୀଳମଣି ସାହୁ**

ଭାରତବର୍ଷର ପ୍ରବୀଣ ଓ ବିଖ୍ୟାତ ନୀତିନିଷ୍ଠ ଆଦର୍ଶବାଦୀ ଜନନାୟକ ଶ୍ରୀଯୁକ୍ତ ରବି ରାୟ ମୋର ବାଲ୍ୟବନ୍ଧୁ-ପାଠବନ୍ଧୁ-ଆଦର୍ଶବନ୍ଧୁ ଓ ଆଜୀବନବନ୍ଧୁ – ଏ କଥା ଯେତେବେଳେ ଭାବେ, ସେତେବେଳେ ମୋର ହୃଦୟ ଗର୍ବ ଓ କୃତଜ୍ଞତାରେ ଭରିଉଠେ। ସେ ମୋର ସମକାଳୀନ ନୁହନ୍ତି – ସେ ମଧ ମୋର ଜୀବନ-ପଥରେ ବହୁଦିଗରୁ ସହଗାମୀ ସଖା ଓ ଜୀବନାନୁଭବରେ ସୁହୃଦ୍। ସେ ମଧ ମୋର ଶୁଭାକାଂକ୍ଷୀ, ଗୁଣମୁଗ୍ଧ, ସମ୍ମାନୀୟ ପ୍ରିୟଜନଙ୍କ ମଧରେ ଅନ୍ୟତମ।

୧୯୪୦-୪୧ ମସିହାରେ ଭିଙ୍ଗାରପୁରର ଶ୍ରୀ ବକ୍ରେଶ୍ୱର ହାଇସ୍କୁଲରେ ପ୍ରଥମଥର ପାଇଁ ଆମର ଚାରିବନ୍ଧୁ ମିଳିତ ହୋଇଥିଲେ ଏବଂ ସେହି ମୁହୂର୍ତ୍ତରେ ଆମେ ପରସ୍ପର ଆନ୍ତର-ସଂଯୋଗରେ ଯୁକ୍ତ ହୋଇଗଲୁ। ଗୋଟିଏ ମୁହୂର୍ତ୍ତରେ ହିଁ ଆମର ଆନ୍ତର-ସାକ୍ଷାତ ମଧ ହୋଇଗଲା ମୋତେ ଲାଗିଲା – ଏଇଭଳି ସାଙ୍ଗଟିଏ ପାଇବି ବୋଲି ମୋର ଭାଗ୍ୟବିଧାତା ମୋତେ ଭିଙ୍ଗାରପୁର ହାଇସ୍କୁଲରେ ଆଡ୍‌ମିଶନ ନେବାକୁ ବାଧକଲା। ତାହା ନହେଲେ ତ ମୁଁ ନିମାପଡ଼ା ହାଇସ୍କୁଲରେ ପଢ଼ିଥାନ୍ତି। ନିମାପଡ଼ା ମଧ ତତ୍କାଳୀନ ଓଡ଼ିଶାର କତିପୟ ହାଇସ୍କୁଲ ଭିତରେ ଖୁବ୍ ଶୀର୍ଷ ସ୍ଥାନରେ ଥିଲା। ଭିଙ୍ଗାରପୁର ହାଇସ୍କୁଲ ଥିଲା ତା' ତୁଳନାରେ ଅର୍ବାଚୀନ କିନ୍ତୁ ଦ୍ରୁତଗତିରେ ବିନାଶଶୀଳ।

ରବି ରାୟଙ୍କ ଗାଁ ଭଅଁରାଗଡ଼ – ଆମ ଗାଁ ନିଆଳୀଠାରୁ ପାଞ୍ଚ ଛଅ କିଲୋମିଟର ବାଟ। ତାଙ୍କ ଗାଁର ଭଅଁରା ନଟା (ଜଙ୍ଗଲ) ଆମ ନିଆଳୀ ଯାଏ ବ୍ୟାପିଥିଲା ଏବଂ ପ୍ରାଚୀ ନଦୀ କୂଳେକୂଳେ ଗୋପ କାକଟପୁର ଦେଇ ପୁରୀ ବାଲିଘାଇର ସମୁଦ୍ର ତଟବର୍ତ୍ତୀ ଜଙ୍ଗଲ ସହିତ ମିଶିଥିଲା। ସେତେବେଳେ ଆମର ସେ ଜଙ୍ଗଲରେ ବାଘ, ଭାଲୁ, ହରିଣ, ଅଜଗର, ଅହିରାଜ, ବାର୍‌ହା, ଗଧିଆ, କୋକୀ ସମେତ ନାନାଦି ଜୀବଜନ୍ତୁ ଥିଲେ। ରବି ରାୟଙ୍କ ବଂଶ ଭଅଁରାଗଡ଼ର ପ୍ରାଚୀନ ଐତିହାସିକ ଜମିଦାର ଥିଲେ। ଓଡ଼ିଶା ଗଜପତି ମହାରାଜାଙ୍କ ସେନାବାହିନୀରେ ତାଙ୍କର ପୂର୍ବତନ ବଂଶଧରମାନେ ଖୁବ୍ ଦାୟିତ୍ୱପୂର୍ଣ୍ଣ

ସାମରିକ କାର୍ଯ୍ୟରେ ନିଯୁକ୍ତ ରହୁଥିଲେ। ଆମ ବଂଶ ମଧ୍ୟ ନିଆଳୀର ଜମିଦାର ଓ କେତେକ ଗ୍ରାମର ମୋକଦମ୍ ଥିଲେ। ସେ ଥିଲେ କ୍ଷତ୍ରିୟ ଓ ମୁଁ ବ୍ରାହ୍ମଣ। ପାରମ୍ପରିକ ଗ୍ରାମ୍ୟ ଆଭିଜାତ୍ୟ ଆମ ଦୁହିଁଙ୍କ ରକ୍ତରେ ଥିଲା। କିନ୍ତୁ ଆମେ ଦୁହେଁଯାକ ଏବଂ ବିଧ ବୁର୍ଜୋୟା ଆଭିଜାତ୍ୟରୁ ନିଜକୁ ମୁକ୍ତ କରି ସେଇ ବାଲ୍ୟବଧିରୁ ଗାନ୍ଧିଜୀଙ୍କ ସମାଜବାଦ ମନ୍ତ୍ରରେ ଦୀକ୍ଷିତ ହୋଇଥିଲୁ। ସେ ଥିଲେ ମୋଠାରୁ ଡେଙ୍ଗା। କିନ୍ତୁ ଆମେ ଦୁହେଁ ଥିଲୁ ସମାନ ଭାବେ ସୁସ୍ଥ, ସବଳ, ପ୍ରାଣବନ୍ତ ଓ ଊର୍ଦ୍ଧ୍ୱମୁଖ। ଆମ ଦୁହିଁଙ୍କର ଦୈହିକ ଶକ୍ତି ସହିତ ମନର ଜୋର ଓ ଗଳାର ଜୋର ମଧ୍ୟ ସମାନ ଥିଲା ଏବଂ ହୃଦୟବତ୍ତାରେ ଆମେ ଦୁହେଁ ଦୁହିଁଙ୍କର ପରିପୂରକ ଥିଲୁ। ପାଠ ପଢ଼ାରେ ବି ଆମର ଥିଲା ସମାନ ଯୋଗ୍ୟତା। ଆମେ ଦୁହେଁଯାକ ନିର୍ଭୀକ ଥିଲୁ। କିନ୍ତୁ ମୁଁ ଭୂତପ୍ରେତଙ୍କ ପ୍ରତି ଖୁବ୍ ଭୟାଳୁ ଥିଲି। ତାଙ୍କର ସେ ଭୟ ବି ନଥିଲା।

ଆମେ ଦୁହେଁଯାକ ଥିଲୁ ଭୀଷଣ ଜିଦ୍‌ଖୋର କିନ୍ତୁ ମୁଁ ଥିଲି ତାଙ୍କଠାରୁ ଅଧିକ ରୋମାଣ୍ଟିକ ଓ ଖିଆଲବାଜ୍। ଆମେ ଦୁହେଁ ଥିଲୁ ଆଦର୍ଶବାଦୀ ସମାଜସଚେତନ-ସେବାପରାୟଣ-ନିଃସ୍ୱାର୍ଥପର-ଦେଶପ୍ରେମୀ। କିନ୍ତୁ ସେ ମୋଠାରୁ ଥିଲେ ଅଧିକ ନୀତି-ନିଷ୍ଠ ଓ ଶୃଙ୍ଖଳାପରାୟଣ। ସେଇ ପିଲାଦିନୁ ସେ ତାଙ୍କର ନୈତିକ ଚରିତ୍ର ଓ ବ୍ୟକ୍ତିତ୍ୱ ଉପରେ ଖୁବ୍ ସଚେତନ ଥିଲେ ଏବଂ ସେ ସମ୍ବନ୍ଧେ ଖୁବ୍ କଠୋର ଓ ଜିଦ୍‌ଖୋର ମଧ୍ୟ ଥିଲେ। ମାତ୍ର ମୋର ବ୍ୟକ୍ତିତ୍ୱ ଖୁବ୍ ଦୃଢ଼ ଥିଲେ ବି, ମୋର ପ୍ରକୃତି ଥିଲା ସାରୁପତ୍ରରେ ଜଳଠୋପା ପରି। ସବୁବେଳେ ଖସି ପଡ଼ିବାକୁ ଢ଼ଳ ଢ଼ଳ ହେଉଥାଏ ଏବଂ ବେଳେବେଳେ ଖସିପଡ଼େ ମଧ୍ୟ। ଏମିତି ଆମ ଦୁହିଁଙ୍କ ଭିତରେ ମେଳ ଥିଲା ଯେମିତି ନିବିଡ଼ – ଅମେଳ ବି କିଛି କମ୍ ନଥିଲା। ତଥାପି ମୁଁ ତାଙ୍କୁ ବହୁତ ଗଭୀର ଭାବେ ଭଲ ପାଉଥିଲି ଓ ବାହାରେ ପ୍ରତିବାଦ ପ୍ରତିରୋଧ କଲେ ବି ମୋ ଭିତରେ ଭିତରେ ତାଙ୍କୁ ସମ୍ମାନ କରୁଥିଲି। ମୋ ପ୍ରତି ମଧ୍ୟ ତାଙ୍କର ଗଭୀର ଅନୁରାଗ ଥିଲା। ଭିଙ୍ଗାରପୁର ହାଇସ୍କୁଲରେ ଚାରିବର୍ଷର ଛାତ୍ରଜୀବନରେ ସେ ମୋର ଏକମାତ୍ର ପରମବନ୍ଧୁ ଥିଲେ। ତାଙ୍କର ବ୍ୟକ୍ତିତ୍ୱ ଉପରେ ମୋର ଖୁବ୍ ପ୍ରତ୍ୟୟ ଥିଲା – ଆଶା ଓ ବିଶ୍ୱାସ ମଧ୍ୟ ଥିଲା। କହିବାକୁ ଗଲେ ତାଙ୍କ ବ୍ୟତୀତ ମୁଁ ଆଉ କାହାକୁ ସେତେବେଳେ ଖାତିର୍ ବି କରୁ ନଥିଲି। କିନ୍ତୁ ଖୁବ୍ ମତାନ୍ତର ମଧ୍ୟ ହେଉଥିଲା। ସେ ମୋତେ କହୁଥିଲେ, "ତୋର ଚାରିଦୁଆର ମେଳା"। ମୁଁ ତାଙ୍କୁ କହୁଥିଲି, "ତୁ ଗୋଟାଏ ମୁଦାଦେଉଳ"। ଆମେ ଦୁହେଁ ଛାତ୍ରାବାସରେ ଥିଲୁ। ସେ ଥିଲେ ହଷ୍ଟେଲର ଜେନେରାଲ ସେକ୍ରେଟାରୀ। ମୁଁ ଥିଲି ଏକ ନମ୍ବର ହଲ୍‌ର ମନିଟର। ସେତେବେଳେ ନବ ତରୁଣମାନଙ୍କର ବ୍ରହ୍ମଚର୍ଯ୍ୟ ପାଳନ

ଉପରେ କେତେକ ଛାତ୍ର ମାତିଥାନ୍ତି । ରବି ରାୟ ସେମାନଙ୍କ ନେତା । ଜାଗରଣ, ଶୟନ, ସପନ ସବୁ ଅବସ୍ଥାରେ ନାନାଦି ସଂଯମ – ଖୁବ୍ କଡ଼ାକଡ଼ି – କୌଣସି ପ୍ରକାର ସ୍ଖଳନକୁ ବରଦାସ୍ତ କରାଯିବ ନାହିଁ । ଭୋର ପାଞ୍ଚଟାରେ ଉଠି ରବି ରାୟ ଘଣ୍ଟା ବଜାନ୍ତି । ସମସ୍ତେ ବିଛଣାରୁ ଉଠି ମୁହଁ ହାତ ଧୋଇ ବାରଣ୍ଡାରେ ଠିଆହୋଇ କୋଡ଼ିଏ ମିନିଟ୍ ସମୂହ ନିରବ ପ୍ରାର୍ଥନା କରିବାକୁ ବାଧ । ତା'ପରେ ସ୍ନାନ – ତା'ପରେ ମୁଗ ବା ବୁଟଗଜା ଓ ଗୁଡ଼ ସେବନ । ତା'ରେ ପାଠଭ୍ୟାସ । ମୁଁ ଶୀତଦିନ ସକାଳେ ଏତେ ଭୋରରୁ ଉଠିପାରେନା । ରବି ରାୟ ପୁଣି ପ୍ରାର୍ଥନା ଲାଗି ଗୀତଗୋବିନ୍ଦରୁ ଦଶାବତାର ଶ୍ଲୋକ ସହିତ ଆଉ ଗୋଟିଏ ସଂସ୍କୃତ ପ୍ରାର୍ଥନା ସମବେତ କଣ୍ଠରେ ଗାଇବାକୁ ରଖିଥାନ୍ତି । ସମସ୍ତେ ଏକସ୍ୱରରେ ବୋଲିବାକୁ ବାଧ । ମାତ୍ର ଶୀତଦିନେ ଭୋର ପାଞ୍ଚଟାରେ ନିଦ୍ରା-ମୁଗ୍ଧ ଆଖି ଓ ତନ୍ଦ୍ରାବିହ୍ୱଳ ଗଳାରେ ଏତେବଡ଼ ପାଟିରେ ସ୍ୱରଧରି ଏତେ ଜଟିଳ ଛନ୍ଦୋବଦ୍ଧ ସଂସ୍କୃତ ପ୍ରାର୍ଥନା ବୋଲିବା ମୋ ପକ୍ଷରେ ଅସମ୍ଭବ ହେଉଥିଲା । ମୋର ବି ସେଥିପାଇଁ ଶୋଚନା ନଥିଲା । ଏଇ ଶୀତ କାକର ସକାଳରେ ଭଗବାନ "ସମାଗଚ୍ଛତୁ-ପ୍ରତ୍ୟାଗଚ୍ଛତୁବା" । ଦିନେ ଦିନେ ମୁଁ ବିଛଣାରୁ ଉଠେନି କି ଉଠିଲେ ବି ପ୍ରାର୍ଥନା ବୋଲେ ନାହିଁ । ଝରକା ଉପରେ ବସି – ଝରକାବାଡ଼ାକୁ ଧରି ଘୁମାଉଥାଏ । ମୋର ଏହି ଅନୀତି ଦେଖି ଜେନେରାଲ ସେକ୍ରେଟାରୀ ରବି ରାୟ ସହ୍ୟ କରିପାରନ୍ତି ନାହିଁ । ଏହା ନେଇ ଆମର କଜି ହୁଏ । ରବି ରାୟ କହନ୍ତି, "ବୁଝିଲୁ ! ଗାନ୍ଧିଜୀ ବ୍ରହ୍ମଚର୍ଯ୍ୟ ଉପରେ କେତେ ଜୋର୍ ଦେଇଛନ୍ତି, ତୁ ମୋ କଥା ନମାନି ପାରୁ; ମାତ୍ର ଗାନ୍ଧିଜୀଙ୍କ ନିର୍ଦ୍ଦେଶକୁ ଅବଜ୍ଞା କରିବୁ ? ତୋରି ଭଳି ଅଳସୁଆଙ୍କ ଯୋଗୁଁ ଆମ ଦେଶ ସ୍ୱାଧୀନତା ପାଇ ପାରୁନାହିଁ । ମୁଁ କିଞ୍ଚିତ୍ ଅବଜ୍ଞା ଓ ପରିହାସ କରି କହେ, "ତୁ ଭଲା କାହିଁକି ଗାନ୍ଧିଜୀଙ୍କୁ ସାବରମତୀ ଆଶ୍ରମରୁ ବକ୍ରେଶ୍ୱର ହାଇସ୍କୁଲକୁ ଟାଣି ଆଣୁଛୁ ? ଭାରତବର୍ଷର ସବୁତକ ମଣିଷ ଯଦି ଭୋର ପାଞ୍ଚଟାରୁ ଉଠି ଗୀତଗୋବିନ୍ଦର ଦଶାବତାର ଗାଇବେ ମିଳିମିଶି – ଇଂରେଜମାନେ ଭାରତବର୍ଷକୁ ସ୍ୱାଧୀନତା ଦେଇଦେବେ ?" ରବି ରାୟ ତାଙ୍କର ସ୍ୱରକୁ ଆହୁରି ଉଚା କରି କହନ୍ତି, "ଆବେ "ତୁ ବ୍ରହ୍ମଚର୍ଯ୍ୟର ଉପକାରିତା କ'ଣ ଜାଣୁ ? ତୋତେ ବ୍ରହ୍ମଚର୍ଯ୍ୟ ଉପରେ ଖଣ୍ଡିଏ ବହି ଦେଇଥିଲି, ପଢ଼ିଛୁ ? ତୁ ତ ଚନ୍ଦ୍ରମଣି ଦାସଙ୍କ 'ହାଇଫେନ୍' ଉପନ୍ୟାସ ପଢ଼ିବୁ । ଆଉ ଏହାର ଗୁରୁତ୍ୱ କ'ଣ ବୁଝିବୁ ?

ରବି ରାୟଙ୍କ ନେତୃ-ସୁଲଭ ବ୍ୟକ୍ତିତ୍ୱକୁ ସବୁ ଛାତ୍ର ମାନନ୍ତି । ମାତ୍ର ତାଙ୍କର ଏଇସବୁ କଠୋର ନୀତି-ନିଗଡ଼ ମତେ ବଡ଼ ବିରକ୍ତି ଲାଗେ । ବିଭିନ୍ନ ପ୍ରକାର ନୀତି ଓ ଆଦର୍ଶ ଉପରେ ଆମର ଘଣ୍ଟା ଘଣ୍ଟା ଧରି ବଡ଼ପାଟିରେ ଯୁକ୍ତିତର୍କ ଚାଲେ । ଅନ୍ୟ

ପିଲାମାନେ ଜମାହୋଇ ମଜା ଦେଖନ୍ତି। କିଛିଦିନ ପରେ ମୁଁ ଗୋଟିଏ ହସ୍ତଲେଖା ମାସିକ ପତ୍ରିକା ବାହାର କଲି। ତାହା ଥିଲା 'ନିଆଁଖୁଣ୍ଟା ବା ଦୁର୍ମୁଖ ଜାତୀୟ'। ସମ୍ପାଦନା ମଣ୍ଡଳୀରେ ରହିଲେ ପରବର୍ତ୍ତୀ କାଳର ଗାଳ୍ପିକ ବ୍ରଜକିଶୋର ମହାନ୍ତି ଓ ଅବସରପ୍ରାପ୍ତ ପୋଲିସ ଅଫିସର ଯୋଗେନ୍ଦ୍ର ବିଶ୍ୱାଳ। କିନ୍ତୁ ପତ୍ରିକାରେ ସମ୍ପାଦକଙ୍କ ନାମ ଲେଖାହେଲା – 'ନୀଳକିଶୋର ବିଶ୍ୱାଳ'। ସେ ପତ୍ରିକାରେ ଶିକ୍ଷକମାନଙ୍କୁ ନେଇ ମଧ ବ୍ୟଙ୍ଗବିଦ୍ରୂପ ଚାଲିଲା। କେତୋଟି ଗଳ୍ପ କବିତା ବି ପ୍ରକାଶ ପାଇଲା। ସେଥିରେ ରବି ରାୟଙ୍କର କର୍କଶ କଠୋର କାଣ୍ଡଜ୍ଞାନହୀନ ବ୍ରହ୍ମଚର୍ଯ୍ୟ ଆଦର୍ଶବାଦକୁ ନେଇ ନାନା ବ୍ୟଙ୍ଗ-ବିଦ୍ରୂପ କଲି। ତାଙ୍କ ସଂପର୍କୀୟ ଏକ ବ୍ୟଙ୍ଗ ରଚନାର କେତୋଟି ପଦ ଅଧାଅଧା ମନେପଡୁଛି।

ବ୍ରହ୍ମଚାରୀ ରବି ରାଏ –
ପାହାନ୍ତାରୁ ଉଠି ଗାଧେଇ ଯାଏ।
ଆଖିବୁଜି କରେ ଧ୍ୟାନ – ପାଟିକରି ବୋଲେ ଜଣାଣ
ବ୍ରହ୍ମଙ୍କୁ ନ ଚିହ୍ନି କରେ ବ୍ରହ୍ମଚାରଣ।

ଏମିତି କେତେ କଥା – ଆଉ ବେଶୀ ମନେପଡୁନି। ତାଙ୍କର ଭିଣୋଇ ପୂଜନୀୟ ସ୍ୱର୍ଗତ ବଳରାମ ରାୟ ଥିଲେ ସେ ସ୍କୁଲର ଜଣେ ଆଦର୍ଶ ଇଂରାଜୀ ଶିକ୍ଷକ। ପୂଜନୀୟ ସ୍ୱର୍ଗତ ଚିନ୍ତାମଣି ଜେନା ଥିଲେ ସହକାରୀ ପ୍ରଧାନଶିକ୍ଷକ ଓ ପ୍ରଧାନଶିକ୍ଷକ ଥିଲେ ଉତ୍କଳର ବିଶିଷ୍ଟ ଶିକ୍ଷାବିତ୍ "ଆହେ ଦୟାମୟ ବିଶ୍ୱବିହାରୀ"ର କବି ପୂଜନୀୟ ସ୍ୱର୍ଗତ ରାମକୃଷ୍ଣ ନନ୍ଦ। ପୂଜନୀୟ ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର ମିଶ୍ର ଥିଲେ ଅଦ୍ୱିତୀୟ ସଂସ୍କୃତ ଶିକ୍ଷକ। ରବି ରାୟ ଥିଲେ ସମସ୍ତଙ୍କର ପ୍ରିୟ ଛାତ୍ର। ମୁଁ ସେ ପତ୍ରିକାରେ ଶିକ୍ଷକମାନଙ୍କୁ ନେଇ ମଧ ବିଦ୍ରୂପ କରୁଥିଲି। କିନ୍ତୁ ସେମାନେ କେହି ଦେହକୁ ନେଉ ନଥିଲେ। ରବି ରାୟ ମଧ ମୋର ବ୍ୟଙ୍ଗବିଦ୍ରୂପରେ ପ୍ରତିକ୍ରିୟାଶୀଳ ନ ହୋଇ ହୋ ହୋ ହୋଇ ହସୁଥିଲେ।

ଗୋଟିଏ ଘଟଣା ମୋର ଖୁବ୍ ମନେପଡ଼େ। ମୁଁ ଓ ମୋର ଜଣେ ଦୁଃସାହସୀ ରୁମ୍‌ମେଟ୍ ଆଦିକନ୍ଦ ରାଉତରାଏ ମିଶି ଆମ ରୁମ୍‌ରେ କେତେକ ପ୍ରାଣୀ ପୋଷିଥିଲୁ। ଦୁଇଟି ପାତିହଂସ - ଦୁଇଟି ଚୂଳିଆ ଚଢ଼େଇ - ଗୋଟିଏ ନେଉଳ। ଦିନେ ଆଦିକନ୍ଦ ଦୁଇଟି ନାଗଛୁଆ ଧରି ଆଣି ଗୋଟେ କାଚଜାର୍‌ରେ ରଖି ଟେବୁଲ ଉପରେ ରଖିଲେ। ଉଦ୍ଦେଶ୍ୟ – ଦିନେ ଛାତ୍ରମାନଙ୍କ ଆଗରେ ଅହିନକୁଳ ସଂଗ୍ରାମ ପ୍ରଦର୍ଶିତ ହେବ। ଛାତ୍ରମାନେ ଭୟରେ ବ୍ୟାକୁଳ ହେଲେ। ରବିରାୟ ଆମର ଏହି ବିଚିତ୍ର ଅବିମୃଶ୍ୟକାରିତାରେ ରାଗିଯାଇ ଆମକୁ ନାଗଛୁଆ ଦୁଇଟିକୁ ବିଲରେ ଛାଡ଼ି ଆସିବାକୁ କହିଲେ। ଆମେ କିନ୍ତୁ ଆମ କାର୍ଯ୍ୟରେ ଅଟଳ। ସେ ଆମ ନାମରେ ପ୍ରଧାନଶିକ୍ଷକଙ୍କୁ

ରିପୋର୍ଟ କଲେ ଏବଂ ଦିନେ ହେଡ୍‌ମାଷ୍ଟ ରାମକୃଷ୍ଣ ବାବୁ ଅନ୍ୟ ଶିକ୍ଷକମାନଙ୍କ ସହ ଆସି ଏକ ନମ୍ବର ହଲ୍‌ରେ ଆମର ଏ କାଣ୍ଡକାରଖାନା ଦେଖି ପ୍ରଥମେ ହସିଉଠିଲେ । କହିଲେ, "ନୀଳମଣି ! ଏ କ'ଣ ଚିଡ଼ିଆଖାନା ନା ଛାତ୍ରବାସ ?" ତଥାପି ଭୟରେ ମୋ ପାଟିରୁ କଥା ବାହାରୁ ନଥାଏ । ଏହି ସମୟରେ ହଠାତ୍ ସଂସ୍କୃତ ପଣ୍ଡିତେ ଗୋବିନ୍ଦ ବାବୁ ଦୁଇହାତ ଉପରକୁ ଟେକି କ୍ରୁଦ୍ଧସ୍ୱରରେ କହିଲେ, "ଏ କି ଅବ୍ୟାପାର ! ସସର୍ପ ଚ ଗୃହେ ବାସ - ମୃତ୍ୟୁହେବ ନ ସଂଶୟଃ ।" ଏଥିରେ ହେଡ୍‌ମାଷ୍ଟର ଗମ୍ଭୀର ହୋଇ ଆଦେଶ ଦେଲେ – ଏହି ମୁହୂର୍ତ୍ତରେ ଏ ନାଗଛୁଆ ଦୁଇଟାକୁ ବିଲରେ ଛାଡ଼ିଦେଇ ଆସ । ତା'ପରେ ଅନ୍ୟ ପ୍ରାଣୀମାନଙ୍କୁ ମୁକ୍ତ କର । ଆଦେଶ ତତ୍‌କ୍ଷଣାତ୍ ପାଳିତ ହେଲା । କେବଳ ହଂସ ଦୁଇଟି ସ୍କୁଲ ପୁଷ୍କରିଣୀରେ ଥିବାରୁ ରହିଗଲେ । ରବି ରାୟଙ୍କର ବିଜୟ ହେଲା ।

ତା'ପରେ ଏ ଘଟଣାକୁ ନେଇ ମୁଁ ଆମ ବ୍ୟଙ୍ଗ ପତ୍ରିକାରେ ରବି ରାୟଙ୍କୁ ନେଇ ବ୍ୟଙ୍ଗାତ୍ମକ ଲେଖାଟିଏ ଲେଖିଲି । ତା'ର ନାମ ଥିଲା – "ରବି ରାୟଙ୍କର ଆଳୁଦୋଷ ।" ରବି ରାୟ ଦୟାଳୁ ନା ଭୟାଳୁ ? ଦିନେ ସନ୍ଧ୍ୟାରେ ରବି ରାୟ ଆସି ମତେ କହିଲେ, "ମୁଁ ରିପୋର୍ଟ କରି ନଥାନ୍ତି – ଯଦି ତୁ ନାଗଛୁଆ ଦୁଇଟାକୁ ଛାଡ଼ିଦେଇ ଥାନ୍ତୁ ।" କିନ୍ତୁ ମୋର ବିଦ୍ରୂପାତ୍ମକ ଲେଖା କଥା କହି ହସି ହସି ଗଡ଼ିଗଲେ ।

ଏମିତି ଏମିତି ନାନା କଥାରେ ଆମର ଯୁକ୍ତିତର୍କ ଚାଲେ ସିନା କିନ୍ତୁ ଆମ ଭିତରୁ ଶ୍ରଦ୍ଧା ଓ ପ୍ରୀତି କେବେ ତୁଟେ ନାହିଁ । ମୁଁ କବିତା ଲେଖୁଥିଲି । ସେ ମୋ କବିତା ଖୁବ୍ ଆଗ୍ରହରେ ଶୁଣୁଥିଲେ । ତାଙ୍କର ମୋ ଭଳି ସାହିତ୍ୟ ଓ ସଙ୍ଗୀତ ପ୍ରତି ସେଇ ପିଲାଦିନୁ ଖୁବ୍ ଆକର୍ଷଣ ଥିଲା – ସେଥିରେ କିଛି ପ୍ରବେଶ ବି ଥିଲା । ମୋ ଭଳି ସେ ମଧ୍ୟ ସେହି ପିଲାଦିନୁ ଓଡ଼ିଆ, ଇଂରାଜୀ ଓ ବଙ୍ଗଳା ଭାଷାରେ ବହୁ ବହି ପଢୁଥିଲେ । ଭାରତୀୟ ଜୀବନାଦର୍ଶ ପ୍ରତି ସେ ଖୁବ୍ ଆକୃଷ୍ଟ ଥିଲେ । ବିଶେଷତଃ ସ୍ୱାମୀ ବିବେକାନନ୍ଦ ଓ ଗାନ୍ଧିଜୀଙ୍କ ଆଦର୍ଶ ତାଙ୍କୁ ଖୁବ୍ ଅନୁପ୍ରାଣିତ କରିଥିଲା । ସେତେବେଳେ ଉତ୍କଳମଣି ଗୋପବନ୍ଧୁ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ସରଳା ଦେବୀ, ଗୋଦାବରୀଶ, ନୀଳକଣ୍ଠ, ଆଚାର୍ଯ୍ୟ ହରିହରଙ୍କ ଆଦର୍ଶ ଆମ ଦୁହିଁଙ୍କୁ ଖୁବ୍ ଅନୁପ୍ରାଣିତ କରିଥିଲା । ସେତେବେଳେ ଆମେ ପ୍ରତିଦିନ ଅରଟ ବା ଧନୁଷ୍କୁକଲିରେ ସୂତା କାଟୁଥିଲୁ ଓ ଖଦଡ଼ ପିନ୍ଧୁ ଥିଲୁ । ପ୍ରତିଦିନ ଉଦ୍ୟାନ କର୍ମ କରୁଥିଲେ । ସ୍କୁଲର ତର୍କସଭାରେ ପ୍ରମୁଖ ଅଂଶଗ୍ରହଣ କରୁଥିଲୁ । ଆମେ ସ୍କାଉଟ୍ ଓ ରେଡ଼କ୍ରସରେ ମଧ୍ୟ ଥିଲୁ । ଗାଁମାନଙ୍କରେ ବନ୍ୟା, ଘରପୋଡ଼ି, ହଇଜା ପ୍ରଭୃତି ଆପଦବିପଦରେ ରବି ରାୟ ନିଜେ ନେତୃତ୍ୱ ନେଇ ଅନ୍ୟ ପିଲାମାନଙ୍କ ସହ ଗ୍ରାମସେବା କାର୍ଯ୍ୟ କରୁଥିଲେ ।

ମୋର ବଡ଼ଭାଇ ସ୍ୱର୍ଗତ କୁଳମଣି ମହାପାତ୍ର ସେତେବେଳେ କଟକରେ ପ୍ୟାରିମୋହନ ଏକାଡ଼େମୀରେ ପଢୁଥିଲେ। ସେ ଫରଓ୍ୱାର୍ଡ ବ୍ଲକ ଦଳରେ ଥିଲେ। ନେତାଜୀ ସୁଭାଷ ବୋଷ ଥିଲେ ତାଙ୍କର ଆଦର୍ଶ। ବୟାଳିଶି ସ୍ୱାଧୀନତା ଆନ୍ଦୋଳନରେ ସେ ଜେଲ୍ ଗଲେ। ରବି ରାୟଙ୍କୁ ସେ ଖୁବ୍ ଭଲ ପାଉଥିଲେ। କିନ୍ତୁ ରବି ରାୟ ଓ ମୁଁ ଥିଲୁ ଖାଣ୍ଟି ଗାନ୍ଧିବାଦୀ। ରବି ରାୟ ମୋ ଭାଇନାଙ୍କ ସହିତ ରାଜନୀତି ସଂପର୍କରେ ଆମଘରେ ଥରେ ଗୋଟିଏ ରାତି ଅନିଦ୍ରା ହୋଇ ଯୁକ୍ତିତର୍କ ଆଲୋଚନା କରିଥିଲେ। ନିଜ ମତରେ ଅଟଳ ରହିବା ସେହିଦିନୁ ତାଙ୍କଠାରେ ମୁଁ ଲକ୍ଷ୍ୟ କରିଆସିଛି। ସେତିକିବେଳୁ ସେ ବହୁ ରାଜନୈତିକ ସାହିତ୍ୟ ପଢୁଥିଲେ ଓ ତେଜସ୍ୱିନୀ ବକ୍ତୃତା ମଧ୍ୟ ଦେଇ ଆସୁଥିଲେ। ତାଙ୍କର ସଂଗଠନ କ୍ଷମତା ମଧ୍ୟ ଥିଲା। ଅନ୍ୟ ଛାତ୍ରମାନଙ୍କୁ ସେ ବେଶ୍ ପ୍ରଭାବିତ କରିପାରୁଥିଲେ।

ସେ ମୋତେ ବହୁବେଳେ ଛିଗୁଲାନ୍ତି – "ତୁ ଗୋଟାଏ ରୋମାଣ୍ଟିକ୍ ଲୋଟସ୍ ଇଟର ପୋଏଟ୍। ତୋ ଦେହାତି କ'ଣ କିଛି ହେବ?" ମୁଁ ମଧ୍ୟ ତାଙ୍କୁ ଛିଗୁଲାଏ – ତୁ ମଧ୍ୟ ଗୋଟିଏ ରୋମାଣ୍ଟିକ୍ ପଲିଟିସିଆନ୍। ତୋ ଦେହାତି ବି କ'ଣ କିଛି ହେବ? ଆଜିପର୍ଯ୍ୟନ୍ତ ବି ଆମେ ଦୁହେଁ ପରସ୍ପରକୁ ଏମିତି ମଧୁର ଭର୍ତ୍ସନା କରୁ ଓ ଆମୋଦିତ ହେଉ।

ଆଜି ବୁଝୁଛି – ତାଙ୍କ ଭାଷାରେ ମୁଁ ରୋମାଣ୍ଟିକ୍ ପୋଏଟ୍‌ଟିଏ ହୋଇ ବହୁ ବହି ଲେଖିଛି – ବିକ୍ରୀ ବହିରୁ ଟଙ୍କା ପାଇଛି – କେତେ ପୁରସ୍କାର, ଉପାୟନ ମଧ୍ୟ ପାଇଛି। ମାତ୍ର ରବି ରାୟ ଲୋହିଆ ସମାଜବାଦୀ ଦଳର ନେତା ହୋଇ ଓ ଭାରତବର୍ଷର ଜଣେ ଜାଜ୍ଜଲ୍ୟମାନ ଆଦର୍ଶ ଜନନାୟକ ହୋଇ କ'ଣ ପାଇଛନ୍ତି? କ'ଣ ହୋଇଛନ୍ତି? ନା ମୁଖ୍ୟମନ୍ତ୍ରୀ ନା ପ୍ରଧାନମନ୍ତ୍ରୀ ନା ପ୍ରେସିଡ଼େଣ୍ଟ? ଅଥଚ ସବୁକିଛି କ୍ଷମତାସନ ତାଙ୍କୁ ପାଇ ନିଜେ ଅଳଙ୍କୃତ ହୋଇଥାନ୍ତେ। ସେ ନିଜେ ମଧ୍ୟ ସବୁକିଛି ହୋଇପାରି ଥାନ୍ତେ ଏବଂ ତାଙ୍କଦ୍ୱାରା ରାଜ୍ୟ ଓ ଦେଶର ବହୁ ମଙ୍ଗଳ ମଧ୍ୟ ହୋଇପାରିଥାନ୍ତା। କିନ୍ତୁ ଆଜିର କ୍ଷମତାଲୋଭୀ ଦୁର୍ନୀତିଗ୍ରସ୍ତ ରାଜନୀତି ସହିତ ସେ କେବେ ସାଲିସ୍ କରିନାହାନ୍ତି। ତେଣୁ ଦେଶର ଗଣତାନ୍ତ୍ରିକ ସମାଜବାଦୀ ବ୍ୟବସ୍ଥାରେ ତାଙ୍କ ଭଳି ଜଣେ ଗରିମାମୟ ଗଣତାନ୍ତ୍ରିକ ସମାଜବାଦୀ ନେତାଙ୍କ ମସ୍ତକରେ ଦେଶ ରାଜମୁକୁଟ ପିନ୍ଧାଇ ଦେଇନାହିଁ। ଏବଂ ସେ ନିଜେ ମଧ୍ୟ ରାଜମୁକୁଟଟିଏ ଛଡ଼ିଆ ଛଡ଼ି କରି ପିନ୍ଧିବାର ନେତା ନୁହନ୍ତି। ତେବେ ଏ କଥା ସତ ଯେ, ଜନତା-ଜନାର୍ଦ୍ଦନଙ୍କ ହୃଦୟ-ସିଂହାସନରେ ସେ ଖୁବ୍ ଉଚ୍ଚ ଓ ଦୃଢ଼ ଆସନରେ ଅଧିରୂଢ଼ ଅଛନ୍ତି। ଏବେ ବି ଜନସାଧାରଣଙ୍କର ତାଙ୍କ ଉପରେ

ଆସ୍ଥା, ଭରସା ଓ ବିଶ୍ୱାସ ଅତୁଟ ରହିଛି। ସମ୍ମାନ ବି ଅତୁଟ ରହିଛି। ଆମ ଦୁହିଁଙ୍କର ବନ୍ଧୁତ୍ୱ ଆଜି ମଧ ଅମ୍ଳାନ ଓ ଜୀବନ୍ତ ହୋଇ ରହିଛି। ସେ ମୋତେ ଦେଖିଲେ ସେ ଦିନର କିଶୋର ବାଳକଟିଏ ପାଲଟି ଯାଆନ୍ତି ଓ ନିଜକୁ ଭୁଲିବା ସହିତ ସ୍ଥାନ-କାଳ-ପାତ୍ର ବି ଭୁଲିଯାନ୍ତି। ମୋ ନାତିନାତୁଣୀମାନଙ୍କ ସହିତ ହୃଦୟ ଖୋଲି ଗେଲଟାପରା ହୁଅନ୍ତି। ତାଙ୍କ ଭଳି ଅସାଧାରଣ ମଣିଷ ଯେତେବେଳେ ସାଧାରଣ ସ୍ତରକୁ ଖସିଆସନ୍ତି – ସେତେବେଳେ ତାଙ୍କର ଏ ଅସାଧାରଣତ୍ୱ ଆହୁରି ଶ୍ରୀମନ୍ତ ହୋଇଉଠେ।

ଭିଙ୍ଗାରପୁରରେ ପଢୁଥିଲା ବେଳେ ବିଭିନ୍ନ ଛୁଟିରେ ମୁଁ ତାଙ୍କ ଘରକୁ ଓ ସେ ଆମ ଘରକୁ ଯିବାଆସିବା କରୁ। ଆମ ଘରେ ମୋ ବୋଉ, ବାପା, କକା, ଖୁଡ଼ୀ ଓ ଭାଇମାନେ ତାଙ୍କୁ ବହୁତ ଭଲ ପାଉଥିଲେ। ମୁଁ ବି ସେମିତି ତାଙ୍କ ଘରେ ବହୁ ସ୍ନେହ ଆଦର ପାଉଥିଲି। ମୋର ତ ଭଉଣୀମାନେ ସମସ୍ତେ ମରିଯାଇଥିଲେ। ତାଙ୍କର ଭଉଣୀମାନେ ଥିଲେ କିନ୍ତୁ ଖୁବ୍ ସ୍ନେହଶୀଳା ଆଉ ଭ୍ରାତୃବତ୍ସଳା। ମୋର ମନେଅଛି – ତାଙ୍କର ଜଣେ ବିବାହିତା ଭଉଣୀ ବାହାଘର ଦିନୁ ଆଉ ପିତୃଗୃହକୁ ଫେରି ନଥିଲେ। ରବି ରାୟଙ୍କୁ ପାଞ୍ଚ ଛଅବର୍ଷ ହେଲା ପର୍ଯ୍ୟନ୍ତ ସେ ତାଙ୍କୁ ଦେଖି ନଥିଲେ। ମୋର ମନେଅଛି – ପ୍ରଥମଥର ତାଙ୍କ ଗାଁକୁ ଯାଇ ତାଙ୍କ ଘରେ ଥିଲାବେଳେ ମତେ ରାତିଯାକ ନିଦ ହୋଇ ନଥିଲା। ମତେ କୁହାଯାଇଥିଲା ଯେ ରାତିରେ ନିକଟରୁ ବାଘର ହେଣ୍ଟାଳ ଶୁଣାଯିବ। ସେଇ ଆଶାରେ ମୁଁ ଗୋଟିଏ ରାତି ଅନିଦ୍ରା ହୋଇ ବିଛଣାରେ ପଡ଼ିଥାଏ। କିନ୍ତୁ ସେ ଉନ୍ନିଦ୍ରରଜନୀରେ ଚିରାଚରିତ ଶୃଗାଳମାନଙ୍କ ରବ ବ୍ୟତୀତ ସେହି ଆଶ୍ରୁତପୂର୍ବ ବ୍ୟାଘ୍ରଗର୍ଜନ ମୋର କର୍ଣ୍ଣପଥାରୂଢ଼ ହୋଇ ନଥିଲା। ସକାଳେ ଉଠି ମୋ କଥା ଶୁଣି ସେଦିନ ସମସ୍ତେ ଖୁବ୍ ହସ-ଆମୋଦ କରିଥିଲେ। କିନ୍ତୁ ସେଇ ପିଲାଦିନେ ଭଅଁରା ଜଙ୍ଗଲର କଲରାପତ୍ରିଆ ବାଘ ଓ ବାରାହାମାନଙ୍କୁ ମୁଁ ଆମ ଗାଁରେ ବହୁବାର ଦେଖିଛି।

ଆଉ ଗୋଟିଏ ମଜାକଥା ମୋର ମନେପଡୁଛି। ମୁଁ ହାଇସ୍କୁଲରେ ପଢ଼ିଲା ପର୍ଯ୍ୟନ୍ତ ଟ୍ରେନ୍‌ରେ ବସି ନଥିଲି। କେବଳ ଦୂରରୁ ଟ୍ରେନ୍ ଦେଖୁଥିଲି। ଥରେ ଜାନୁଆରୀ ମାସ ଶେଷଭାଗରେ ରବି ରାୟ ଓ ମୁଁ ଚାଲିଚାଲି ଭିଙ୍ଗାରପୁରରୁ ବାଲିଅନ୍ତା ଦେଇ ଭୁବନେଶ୍ୱର ଆସିଲୁ। ବାଟରେ ଅଜସ୍ର ପାଚିଲା ବରକୋଳି ଖାଇ ଖାଇ ଆସୁଥାଉଁ। ଭୁବନେଶ୍ୱରରେ ପହଞ୍ଚି ଲିଙ୍ଗରାଜ ଦର୍ଶନ ଓ ପ୍ରସାଦ ସେବନ ସାରି ଚାଲି ଚାଲି ଷ୍ଟେସନ ଗଲୁ। ସେଠାରେ ଦୁଇଅଣାର ଟିକେଟ କରି ତାଳଚେର ଟ୍ରେନ୍‌ରେ ତୃତୀୟ ଶ୍ରେଣୀ ଡବାରେ ବସିଲୁ। ରବି ରାୟ ଅବଶ୍ୟ ଆଗରୁ ଟ୍ରେନ୍ ଓ କଟକ ସହ ପରିଚିତ ଥିଲେ। ମାତ୍ର ମୁଁ ପୁରା ନୂଆ। ଟ୍ରେନ୍‌ରେ ବସି ମୁଁ ସେଦିନ ଏକ ସ୍ୱର୍ଗୀୟ ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇ ପଡ଼ିଥାଏ।

ଏତେ ଲମ୍ବା ଗର୍ଜନଶୀଳ ଦ୍ରୁତଗାମୀ ଏହି ଯାନଟି ମୋତେ ଗୋଟାଏ ଦୈତ୍ୟ ଭଳି ଜଣାପଡୁଥାଏ। ଇଞ୍ଜିନ୍‌ରୁ କୋଇଲା ଧୂଆଁ ଭକ୍‌ଭକ୍ ହୋଇ ବାହାରୁଥାଏ। ସର୍ବୋପରି ଟ୍ରେନ୍ ଚାଲିଲାବେଳେ ଯୋଉ ଛନ୍ଦୋବଦ୍ଧ ଶବ୍ଦ – ତାହା ମୋତେ ଗୋଟାଏ ଅଲୌକିକ ଜଗତକୁ ଟାଣି ନେଇଥାଏ। ଯାନ୍ତ୍ରିକ ଯାନମାନଙ୍କ ଭିତରେ ମୁଁ କେବଳ ସାଇକେଲ୍ ଚଢ଼ି ଜାଣିଥାଏ। ରବି ରାୟ କିନ୍ତୁ ସେତେବେଳେ ମୋଠାରୁ ବହୁ ବିଷୟରେ ଆଧୁନିକ ଥିଲେ। ତାଙ୍କ ବଡ଼ଭାଇ ମୋ ବଡ଼ଭାଇ ସେତେବେଳେ କଟକରେ ପଢୁଥିଲେ ଓ କାଠଯୋଡ଼ି ହଷ୍ଟେଲରେ ରହୁଥିଲେ। ଆମେ ଯାଇ ତାଙ୍କରି ପାଖରେ ରହିବୁ। ବାରଙ୍ଗ ଷ୍ଟେସନରେ ମୁଁ ତାଙ୍କୁ ପଚାରିଲି – ରବି ! ଟ୍ରେନ୍‌ରେ ଏତେ ଗୁଡ଼ାଏ ଚକା। ଏତେ ଗୁଡ଼ାଏ ଚକାରେ ପମ୍ପ କିଏ କିପରି ଦିଏ ? ରବି ରାୟ ମୋ ପିଠିରେ ଗୋଟାଏ ଥାପଡ୍ ମାରି (ଥାପଡ୍ ମାରିବା ଅଭ୍ୟାସ ଏବେ ବି ତାଙ୍କର ଅଛି)। କହିଲେ – ବୋକା ! ଟ୍ରେନ୍ ଚକା କ'ଣ ସାଇକେଲ ନା ମଟର ଚକା ? ଏଗୁଡ଼ାକ ପରା ଲୁହା ଚକ ! ଦେଖି ପାରୁନୁ। ମୁଁ ଅପ୍ରସ୍ତୁତ ହୋଇଗଲି। ମୋର ଅଦୃଷ୍ଟପୂର୍ବ ଏହି ଦୈତ୍ୟାକାର ବିରାଟ ଟ୍ରେନ୍‌ଟିକୁ ପ୍ରଥମଥର ଦେଖି ମୁଁ ଏତେ ଅଭିଭୂତ ବା ଆତ୍ମବିସ୍ମୃତ ହୋଇଯାଇଥିଲି ଯେ ତା'ର ସର୍ବାଙ୍ଗ ଦର୍ଶନ ମୋ ପକ୍ଷରେ ସମ୍ଭବ ହୋଇ ନଥିଲା। କିନ୍ତୁ ସେହି ଦିନୁ ରବି ରାୟ ଯେତେବେଳେ ମୋର ତେଜ ହରଣ କରିବାକୁ ଚାହୁଁଥିଲେ, ମୋତେ ବିଦ୍ରୂପ କରି ହସି ହସି କହୁଥିଲେ – "ଆରେ ଯା-ଯା ଟ୍ରେନ୍ ଚକାରେ ପମ୍ପ ଦେବୁ। କେତେ ବଡ଼ ବଡ଼ କଥା କହୁଛୁ ?" କହିବା ବାହୁଲ୍ୟ – ତାଙ୍କର ଏତିକି କଥାରେ ମୋର ବ୍ୟକ୍ତିତ୍ୱ ମ୍ଳାନ ପଡ଼ିଯାଏ।

ସେଥର କଟକରେ ଭାଇମାନଙ୍କ ପାଖରେ ଥିଲୁ ପ୍ରାୟ ଏକ ସପ୍ତାହ। ତା' ଭିତରେ ସରସ୍ୱତୀ ପୂଜା ଓ ଉତ୍କଳ ଗୌରବ ମଧୁସୂଦନଙ୍କ ଜୟନ୍ତୀ ପଡ଼ିଥାଏ। ସେ ମୋତେ ସାରା କଟକ ବୁଲାଇ ଦେଖାଇ ଥିଲେ। ସେ ସମ୍ବନ୍ଧେ ସେ ମୋଠାରୁ ବହୁ ବିଷୟରେ ସୁଜାଣ ଥିଲେ। ତାଙ୍କୁ କଟକର ଇତିହାସ ଭୂଗୋଳ ଜଣାଥିଲା। ହାତଟଣା ରିକ୍ସା କରି ଦୁହେଁଯାକ ସାରା କଟକ ବୁଲୁଥାଉଁ। ମୋର ମନେପଡୁଛି – କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍ସରେ 'ଭାତ' ନାଟକ ସାଙ୍ଗ ହୋଇ ଦେଖିଥିଲୁ।

ରବି ରାୟ ରାଜନୀତିର ମଣିଷ। କିନ୍ତୁ ପିଲାଦିନୁ ସେ ଖୁବ୍ ସାହିତ୍ୟ ଓ ସଙ୍ଗୀତାନୁରାଗୀ ଥିଲେ। ସେତିକିବେଳେ ଆମେ 'ରାଧାନାଥ ଗ୍ରନ୍ଥାବଳୀ', 'ମଧୁସୂଦନ ଗ୍ରନ୍ଥାବଳୀ' ଓ ମେହେର ଗ୍ରନ୍ଥାବଳୀର ଅନେକ ପଦ ପଠନ ରଖି ପଦ୍ୟାନ୍ତ ପ୍ରତିଯୋଗିତାରେ ମାତ୍ କରିଦେଇଥିଲୁ। ମୁଁ ଥିଲି ଭଲ ଅଭିନେତା ଏବଂ ଭଲ କ୍ୟାରିକେଚର ଓ କମିକ୍ ଦେଖାଇ ଦର୍ଶକମାନଙ୍କୁ ହସାଇ ହସାଇ ବେଦମ୍ କରି

ଦେଉଥିଲି । ମୋର କଲେଜରେ ପଢ଼ିବା ପର୍ଯ୍ୟନ୍ତ ଏ ଗୁଣ ଥିଲା । ସାଙ୍ଗ ମେଳରେ ରବି ରାୟଙ୍କୁ ବି କ୍ୟାରିକେଚର କରେ ଏବଂ ସେ ହସି ହସି ଗଡ଼ିଯାଆନ୍ତି । ତାଙ୍କର ରସିକତା ସେବେ ଥିଲା, ଏବେ ବି ଅଛି । ଆଧୁନିକ ରାଜନୀତିକ ନେତାମାନେ ଏତେ ଆତ୍ମଚାରୀ ଓ ସ୍ୱସର୍ବସ୍ୱ ଯେ ସେମାନଙ୍କର ରସବୋଧ ପ୍ରାୟ ନଥାଏ । ରବି ରାୟଙ୍କର ହସ କିନ୍ତୁ ଦେଖିବାର କଥା । ଏବେ ବି ସେ ଯେକୌଣସି ପରିସ୍ଥିତିରେ ବେପରୁଆ ହସନ୍ତି । ହସିଲାବେଳେ ସେ ଦିଶନ୍ତି ନିଷ୍କଳ ଶିଶୁ ବା ବାଳକଟିଏ ଭଳି । ତାଙ୍କର ମନ ଯେପରି ନିର୍ମଳ ଓ ଉଦାର ହୃଦୟ ମଧ୍ୟ ସେହିପରି ଗଭୀର ଓ ଛଳଛଳ । ସେ ଅନ୍ୟର ଦୁଃଖକୁ ସହିପାରନ୍ତି ନାହିଁ । ସେହି ପିଲାଦିନୁ ସେ ଓଡ଼ିଆମାନଙ୍କର ଦାରିଦ୍ର୍ୟ ଓ ଅସହାୟତା ବିଷୟରେ କହୁକହୁ ବିଗଳିତ ହୋଇଯାଆନ୍ତି । ସେତେବେଳେ ଓଡ଼ିଆମାନେ କଲିକତା ରେଙ୍ଗୁନରେ କୁଲି କାମ କରୁଥିଲେ ବହୁସଂଖ୍ୟାରେ । ଓଡ଼ିଆମାନେ ଏକ କୁଲି ଜାତି ରୂପେ ପରିଗଣିତ ହେଉଥିଲେ । ରବିରାୟଙ୍କ ଭାବାବେଗ ମୋତେ ଖୁବ୍ ଉଦ୍‌ବୁଦ୍ଧ କରୁଥିଲା । ଆମେ ଦୁହେଁ ମିଶି ବଡ଼ ପାଟିରେ ଖୁବ୍ ଉତ୍ତେଜିତ କଣ୍ଠରେ ଆକାଶକୁ ହାତଟେକି ବହୁବେଳେ ଉତ୍ତେଜିତ ହୋଇ ଗାଉଥିଲୁ –

ଯେ ଜାତି ବୋଇତ ଭସାଇ ସାତ ସମୁଦର ତେର ନଈରେ
ସେ ଜାତିକୁ କୁଲି ବୋଲି କହିବାକୁ ଅଛି ଏତେ ଛାତି କାହାରେ ?

କିମ୍ବା

ତୁଙ୍ଗ ଶିଖରୀ ଚୂଳ - କୁଞ୍ଜକାନନମାଳ

କିମ୍ବା

ଲିଙ୍ଗରାଜ ତୁଙ୍ଗ ମନ୍ଦିର ରହିଛି - ରହିଛି ତ ପୁଣି ଧଉଳିଗିରି ଇତ୍ୟାଦି ...

ବେଳେବେଳେ କୁଶଭଦ୍ରା ନଈକୂଳରେ ବସି ନାନାବିଧ ଗଳ୍ପସଳ୍ପ କରୁ । ରବି ରାୟ ରୋମାଣ୍ଟିକ୍ ହୋଇ ଗାଆନ୍ତି – ଭାଟିଆରୀ ରାଗରେ–

ଆରେ ନାଉରୀ !
ଏ ଘାଟରେ ନ ବାନ୍ଧ ତରୀ ।
ଯାଉ ଭାସି - ସ୍ରୋତ ମୁଖେ - ଦୂରେ ବାହାରି ।

ଆମ ସ୍କୁଲ ଜୀବନରେ ବହୁବହୁ ସାନବଡ଼ ଘଟଣା ରହିଛି । ସବୁ କଥା କ'ଣ ଆଉ ଠିକଣା ବେଳେ ମନପଡୁଛି । ତା'ପରେ ଆମେ ଦୁହେଁ ପଢ଼ିଲୁ ରେଭେନ୍‌ସା

କଲେଜରେ। ସେଠାରେ ଆମ ଦୁହିଁଙ୍କର ରାଜନୈତିକ ଜୀବନାଦର୍ଶ ଅଲଗା ହୋଇଗଲା। କିନ୍ତୁ ଆମ ବନ୍ଧୁତ୍ୱର ନିବିଡ଼ତା ସାମାନ୍ୟ କମି ନଥିଲା। ମୁଁ ଅବଶ୍ୟ ସେତେବେଳେ ଛାତ୍ର ରାଜନୀତିରେ ଜଡ଼ିତ ଥିଲି। କିନ୍ତୁ କ୍ରମଶଃ ପ୍ରତ୍ୟକ୍ଷ ରାଜନୀତି ଛାଡ଼ି ସାହିତ୍ୟ ସେବାରେ ସଂପୂର୍ଣ୍ଣ ମନ ଦେଲି। କିନ୍ତୁ ସମାଜସେବା ମୁଁ ଛାଡ଼ି ନଥିଲି। ରବି ରାୟ ମଧ୍ୟ ରାଜନୀତି ସହିତ ସମାଜସେବାକୁ ବଜାୟ ରଖିଥିଲେ। ଆଜିପର୍ଯ୍ୟନ୍ତ ମହାତ୍ମା ଗାନ୍ଧି ଓ ବିଶ୍ୱକବି ରବୀନ୍ଦ୍ରନାଥ ରବିରାୟଙ୍କ ହୃଦୟରେ ଜାଗ୍ରତ ଚେତନା ରୂପେ ରହିଛନ୍ତି। ରବିରାୟ ପ୍ରତ୍ୟକ୍ଷ ରାଜନୀତି ଭିତରକୁ ବୀରଦର୍ପରେ ଓହ୍ଲାଇଗଲେ। ଡକ୍ଟର ଲୋହିଆ ହେଲେ ତାଙ୍କର ରାଜନୀତିକ ଗୁରୁ। ଡକ୍ଟର ଲୋହିଆ ଥିଲେ ତତ୍କାଳୀନ ରାଜନୀତି କ୍ଷେତ୍ରରେ ଜଣେ ଆଦର୍ଶ ପୁରୁଷ। ରବିରାୟ ତାଙ୍କରି ଆଦର୍ଶରେ ରାଜନୀତିକୁ କ୍ଷମତା ଓ ଧନ ଅର୍ଜନ ପାଇଁ ବ୍ୟବହାର ନକରି ଦେଶର ସେବା ହିସାବରେ ଆଜୀବନ ଗ୍ରହଣ କରି ଆସିଛନ୍ତି। ମୁଁ ତାଙ୍କୁ ପିଲାଦିନେ ଯେପରି ଦେଖିଥିଲି – ଆଜି ମଧ୍ୟ ସେ ସେହିପରି ରହିଛନ୍ତି। ତା'ମାନେ – ତାଙ୍କ ବ୍ୟକ୍ତିତ୍ୱର ସେହି ସରଳତା, ସରସତା, ଶୁଦ୍ଧତା, ଉଚ୍ଚପ୍ରାଣତା, ଉଦାରତା ଆଜି ତାଙ୍କଠାରେ ଅଧିକ ବିକଶିତ ହୋଇଛି ସିନା – କମି ନାହିଁ। ସେ ସେହିପରି ନିର୍ଭୀକ ଓ ନିଶ୍ଚିନ୍ତ ହୋଇ ବଞ୍ଚି ଆସିଛନ୍ତି।

ମୁଁ ପାରଳାଖେମୁଣ୍ଡିର ଗଜପତି କଲେଜରେ ଅଧ୍ୟାପନା କରୁଥିଲାବେଳେ ଏକ ଭୀଷଣ ପାରିବାରିକ ଦୁର୍ଯୋଗ ଭିତରେ ପଡ଼ି ହନ୍ତସନ୍ତ ହୋଇଯାଉଥିଲି। ସେତେବେଳେ ତାଙ୍କର ଉଦାରହୃଦୟା ସ୍ନେହଶୀଳା ଡାକ୍ତର ପତ୍ନୀ ଶ୍ରୀମତୀ ସରସ୍ୱତୀ ସ୍ୱାଇଁ ମୋତେ ବହୁତ ସାହାଯ୍ୟ କରିଛନ୍ତି। ସେ ଉପକାର ମୁଁ ଏ ଜୀବନରେ ସୁଝିପାରି ନାହିଁ। ରବିରାୟ କେନ୍ଦ୍ରରେ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲାବେଳେ ଏବଂ ତାଙ୍କ ସମର୍ଥିତ ସରକାର ଓଡ଼ିଶାରେ ଚାଲିଥିଲାବେଳେ ମୁଁ ସେ କାଳର ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଥିଲି। କିନ୍ତୁ ସେକଥା ରବିରାୟଙ୍କୁ ଜଣାଇ ନଥିଲି। ପରେ ସେ ଯେତେବେଳେ ଏକଥା ଶୁଣିଲେ, ବଡ଼ ଦୁଃଖିତ ହେଲେ ଏବଂ ମୋତେ ତାଙ୍କୁ ନ ଜଣାଇଥିବା ଯୋଗୁଁ ଗାଳିଦେଲେ। କିନ୍ତୁ ସେତେବେଳକୁ ମୁଁ ମୋର ଭାଗ୍ୟ ସହିତ ଲଢ଼ି ସାରିଥିଲି।

ଆମ ଦୁହିଁଙ୍କର ଜୀବନସୂର୍ଯ୍ୟ ବର୍ତ୍ତମାନ ପଶ୍ଚିମ ଦିଗନ୍ତର ଅସ୍ତାଚଳ ଅଭିମୁଖରେ। କିନ୍ତୁ ରବିରାୟଙ୍କୁ ବାର୍ଦ୍ଧକ୍ୟ ସ୍ପର୍ଶ କରିନାହିଁ। ତାଙ୍କର ଦୀର୍ଘ, ସୁସ୍ଥ ଓ କର୍ମତତ୍ପର ଶରୀର କାଳ ପାଖେ ଅବନମିତ ହୋଇନାହିଁ। ତାଙ୍କର ମନ, ହୃଦୟ ଓ ଆତ୍ମାର ଆଲୋକରେ ସେ ଏ ବୟସରେ ଆମ ସମସ୍ତଙ୍କଠାରୁ ଉଜ୍ଜ୍ୱଳତର ଦିଶୁଛନ୍ତି। କେନ୍ଦ୍ରରେ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲାବେଳେ ଏବଂ ଆଉଥରେ ପାର୍ଲାମେଣ୍ଟର ସ୍ପିକର ଥିଲାବେଳେ ସେ ସାରା

ଦେଶବାସୀଙ୍କର ପ୍ରିୟଭାଜନ ଓ ପ୍ରଶଂସାଭାଜନ ହୋଇଛନ୍ତି। ଦିବାରାତ୍ର ସେ ଏବେ ବି କର୍ମବ୍ୟସ୍ତ ରହିଛନ୍ତି। କିନ୍ତୁ ତାଙ୍କର ସମ୍ବେଦନଶୀଳ ସରସ ହୃଦୟ ଓ ଉଦାର ଉଜ୍ଜ୍ୱଳ ମନ ତାଙ୍କୁ କେବେ ଅବସନ୍ନ ହେବାକୁ ଦେଇନାହାନ୍ତି। ଆମ ସମାଜରେ, ବିଶେଷତଃ ରାଜନୀତି କ୍ଷେତ୍ରରେ ରବିରାୟଙ୍କ ପରି ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ବର୍ତ୍ତମାନ ଆଉ କେତେଜଣ ଅଛନ୍ତି। ତାଙ୍କ ଭଳି ସତ୍ ଓ ଶୁଭକାମୀ ମଣିଷ ଆମ ସମାଜରେ ଥିବା ପର୍ଯ୍ୟନ୍ତ – ଆମ ମନରେ ପୃଥିବୀର ଭବିଷ୍ୟତ ପାଇଁ ଆଶଙ୍କା, ଉଦ୍‌ବେଗର ମାତ୍ରା କମିଯାଉଥିବା ମଣିଷ ଉପରେ ତଥାପି ଆସ୍ଥା ଓ ବିଶ୍ୱାସ ଅତୁଟ ରହିଥିବ। ମୋର ତାଙ୍କ ପାଇଁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା - ସେ ଶତାୟୁ ହୋଇ ସୁସ୍ଥ ଓ କର୍ମଠ ହୋଇ ବଞ୍ଚିଥାନ୍ତୁ ଏବଂ ତାଙ୍କର ଶୁଭ ନିଃଶ୍ୱାସରେ ଦେଶର ମଙ୍ଗଳ ହେଉ।

(ସଂଗୃହୀତ ଲେଖା)

■■■

# ରବି ରାୟ ଏକବିଂଶ ଶତାବ୍ଦୀ ପାଇଁ ସମାଜବାଦୀ ଦିଗ୍‌ଦର୍ଶକ

ପ୍ରଫେସର ମନୋରଞ୍ଜନ ମହାନ୍ତି

ଏକବିଂଶ ଶତାବ୍ଦୀରେ ଆଜି ଆମେ ଯେତେସବୁ ସମସ୍ୟାର ସମ୍ମୁଖୀନ ହୋଇଛୁ ତା'ର ସମାଧାନ ଖୋଜିବାରେ ରବିରାୟଙ୍କ ଜୀବନ ଓ ଦର୍ଶନ ଆମକୁ ଅକଳନୀୟ ମାତ୍ରାରେ ବାଟ ଦେଖାଏ। ଜଗତୀକରଣ ଜୁଆର ଦ୍ୱାରା ଗରିବ ଜନତା, ଦଳିତ ଆଦିବାସୀ, ପଛୁଆ ଜାତି ଓ ଅନୁନ୍ନତ ଅଞ୍ଚଳ ଉପରେ ଯୋଉ କୁଠାରଘାତ ହେଉଛି ତା' ବିରୁଦ୍ଧରେ ଯେଉଁ ଜନଆନ୍ଦୋଳନ ଗଢ଼ିଉଠୁଛି ସେହି ଆନ୍ଦୋଳନମାନଙ୍କୁ ସେ ନିରବଚ୍ଛିନ୍ନ ଭାବେ ସାହାଯ୍ୟ ଓ ସମର୍ଥନ କରି ଆସିଛନ୍ତି। ପ୍ରଚଳିତ ଜନବିରୋଧୀ ବିକାଶଗୁଡ଼ିକର ବିପଦ ପ୍ରତି ସତର୍କତା କରାଇ ତା'ର ବିକଳ୍ପ କ'ଣ ହୋଇପାରେ ସେଗୁଡ଼ିକର ରୂପରେଖ ଦେଇଛନ୍ତି। ଗୋପାଳପୁର, କାଶୀପୁର ପରି ବିଭିନ୍ନ ଜୀବନ ଓ ଜୀବିକା ବଞ୍ଚାଅ ଜନ ଆନ୍ଦୋଳନମାନଙ୍କରେ ସେ ସାମିଲ ହୋଇଛନ୍ତି।

ବିକଳ୍ପ ବିକାଶଧାରା ସମଭାବାପନ୍ନ ହେବା ଆବଶ୍ୟକ। ଜାତିଗତ ବୈଷମ୍ୟ, ଶ୍ରେଣୀଗତ ବୈଷମ୍ୟ, ନାରୀ-ପୁରୁଷ ଲିଙ୍ଗଗତ ବୈଷମ୍ୟ ଏବଂ ଆଞ୍ଚଳ ବୈଷମ୍ୟ ଦୂର ହେଲେ ଏବଂ ପ୍ରକୃତିସଙ୍ଗତ ଚିରନ୍ତନ ବିକାଶଧାରା ହିଁ ଏକବିଂଶ ଶତାବ୍ଦୀର ସମାଜବାଦର ଆଦର୍ଶ ଚରିତାର୍ଥ ହେବ। ରବିରାୟଙ୍କ ସମାଜବାଦୀ ଚିନ୍ତା ଲୋହିଆ ଆମ୍ବେଦକର ଓ ଗାନ୍ଧିଙ୍କ ଚିନ୍ତା ଉପରେ ପ୍ରତିଷ୍ଠିତ। ତା' ସଙ୍ଗେ ସଙ୍ଗେ ବର୍ତ୍ତମାନର ଜନ ଆନ୍ଦୋଳନଗୁଡ଼ିକ ବିଶ୍ୱସାରା ଯେଉଁ ସବୁ ପ୍ରଶ୍ନ ଉଠାଇଛନ୍ତି ସେ ସବୁକୁ ବିଚାର କରି ନିଜର ଚିନ୍ତାଧାରାକୁ ଆହୁରି ଆଗେଇ ନେଇଛନ୍ତି।

ଗଣତନ୍ତ୍ର ସଂଜ୍ଞାକୁ ଉନ୍ନତତର କରିଛନ୍ତି ତାଙ୍କ ଜୀବନର ରାଜନୈତିକ କାର୍ଯ୍ୟ ପଦ୍ଧତିରେ। ସାଂସଦ ଭାବେ ତାଙ୍କର ନିର୍ମଳ ଭାବମୂର୍ତ୍ତି ଏବଂ ମନ୍ତ୍ରୀଭାବେ ନୂତନତା ସହିତ କାର୍ଯ୍ୟକ୍ରମ ଏବଂ ସର୍ବୋପରି ଲୋକସଭାର ବାଚସ୍ପତିଭାବେ ନିରପେକ୍ଷ କର୍ତ୍ତବ୍ୟ ପରାୟଣ ସାଧୁତାପୂର୍ଣ୍ଣ ଭୂମିକା ରବି ରାୟଙ୍କୁ ଚିରଦିନ ପାଇଁ ଭାରତର ଗଣତନ୍ତ୍ର ଇତିହାସରେ ସ୍ୱର୍ଣ୍ଣଲିପିରେ ଉଲ୍ଲେଖ ରଖିବ।

ରାଜନୀତି ଏକବିଂଶ ଶତାବ୍ଦୀ ଆରମ୍ଭରେ ଯେଉଁ ମାତ୍ରାରେ ଦୁର୍ନୀତିଗ୍ରସ୍ତ ହୋଇଛି ତା'ର ମୂଳକାରଣକୁ ପଦାରେ ପକାଇ ଅର୍ଥ ବହୁଳ ଦଳ ରାଜନୀତିର କଠୋର ସମାଲୋଚନା କରି ରବି ରାୟ ଭାରତ ରାଜନୀତିରେ ଏକ ଅନନ୍ୟ ରାଜନେତା ଯେ କି ନିଷ୍କଳଙ୍କ ଆଦର୍ଶବାଦୀ ଜନସେବକ ଭାବେ ସମସ୍ତଙ୍କର ନମସ୍ୟ ଓ ଆଦରଣୀୟ ହୋଇଛନ୍ତି ।

ଅଯୋଧ୍ୟାରେ ବାବରୀ ମସ୍‌ଜିଦ ଧ୍ୱଂସ ପରେ ଭାରତବର୍ଷ ଯୋଉ ପ୍ରକାର ସାଂପ୍ରଦାୟିକ ହିଂସା ପ୍ରତିହିଂସାର ଶିକାର ହେଲା ଏବଂ ପରେ ଗୁଜରାଟରେ ଯେପରି ସଂଖ୍ୟାଲଘୁ ଗୋଷ୍ଠୀଙ୍କୁ ହତ୍ୟା କରାଗଲା ତା' ବିରୁଦ୍ଧରେ ଦେଶବ୍ୟାପୀ ଧର୍ମନିରପେକ୍ଷ ଗଣତାନ୍ତ୍ରିକ ଶକ୍ତିମାନଙ୍କୁ ସବଳ କରିବାରେ ରବି ରାୟଙ୍କ ଅବଦାନ ବହୁତ ।

ଜଣେ ଓଡ଼ିଆ ଭାବେ ମୁଁ ଗର୍ବ କରେ ଯେ ରବି ରାୟ ଆମ ରାଜ୍ୟର ଜଣେ ସର୍ବଭାରତୀୟ ଆଦର୍ଶର ନେତା । ଓଡ଼ିଶା ଗବେଷଣା ଚକ୍ରର ପ୍ରତିଷ୍ଠାବେଳଠାରୁ ଆଜିଯାଏ ଆମେ ତାଙ୍କର ଆଶୀର୍ବାଦ ସହଯୋଗ ପାଇ ଆସିଛୁ । ସେ ମହାନ୍ ନେତାଙ୍କର ଆଦର୍ଶ ଆଗାମୀ ପିଢ଼ୀକୁ ପ୍ରେରଣା ଦେଉଥାଉ । ତାଙ୍କର ଦୀର୍ଘଜୀବନ କାମନା କରି ତାଙ୍କୁ କୃତଜ୍ଞତା ଜଣାଉଛି ।

(ସଂଗୃହୀତ ଲେଖା)

# ନୈତିକ ରାଜନୀତିର ପ୍ରବକ୍ତା - ରବି ରାୟ

ଶ୍ରୀ ରଘୁ ଠାକୁର

ରବି ରାୟ ଭାରତୀୟ ରାଜନୀତିର ହାତଗଣତା ନେତାଙ୍କ ମଧ୍ୟରୁ ଜଣେ ଯିଏ ନୈତିକ ମୂଲ୍ୟବୋଧକୁ ନିଜ ଜୀବନରେ ବ୍ୟକ୍ତିଗତ ଭାବରେ କେବଳ ଜୀବନ୍ତ ରଖିନାହାନ୍ତି ଏହି ମୂଲ୍ୟବୋଧର ଟାଣୁଆ ପ୍ରବକ୍ତା ମଧ୍ୟ ସାଜିଛନ୍ତି।

ଆଜି ଭାରତୀୟ ରାଜନୀତି ଅଧଃପତନ ଓ ଅନ୍ତଃକଳହର ଯୁଗ ଦେଇ ଗତିକରୁଛି। ହୁଏତ କେବେ ନୀତିର ରାଜନୀତି ଚାଲିବ। ରବି ରାୟଙ୍କ ରାଜନୀତି ସ୍ୱାଧୀନତାପର ତେଜସ୍ୱୀ ସମାଜବାଦୀ ଧାରାରେ ଅଂଶୀଦାର ଭାବେ ଡଃ ଲୋହିଆଙ୍କ ସାଥୀରେ ଆରମ୍ଭ ହୋଇଥିଲା। ଲୋହିଆ କହୁଥିଲେ, "ରାଜନୀତି ଅଳ୍ପକାଳୀନ ଧର୍ମ ଓ ଧର୍ମ ଦୀର୍ଘକାଳୀନ ରାଜନୀତି। ଧର୍ମକୁ କିଛି ଗୋଷ୍ଠୀ ବିକୃତଭାବେ ବ୍ୟବହାର କରୁଛନ୍ତି କିନ୍ତୁ ପ୍ରକୃତ ଧର୍ମ ହେଉଛି ସମାଜକୁ ସ୍ଥିରତା ଦେଲା ଭଳି ମାର୍ଗ ଦର୍ଶନ। ଲୋହିଆଙ୍କ ମତରେ ରାଜନୀତି ଏପରି ଆଦର୍ଶବାଦୀ ବିଶୁଦ୍ଧ ସମ୍ବେଦନଶୀଳ ଓ ଉନ୍ମୁକ୍ତ ବିଚାରର ହେବା ଦରକାର ଯାହା ସାଧାରଣ ମଣିଷକୁ ସେ ସମୟର ଧର୍ମ ପରି ମନେହେବ। ଧର୍ମ ଅର୍ଥ ଭଲ କରିବା। ରାଜନୀତି ଅର୍ଥ ଖରାପର ବିରୋଧ କରିବା। ଦୁହେଁ ଗୋଟିଏ ମୁଦ୍ରାର ଦୁଇପଟ।

କିନ୍ତୁ ଭାରତୀୟ ରାଜନୀତି ଆରମ୍ଭରୁ ସାମନ୍ତବାଦୀ ପ୍ରବୃତ୍ତି କଳହ ଓ କ୍ଷମତାଯୁଦ୍ଧ ଭିତରେ ବାନ୍ଧି ହୋଇ ରହିଛି। ରାମ ଓ କୃଷ୍ଣ ଯୁଗରେ ବି ଥିଲା, ସ୍ୱାଧୀନତା ସଂଗ୍ରାମ ବେଳେ ବି ରହିଲା ଓ ଭାରତ ବିଭାଜନ ବେଳେ ମଧ୍ୟ ଚାଲିଲା। କିନ୍ତୁ ରବି ରାୟଙ୍କ ଜୀବନର ଅଧିକାଂଶ ସମୟ ଲୋହିଆଙ୍କ କଳ୍ପନାର ରାଜନୀତିରେ କଟିଲା।

ରବି ରାୟ କ୍ଷମତାର ଇଚ୍ଛା ରଖିଥିବେ କିନ୍ତୁ କ୍ଷମତା ଲିପ୍ସା କି ଲାଳସା ତାଙ୍କର ନାହିଁ। ସେଇଥିପାଇଁ କ୍ଷମତା ହାସଲ କରିବାକୁ ସେ ନୀତି ଓ ସିଦ୍ଧାନ୍ତ ବିରୁଦ୍ଧରେ ଯାଇ ସାଲିସ୍ କରିନାହାନ୍ତି।

ଯଦି ରବି ରାୟ ୧୯୯୮ ମସିହାରେ ତତ୍କାଳୀନ ସମତା ପାର୍ଟିର ରାଜନୈତିକ ଲାଇନ୍ ବା ବର୍ତ୍ତମାନ ଜନତାଦଳ (ୟୁ)ର ଲାଇନ୍ ନେଇଥାନ୍ତେ ତେବେ ସେ ଜର୍ଜ

ପର୍ଣ୍ଣାଣ୍ଡିଜ୍ ଓ ନୀତିଶ କୁମାରଙ୍କ ଭଳି ଏନ୍.ଡ଼ି.ଏ. ସରକାରର ଜଣେ ମୁଖ୍ୟ ପଦାଧିକାରୀ ହୋଇଥାନ୍ତେ କିମ୍ବା ନିଜର ରାଜ୍ୟ ଓଡ଼ିଶାର ଶାସନ କ୍ଷମତା ହାତକୁ ନେଇଥାନ୍ତେ। କିନ୍ତୁ ସେ ନିଜ କ୍ଷମତା ଇଚ୍ଛାକୁ ନୈତିକତାର ବନ୍ଧନରୁ ଫିଟାଇ ଅଙ୍କୁଶହୀନ କରିନାହାନ୍ତି।

୨୦୦୫ ମସିହାରେ ଯଦି ରବି ରାୟ ଧର୍ମ ନିରପେକ୍ଷତା ନାଁରେ କଂଗ୍ରେସ ସହ ହାତମିଳାଇଥାନ୍ତେ, ତାହାହେଲେ ୟୁ.ପି.ଏ. ସରକାରରେ ମଧ ତାଙ୍କୁ ବଡ଼ ପଦ ମିଳିଥାନ୍ତା। କିନ୍ତୁ ପୁଣି ସିଏ ନୀତି ଉପରେ ଅଟଳ ରହିଲେ। ମୋର ତାଙ୍କ ସହ ଦୀର୍ଘ ୩୫ ବର୍ଷର ସଂପର୍କ ଭିତରେ ସେ ନୀତିର ଲକ୍ଷଣ ରେଖା ପାର କରିବାର ମୁଁ କେବେ ଦେଖିନାହିଁ।

ଆଜିର ବଜାରବାଦୀ ଦର୍ଶନ କହୁଛି - ନିଜ ଜୀବନ ଅଲଗା, ସାର୍ବଜନୀନ ଜୀବନ ଅଲଗା। ନିଜ ଜୀବନ ଓ ସାର୍ବଜନୀନ ଜୀବନ ସମାନ ଓ ସଫା ରବିରାୟଙ୍କ ଜୀବନର ଏହି ଉଦାହରଣ ବଜାରୀ ଦର୍ଶନର ଠିକଣା ଜବାବ।

ସେ ରାଜନୀତିରେ ନୀତିର ପ୍ରବକ୍ତାଭାବେ ରହିଥାଆନ୍ତୁ ଏହାହିଁ କାମନା।

(ସଂଗୃହୀତ ଲେଖା)

# ବିରଳ ବ୍ୟକ୍ତିତ୍ୱ ରବି ରାୟ

**ଶ୍ରୀ ରବି ରଥ**

ଭାରତ ବର୍ଷର ଜଣେ ଅନନ୍ୟ, ଅସାଧାରଣ ବ୍ୟକ୍ତିତ୍ୱ ଭାବରେ ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀଯୁକ୍ତ ରବି ରାୟ ସର୍ବଜନବିଦିତ। ତାଙ୍କର ଗୁଣକୀର୍ତ୍ତନ କରାଗଲେ ଗୋଟିଏ ବିରାଟ ପୁସ୍ତକ ହେବ। ଦେଶମାତୃକାର ଉନ୍ନତି ତଥା ସମାଜର ବିକାଶଧାରାରେ ତାଙ୍କର ମହତ୍ତ୍ୱପୂର୍ଣ୍ଣ ଅବଦାନ ବେଶ୍ ଉଲ୍ଲେଖଯୋଗ୍ୟ। ଏଭଳି ଜଣେ ଦେଶପ୍ରେମୀ, ସମାଜ ସଂସ୍କାରକ, ନିଃସ୍ୱାର୍ଥପର ଜନସେବୀ, ଅଜାତଶତ୍ରୁ, ରାଜନେତା ସମଗ୍ର ଭାରତ ବର୍ଷରେ ବିରଳ ବୋଲି କହିଲେ ଦ୍ୱିରୁକ୍ତି ହେବ ନାହିଁ। ଓଡ଼ିଶା ଭଳି ଏକ ଗରିବ, ପଛୁଆ ରାଜ୍ୟରୁ ଯାଇ ଦିଲ୍ଲୀ ପାର୍ଲାମେଣ୍ଟର ବାଚସ୍ପତି ଭଳି ଏକ ସର୍ବୋଚ୍ଚ ଆସନ ଅଳଙ୍କୃତ ହେବାର ଏକ ଦର୍ଲ୍ଲଭ ଗୌରବ ହାସଲ କରିବାରେ ରବି ରାୟ ହେଉଛନ୍ତି ପ୍ରଥମ ଓଡ଼ିଆ। ଶ୍ରୀଯୁକ୍ତ ରବି ରାୟ ତତ୍କାଳୀନ ପ୍ରଧାନମନ୍ତ୍ରୀ ଭି.ପି. ସିଂହଙ୍କ ନେତୃତ୍ୱାଧୀନ ସରକାର ଅମଳରେ ଲୋକସଭାର ବାଚସ୍ପତି ଆସନ ଅଳଙ୍କୃତ କର ସମଗ୍ର ଓଡ଼ିଆ ଜାତିକୁ ଗର୍ବିତ କରିବା ସହ ଓଡ଼ିଶାର ଗରିମାକୁ ବହୁଗୁଣିତ କରିପାରିଥିଲେ। ତାଙ୍କ ପରେ ରାଜନୈତିକ କ୍ଷେତ୍ରରେ ଅନ୍ୟ କୌଣସି ଓଡ଼ିଆ ବ୍ୟକ୍ତି ଏଭଳି ସମ୍ମାନଜନକ ଆସନରେ ଆସୀନ ହେବାର ଏଯାବତ୍ ଦେଖାଯାଇନାହିଁ।

ନିଜସ୍ୱ କ୍ଷେତ୍ରରେ ଅସାଧାରଣ ଅବଦାନ ପୂର୍ବକ ମାନବୀୟ ମୂଲ୍ୟବୋଧକୁ ବୁଝିପାରୁଥିବା ମଣିଷ ହିଁ ନିଆରା ବ୍ୟକ୍ତିତ୍ୱର ଅଧିକାରୀ ହୋଇଥାନ୍ତି। ଏହି ବ୍ୟକ୍ତିମାନେ ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଜନହିତକର କାର୍ଯ୍ୟ କରିବାରେ ଶେଷ ଜୀବନ ପର୍ଯ୍ୟନ୍ତ ନିଜକୁ ତିଳତିଳ କରି ନିୟୋଜିତ କରିବାକୁ ପଛେଇ ନଥାନ୍ତି। ଏଭଳି ମହାନ୍ ବ୍ୟକ୍ତିତ୍ୱଙ୍କୁ ମହାନାୟକର ଆଖ୍ୟା ଦିଆଯାଇପାରେ। ସରଳ, ନମ୍ର ତଥା ଶାନ୍ତ ସ୍ୱଭାବର ସମାଜବାଦୀ ସୁଚିନ୍ତକ ରବି ରାୟ କର୍ମମୟ ଜୀବନରେ ଗାନ୍ଧି, ଲୋହିଆ, ଜୟପ୍ରକାଶ ଏବଂ ଆମ୍ବେଦରଙ୍କ ଚିନ୍ତାଧାରାକୁ ସମନ୍ୱିତ କରି ଦୁଃଖୀ, ଦରିଦ୍ର, ଦୁର୍ବଳ ତଥା ସାଧାରଣ ଜନତାଙ୍କ କଲ୍ୟାଣ ପାଇଁ ନିଜ ଜୀବନକୁ ପାଣି ଛଡ଼ାଇ କାର୍ଯ୍ୟ କରି ଆସିଛନ୍ତି। ଏହାଛଡ଼ା

ସମାଜବାଦୀ ଚିନ୍ତନ ଜରିଆରେ ସେ ଭାରତବର୍ଷରେ ନେତୃତ୍ୱ ନେଇଥିଲେ। ଦଳର ମୁଖ୍ୟ ଡ. ରାମ ମନୋହର ଲୋହିଆଙ୍କର ରବି ରାୟଙ୍କ ପ୍ରତି ପ୍ରଗାଢ଼ ବିଶ୍ୱାସ ଓ ଆସ୍ଥା ଥିଲା। ସେତେବେଳର ସମାଜବାଦୀ ନେତାଙ୍କ ମଧ୍ୟରେ ରାଜ ନାରାୟଣ, ମଧୁ ଲିମାଏ, ଜର୍ଜ୍ ଫର୍ଣ୍ଣାଣ୍ଡେଜ୍, କର୍ପୂରୀ ଠାକୁର, ଜନେଶ୍ୱର ମିଶ୍ର, ମୁଲାୟମ ସିଂହ ଯାଦବଙ୍କଠାରୁ ଶ୍ରୀ ରାୟ ଉର୍ଦ୍ଧ୍ୱରେ ରହିଥିଲେ।

ରବି ରାୟଙ୍କ ସହ ଆମର ପାରିବାରିକ ସଂପର୍କ ଥିଲା। ମୋର ବାପା ସ୍ୱର୍ଗତ ବୃନ୍ଦାବନ ରଥ ଜଣେ ସରକାରୀ କର୍ମଚାରୀ ଭାବେ ବ୍ରହ୍ମପୁରରେ ଚାକିରି କରିବା ସମୟରେ ବଡ଼ଖେମୁଣ୍ଡି ସାହିରେ ମୋର ମାମୁ ଅଜା ସ୍ୱାଧୀନତା ସଂଗ୍ରାମୀ କୃତିବାସ ମିଶ୍ରଙ୍କ ଘରେ ରହୁଥିଲେ। ପଡ଼ିଶା ଘରେ ସେତେବେଳେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ରାଜ୍ୟ କାର୍ଯ୍ୟାଳୟ ରହିଥିଲା। ଯେଉଁ କାର୍ଯ୍ୟାଳୟକୁ ରବି ରାୟ, କିଶାନ୍ ପଟ୍ଟନାୟକ, ହୃଦାନନ୍ଦ ତ୍ରିପାଠୀ, ଗଞ୍ଜାମର ବରିଷ୍ଠ ନେତା ପୂର୍ବତନ ବିଧାୟକ ନାରାୟଣ ସାହୁ, ବ୍ରହ୍ମପୁରର ନେତା ଆଡ଼ଭୋକେଟ୍ ଗୋର୍ତ୍ତି ରାମା ରାଓ ପ୍ରମୁଖ ବରାବର ଆସୁଥିଲେ। ସେତେବେଳେ ହୃଦାନନ୍ଦ ତ୍ରିପାଠୀ ଏହି କାର୍ଯ୍ୟାଳୟ ଦାୟିତ୍ୱରେ ଥିଲେ। ମୋ ବାପା ଯଦିଓ ରାଜ୍ୟ ସରକାରୀ କର୍ମଚାରୀ ଥିଲେ ସେ ଖଲ୍ଲିକୋଟ କଲେଜରେ ଆଇ.ଏ. ପଢ଼ିଲାବେଳେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ପୂର୍ବ ଢାକାରେ ନେତାଜୀଙ୍କ ଦ୍ୱାରା ଗଠିତ ଆଜାଦ୍ ହିନ୍ଦ୍ ଫୌଜ୍‌ରେ କାର୍ଯ୍ୟକରି ଏକ ଲଢୁଆ ମନୋବୃତ୍ତିର ପ୍ରେରଣା ପାଇବା ସହ ପରବର୍ତ୍ତୀ ସମୟରେ ସମାଜବାଦୀ ଆନ୍ଦୋଳନର ମୁଖ୍ୟ ତଥା ଲୋକସଭାର ବିରୋଧୀ ଦଳ ନେତା ଡକ୍ଟର ରାମମନୋହର ଲୋହିଆଙ୍କ ସମାଜବାଦୀ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ତାଙ୍କୁ ନିଜର ରାଜନୈତିକ ଗୁରୁ ଭାବରେ ଗ୍ରହଣ କରିଥିଲେ ଏବଂ ଓଡ଼ିଶାର ସମାଜବାଦୀ ନେତାମାନଙ୍କ ସହିତ ତାଙ୍କର ଉତ୍ତମ ସମ୍ପର୍କ ରହିଥିଲା।

ସେତେବେଳଠୁ ରବି ରାୟଙ୍କ ସହ ଆମ ପରିବାରର ଘନିଷ୍ଠ ସମ୍ପର୍କ ରହି ଆସିଛି। ଯେତେବେଳେ ରବି ରାୟ ଗଞ୍ଜାମ ଆସିଛନ୍ତି ଆମ ପରିବାରର ଆତିଥ୍ୟ ଗ୍ରହଣ କରିଛନ୍ତି ଏବଂ ଆମ ପରିବାରର ଅନ୍ୟତମ ସଦସ୍ୟ ଭାବରେ ଆମେ ତାଙ୍କୁ ସବୁବେଳେ ସମ୍ମାନ ଦେଇ ଆସିଥାଉ।

ଯଦିଓ ଆମେ ଆଠ ଭାଇ, ଭାଇମାନେ ନିଜ ପାଠପଢ଼ାରେ ବ୍ୟସ୍ତ ରହୁଥିବା ବେଳେ ମୁଁ ପିଲାଟି ବେଳୁ ସମାଜସେବା ଓ ସାମାଜିକ ସଂଗଠନ ସହିତ ଜଡ଼ିତ ହୋଇ

ନେତୃତ୍ୱ ନେଉଥିବା ଦୃଷ୍ଟିରୁ ବିଭିନ୍ନ ରାଜନେତାଙ୍କ ଦୃଷ୍ଟି ରହି ଆସୁଥିଲେ। ୧୯୭୭ ମସିହା ବେଳକୁ ମୁଁ ଯୁବ ଜନତା ଦଳର ନେତୃତ୍ୱ ନେଉଥିବା ବେଳେ ରବି ରାୟ ଜନତା ପାର୍ଟିର ରାଷ୍ଟ୍ରୀୟ ମହାସଚିବ ଭାବେ କାର୍ଯ୍ୟ କରୁଥିଲେ। ବିଭିନ୍ନ ସଭା ସମ୍ମିଳନୀରେ ତାଙ୍କ ସହ ମୋର ଉତ୍ତମ ଯୋଗ ସମ୍ପର୍କ ରହିଥିଲା। ଜନତା ପାର୍ଟିର ପତନ ପରେ ୧୯୮୨ ମସିହା ବେଳକୁ ମୁଁ ରାଜନୀତି ଛାଡ଼ି ସାମ୍ବାଦିକତା କ୍ଷେତ୍ରରେ ପ୍ରବେଶ କଲି। ୧୯୯୦ ମସିହାରେ ଓଡ଼ିଶାରେ ଦେଖା ଦେଇଥିବା ପ୍ରଳୟଙ୍କରୀ ବନ୍ୟାରେ ଗଞ୍ଜାମ ଜିଲ୍ଲାର ଅଭୂତପୂର୍ବ କ୍ଷତି ହୋଇଥିଲା। ସେତେବେଳେ ଲୋକସଭାର ବାଚସ୍ପତି ଥିବା ରବି ରାୟ ଦୁଇଦିନିଆ ଗଞ୍ଜାମ ଗସ୍ତରେ ଆସିଥିଲେ। ପ୍ରଫୁଲ୍ଲ ସାମନ୍ତରା ଓ ମୁଁ ସେହି ଦୁଇଦିନ ଶ୍ରୀ ରାୟଙ୍କ ସହ ଗଞ୍ଜାମର ବିଭିନ୍ନ ବନ୍ୟାଞ୍ଚଳ ପରିଦର୍ଶନରେ ଯାଇଥିଲୁ। ୧୯୯୦ ମସିହାର ଅନ୍ୟ ଏକ ଘଟଣା। ୧୯୩୦ ମସିହାରୁ ପ୍ରକାଶ ପାଉଥିବା ସାପ୍ତାହିକ ନବୀନକୁ ମୁଁ କ୍ରୟ କଲି। କିନ୍ତୁ ଏହାର ସତ୍ତ୍ୱାଧିକାର ପରିବର୍ତ୍ତନକୁ ନେଇ ଏକ ଜଟିଳ ସମସ୍ୟା ସୃଷ୍ଟି ହେଲା। ଏପରି ଏକ ଜଟିଳ ସମସ୍ୟା ସୃଷ୍ଟି ହେଲା ଯେ, ତାହା କସ୍ମିନ କାଳେ ସମାଧାନ ହେବା କଥା ନୁହେଁ। ଏହା ଆର୍.ଏନ୍.ଆଇ ସାର୍ଟିଫିକେଟ୍ ଜନିତ ସମସ୍ୟା ହୋଇଥିବାରୁ ମୁଁ ଦିଲ୍ଲୀରେ ଥିବା ବାଚସ୍ପତି ଶ୍ରୀ ରାୟଙ୍କୁ ସାକ୍ଷାତ କରି ଏହି ସମସ୍ୟା ସଂପର୍କରେ ଅବଗତ କରାଇଥିଲି। ସେ ସଙ୍ଗେ ସଙ୍ଗେ ତତ୍କାଳୀନ ଆର୍.ଏନ୍.ଆଇ ରେଜିଷ୍ଟ୍ରାରଙ୍କ ସହ ଆଲୋଚନା କରି ଏହି ସମସ୍ୟାର ସମାଧାନ କରାଇଥିଲେ।

୧୯୯୨ ମସିହାରେ ନରସିଂହ ରାଓଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ଉଦାରୀକରଣ, ଜଗତୀକରଣ ଡଙ୍କେଲ ପ୍ରସ୍ତାବ ବିରୁଦ୍ଧରେ ଶ୍ରୀ ରାୟ ସାରା ଭାରତବର୍ଷରେ ଜନମତ ସୃଷ୍ଟି କରିଥିଲେ। ବ୍ରହ୍ମପୁରରେ ମଧ ଆୟୋଜିତ ଏକ ସଭାରେ ଆମେ ତାଙ୍କୁ ସହଯୋଗ କରିଥିଲୁ।

୨୦୦୪ ମସିହା ଡିସେମ୍ବର ୩୦ ତାରିଖ ଦିନ ୧୯୩୦ ମସିହାରୁ ପ୍ରକାଶ ପାଇ ଆସୁଥିବା 'ନବୀନ'ର ପ୍ଲାଟିନମ୍ ଜୁବୁଲୀ ଉତ୍ସବ ଅନୁଷ୍ଠିତ ହୋଇଥିଲା। ସେତେବେଳେ ଆୟୋଜିତ ଉତ୍ସବରେ ଶ୍ରୀ ରବି ରାୟ ମୁଖ୍ୟଅତିଥି ଭାବେ ଯୋଗ ଦେଇଥିଲେ। ସେହି କାର୍ଯ୍ୟକ୍ରମରେ ବ୍ରହ୍ମପୁର ସାଂସଦ ଚନ୍ଦ୍ରଶେଖର ସାହୁ, ବିଶିଷ୍ଟ ଗବେଷକ ସୁରସିଂହ ପଟ୍ଟନାୟକ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ କୁଳପତି ଜୟକୃଷ୍ଣ ବରାଳ, କୈଳାଶ ଚନ୍ଦ୍ର ଦାଶ ପ୍ରମୁଖ ଅଂଶଗ୍ରହଣ କରିଥିଲେ।

ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ଶ୍ରୀ ରାୟଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କ ରହିଛି ଆସିଛି । କିଛିଦିନ ତଳେ କଟକସ୍ଥିତ ତାଙ୍କ ବାସଭବନ ଏବଂ ଲୋହିଆ ଏକାଡେ଼ମୀରେ ବିଭିନ୍ନ କାର୍ଯ୍ୟକ୍ରମ ବେଳେ ତାଙ୍କ ସହ ମୋର ଦେଖା ସାକ୍ଷାତ ହୋଇ ଆସୁଛି । ବାସ୍ତବରେ ଏଭଳି ଜଣେ ନେତା ଆମ ସମୟରେ ବିରଳ । ଆଜି ସାମାଜିକ ବ୍ୟବସ୍ଥାରେ ବିଘଟନ ଘଟିଚାଲିଛି । ଶ୍ରୀ ରାୟ ବିଶ୍ୱାସ କରି ଆସୁଥିବା ନୈତିକତା, ମୂଲ୍ୟବୋଧ, ନିଷ୍ଠାପରତା ଓ ଅଙ୍ଗୀକାରବଦ୍ଧତା ଆଜି ସମାଜରୁ ଅପସରି ଯାଉଥିବା ବେଳେ ଆଗାମୀ ଦିନରେ ସମାଜ ବ୍ୟବସ୍ଥା ଯେଉଁଭଳି ଅନ୍ଧାକାରମୟ ହେବାକୁ ଯାଉଛି, ରବି ରାୟଙ୍କ ଭଳି ବ୍ୟକ୍ତିତ୍ୱଙ୍କୁ ଏହା ନିଶ୍ଚିତ ଭାବେ କଷ୍ଟ ଦେବ । ଏହି ପରିପ୍ରେକ୍ଷୀରେ ଶ୍ରୀ ରାୟ ସଂପର୍କରେ ଅଭିନନ୍ଦନିକା ପ୍ରକାଶ କରିବାକୁ ଯାଉଥିବା ବ୍ୟକ୍ତିମାନଙ୍କୁ ସାଧୁବାଦ ଜ୍ଞାପନ କରିବା ସହ ଶ୍ରୀ ରାୟଙ୍କ ଦୀର୍ଘ ନିରାମୟ ଜୀବନ ପାଇଁ ପ୍ରାର୍ଥନା ।

■ ■ ■

# ସଂସଦ, 'ସନ୍ନ୍ୟାସ' ଏବଂ ସମାଜବାଦ : ଜଣେ ସୈନିକର ଜୀବନଗାଥା

**ଶ୍ରୀ ରବୀନ୍ଦ୍ରନାଥ ସାହୁ (ଶୈଳଜ ରବି)**

"ରାଜନୀତିରେ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ କ୍ଷମତା ପାଇଁ ନୀତି ଆଦର୍ଶକୁ ମଧ୍ୟ ଜଳାଞ୍ଜଳି ଦେଇଦିଅନ୍ତି। ମାତ୍ର ଆଉ କେତେକ ଋଷିପ୍ରତିମ ବ୍ୟକ୍ତି ଅଛନ୍ତି ଯେଉଁମାନେ ଆଦର୍ଶ ପାଇଁ କ୍ଷମତାକୁ ଅତ୍ୟନ୍ତ ତୁଚ୍ଛ ମନେକରନ୍ତି।" ପ୍ରାତଃସ୍ମରଣୀୟ ନବକୃଷ୍ଣ ଚୌଧୁରୀଙ୍କର ସ୍ମୃତିଚାରଣ କରିବାକୁ ଯାଇ ଏକଥା କହିଛନ୍ତି ଶ୍ରୀଯୁକ୍ତ ରବି ରାୟ ନିଜ ସ୍ମୃତି କଥା 'ଅନ୍ୱେଷାର ଆକାଶ'ରେ। ଏକଥା ଆଜି ସ୍ୱୟଂ ରବି ବାବୁଙ୍କ ପ୍ରତି ମଧ୍ୟ ପ୍ରଯୋଜ୍ୟ। ତଳେ ପଡ଼ିଥିବା ଲୋକଙ୍କ ପାଇଁ କିଛି କାମ କରିବା – ଏହି ଆଶା ନେଇ ଉଭୟ କ୍ଷମତାକୁ ଯାଇଛନ୍ତି। ସବୁ ବାଧାବିଘ୍ନ, ଗୋଡ଼ଟଣା ସତ୍ତ୍ୱେ ଲୋକଙ୍କ ପାଇଁ କିଛି କାମ କରିଛନ୍ତି। ମାତ୍ର ନିଜର ଦୂରନ୍ତ ସମାଜବାଦୀ ସ୍ୱପ୍ନମାନଙ୍କରୁ କାଣିଚାଏ ମଧ୍ୟ କାର୍ଯ୍ୟକାରୀ କରିବାକୁ ଯାଇ କ୍ଷମତା ପଶାପାଳିରେ ସେମାନେ ଯେଉଁ ଦୂରତିକ୍ରମ୍ୟ ପ୍ରତିବନ୍ଧକମାନଙ୍କର ସମ୍ମୁଖୀନ ହୋଇଛନ୍ତି ସେଥିରୁ ସେମାନଙ୍କର ହୃଦ୍‌ବୋଧ ହୋଇଛି ଯେ ଏ ଘୁଣଖିଆ ସମାଜ ସଂରଚନାରେ ଖାସ୍ କିଛି ବୈପ୍ଳବିକ ପରିବର୍ତ୍ତନ ଆଣିପାରିବା ସେ ମାୟାଭୂମିରୁ ସମ୍ଭବ ନୁହେଁ। ସେଇଥିପାଇଁ ଯେତେବେଳେ ସେମାନେ କ୍ଷମତାର ଗୋଟିଏ ଗୋଟିଏ ଉଚ୍ଚତମ ଶୃଙ୍ଗ ଆରୋହଣ କରି ସାରିଥିଲେ ସେହିଠାରେ ରହିବା ଅଥବା ଉଚ୍ଚତର ଶୃଙ୍ଗକୁ ପାଦ ବଢ଼ାଇବା ସେମାନଙ୍କ ପାଇଁ ବିଶେଷ କିଛି ଅସାଧ ବ୍ୟାପାର ନଥିଲା। ନବବାବୁ ମୁଖ୍ୟମନ୍ତ୍ରୀ ପଦ ତ୍ୟାଗ କରିବା ପରେ ସ୍ୱୟଂ ନେହେରୁ ତାଙ୍କୁ ବହୁ ଉଚ୍ଚ ପଦପଦବୀ ଯାଚିଛନ୍ତି। ଏକଦା ବିଜୁ ପଟ୍ଟନାୟକ ଯେପରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ରବି ରାୟଙ୍କୁ ଯାଚିଛନ୍ତି ସେହିପରି ତାଙ୍କ ପୁଅ ନବୀନ ପଟ୍ଟନାୟକ ମଧ୍ୟ 'ରବି ଅଙ୍କଲ୍'ଙ୍କୁ ପୁନଶ୍ଚ କ୍ଷମତା ରାଜନୀତି ଫେରିବା ପାଇଁ ଅନୁରୋଧ କରିଛନ୍ତି। ମାତ୍ର ନବବାବୁଙ୍କ ପରି ରବିବାବୁଙ୍କର ମଧ୍ୟ ଏ ସବୁ ପ୍ରସ୍ତାବ ପ୍ରତି ସେଇ ଗୋଟିଏ ପ୍ରତିକ୍ରିୟା – ନ ଗଙ୍ଗଦତ୍ତଃ ପୁନରପି କୂପଂ। ୧୯୯୭ ମସିହାରେ ରବିବାବୁ ଆଉ ନିର୍ବାଚନରେ ଭାଗ ନ ନେବାକୁ ଏବଂ କ୍ଷମତା ରାଜନୀତିକୁ ନ ଫେରିବାକୁ ନିଷ୍ପତ୍ତି

ନେଲେ। ନବକୃଷ୍ଣ ଚୌଧୁରୀଙ୍କ ସହିତ ଆରମ୍ଭରୁ ରବିବାବୁଙ୍କୁ ତୁଳନା କରିବାର ପ୍ରଲୋଭନ ଏଡ଼ାଇ ହେଲାନାହିଁ। କାରଣ ମାତ୍ର ଏଇ ତିନିଦିନ ତଳେ ରବିବାବୁଙ୍କ ପରି ଆମ୍ଭମାନଙ୍କର ମଧ୍ୟ ଅନ୍ୟତମ ପ୍ରିୟନେତା ନବବାବୁଙ୍କ ଜନ୍ମଜୟନ୍ତୀ ଆମ୍ଭେମାନେ ପାଳନ କରିଛୁ। ଲୋହିଆ ଏବଂ ନବବାବୁଙ୍କ ରାଜନୀତିର ଓଡ଼ିଶାରେ ରବିବାବୁ ହିଁ ଯୋଗ୍ୟତମ ମଶାଲବାହୀ।

ହଁ, ଯେପରି ନବବାବୁଙ୍କ କ୍ଷେତ୍ରରେ ଘଟିଥିଲା, ରବିବାବୁଙ୍କର 'ରାଜନୀତି'ରୁ ଓହରିଯିବା ସିଦ୍ଧାନ୍ତକୁ ମଧ୍ୟ କେହି କେହି 'ରାଜନୀତିରୁ ସନ୍ୟାସ', 'ପଳାୟନବାଦ' ଇତ୍ୟାଦି ରୂପେ ଚିତ୍ରଣ କରିଥାଆନ୍ତି। ଲାମ୍ପଟ୍ୟ ଓ ବ୍ୟଭିଚାରର ଏକମାତ୍ର ବିକଳ୍ପ ସନ୍ୟାସ ନୁହେଁ। ଭଲ ଗୃହୀ ହେବା ମଧ୍ୟ ଆଉ ଏକ ବିକଳ୍ପ। ରବିବାବୁ 'ଅନ୍ୱେଷାର ଆକାଶ'ରେ ଲେଖନ୍ତି, "ମୁଁ ଡ. ଲୋହିଆଙ୍କଠାରୁ ଏତିକି ଶିକ୍ଷା କରିଥିଲି ଯେ, ଏକ ବୃହତ୍ତର ସ୍ୱପ୍ନକୁ ରୂପାୟିତ କରିବା ପାଇଁ ଭୋଟ ରାଜନୀତି ଏକ ଅସ୍ତ୍ର ହୋଇପାରେ। ମାତ୍ର, ତାହା ଏକ ବୃତ୍ତି ବା ପେଷା ହେବା ଅନୁଚିତ।" ରବିବାବୁ ପଳାୟନବାଦୀ ନଥିଲେ। କେବଳ ରାଜନୀତିକୁ ଏକ ପେଷାରେ ପରିଣତ କରିବା ପୂର୍ବରୁ ସେଥିରୁ ବିଦାୟ ନେଲେ। ଠିକ୍ ଯେପରି ନବବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ପରଦିନ ରାଜନୀତି କରିବାପାଇଁ ଲୋକଙ୍କ ମେଳକୁ ଚାଲିଗଲେ ସେହିପରି ଶାସନର ଉଚ୍ଚସ୍ତରରେ ଚାଲିଥିବା ଭ୍ରଷ୍ଟାଚାର, ଶାସନର ମାତ୍ରାଧିକ୍ୟ କେନ୍ଦ୍ରୀକରଣ ଏବଂ ଜଗତିକରଣ ନାମରେ ଦେଶକୁ ଜାତୀୟ ତଥା ବିଦେଶୀ ପୁଞ୍ଜିପତିଙ୍କ ପାଖରେ ବିକ୍ରି କରିବା ପ୍ରକ୍ରିୟାକୁ ବିରୋଧ କରି ରବିବାବୁ ସେହି ୧୯୯୭ରେ 'ଲୋକଶକ୍ତି ଅଭିଯାନ' ନାମରେ ଏକ ଆନ୍ଦୋଳନ ଛିଡ଼ାକଲେ। ରାଜନୀତିର ଦୁଷ୍ଟଚକ୍ରବ୍ୟୁହରୁ ନିଜକୁ ମୁକ୍ତ କରି 'ଲୋକନୀତି'କୁ ଆପଣେଇ ନେଲେ। ଆଜି ୮୦ ବର୍ଷ ବୟସରେ ମଧ, ଜରାସମେତ ବିଭିନ୍ନ ରୋଗର ଦୁର୍ବହ ଭାର ବହନ କରି ସେ ଦିଲ୍ଲୀଠାରୁ ଆରମ୍ଭ କରି ଭାରତର ବିଭିନ୍ନ ଗାଁଗଣ୍ଡା ଏହି ବାର୍ତ୍ତା ନେଇ ବୁଲୁଛନ୍ତି। ଏକଦା ଯେପରି ନବବାବୁଙ୍କ କ୍ଷେତ୍ରରେ ଘଟୁଥିଲା। ଆଜି ଓଡ଼ିଶାର ବିଭିନ୍ନ ପ୍ରଗତିଶୀଳ ଦଳ ଏବଂ ସଂଗଠନ ନିଜର ବିଭିନ୍ନ ଲୋକାଭିମୁଖୀ ଆନ୍ଦୋଳନରେ ତାଙ୍କର ସହଯୋଗକୁ ଅପରିହାର୍ଯ୍ୟ ମନେ କରୁଛନ୍ତି। ରାଜନୀତିରୁ ପଳାୟନ କରି ସେ ଏକ ଯଥାସାଧ୍ୟ ତନ, ମନ, ଧନ ଅର୍ପଣ କରି ଲୋକନୀତିକୁ ମଜବୁତ କରିବାରେ ଲାଗି ରହିଛନ୍ତି।

କ୍ଷମତା ରାଜନୀତିକୁ 'ଅସ୍ତ୍ର' କରି ସେ ନିଜର ବୃହତ୍ତର ସମାଜବାଦୀ ସ୍ୱପ୍ନମାନଙ୍କୁ ହୁଏତ ରୂପାୟିତ କରିପାରିନାହାନ୍ତି ସତ, ମାତ୍ର ତାକୁ ପ୍ରୟୋଗ କରି ଯେତୋଟି ଯୁଦ୍ଧ ଲଢ଼ିଛନ୍ତି ତାହା କମ୍ ଉଲ୍ଲେଖଯୋଗ୍ୟ ନୁହେଁ। ୧୯୬୭ରେ ପ୍ରଥମ ଥର ପାଇଁ ପୁରୀରୁ

ସାଂସଦ ରୂପେ ନିର୍ବାଚିତ ହେବା ପରେ ପରେ ଲୋକସଭାରେ ସେ ତାଙ୍କର ଯେଉଁ ପ୍ରଥମ ଭାଷଣ ଦେଲେ ତାହା ସମଗ୍ର ଦେଶରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା। ଲୋକସଭା ଇତିହାସରେ ସେ ପ୍ରଥମ ସାଂସଦ ଯିଏ ନିଜର 'ମେଡ଼େନ୍ ସ୍ପିଚ୍' ନିଜ ମାତୃଭାଷାରେ ପ୍ରଦାନ କରିଥିଲେ। ରବିବାବୁ ସେଦିନ ନିଜ ସପକ୍ଷରେ ଯୁକ୍ତି କରିଥିଲେ ଯେ ସମ୍ବିଧାନର ଅଷ୍ଟମ ସୂଚୀ ଅନୁଯାୟୀ (ସେ ସମୟର) ଷୋଳଟା ଯାକ ରାଜ୍ୟର ଭାଷା ଜାତୀୟ ଭାଷା। ମାତ୍ର ଇଂରାଜି ଏକ ଜାତୀୟ ଭାଷା ରୂପେ ସମ୍ବିଧାନରେ ଗୃହୀତ ନୁହେଁ। ଅଥଚ ସମ୍ବିଧାନ ଲାଗୁହେବାର (ସେତେବେଳକୁ) ୧୭ ବର୍ଷ ପୂରିଯାଇଥିଲେ ମଧ୍ୟ ଲୋକପ୍ରତିନିଧିମାନେ ଲୋକଙ୍କର ଭାଷା ବ୍ୟବହାର ନକରି ଇଂରାଜିରେ ନିଜ ଅଭିଭାଷଣ ପ୍ରଦାନ କରିବା ଲଜ୍ଜାର ବିଷୟ। ସେଦିନ ଏହି ଯୁବ ଏବଂ ସାଂସଦ କହି ବସିପଡ଼ିବା ପରେ ସଭ୍ୟମାନଙ୍କ ଟେବୁଲ୍ ବାଡ଼ିଆରେ ସେଦିନ ଲୋକସଭା ଉଚ୍ଛୁଳି ପଡ଼ିଲା। ଏହି ଘଟଣା ପରେ ତତ୍କାଳୀନ ବାଚସ୍ପତି ସଞ୍ଜୀବ ରେଡ଼ି ରୁଲିଂ ଦେଲେ ଯେ ସଭ୍ୟମାନେ ଚାହିଁଲେ ସମ୍ବିଧାନ ସ୍ୱୀକୃତିପ୍ରାପ୍ତ ଆଞ୍ଚଳିକ ଭାଷାରେ ନିଜ ବକ୍ତବ୍ୟ ପ୍ରଦାନ କରିପାରିବେ। ଭାରତୀୟ ଭାଷା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବାଭଳି ଇଏ ଏକ ଘଟଣା ନୁହେଁ କି?

ସେହି ଷାଠିଏ ଦଶକର କଥା। ସେତେବେଳେ ଓଡ଼ିଶାକୁ ସିଧାସିଧି ଦିଲ୍ଲୀରୁ କୌଣସି ଟ୍ରେନ୍ ଚାଲୁନଥିଲା। ରେଳ ବଜେଟ୍ ଆଲୋଚନାବେଳେ ସେତେବେଳେ ପାର୍ଲାମେଣ୍ଟରେ ସଂଯୁକ୍ତ ସମାଜବାଦୀ ଦଳର ନେତା ଥିବା ରବି ରାୟ ଏବଂ ରେଳମନ୍ତ୍ରୀ ରାମସେବକ ସିଂହଙ୍କ ମଧ୍ୟରେ ଘମାଘୋଟ ବାକ୍ୟୁଦ୍ଧ ଲାଗିଲା। ଶେଷରେ ରାଗିକରି ରବିବାବୁ ଗର୍ଜିଲେ – "ଓଡ଼ିଶାର ଲୋକେ କ'ଣ ନିଆଁରେ ମୁତିଛନ୍ତି?" ତାଙ୍କରି ଦାବୀ ଫଳରେ ଦିଲ୍ଲୀରୁ ଓଡ଼ିଶାକୁ ପ୍ରଥମଥର ପାଇଁ ସିଧାସଳଖ ଟ୍ରେନ୍ ଚାଲିଲା – ଉତ୍କଳ ଏକ୍ସପ୍ରେସ୍।

୧୯୭୯ରେ ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳରେ ସେ ସ୍ୱାସ୍ଥ୍ୟମନ୍ତ୍ରୀ ରୂପେ ଯୋଗଦେଲେ। ମାତ୍ର ତାଙ୍କୁ ଲାଗୁଥିଲା ଯେ ସେ ଲୋକଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇ ଭୋଟ ପାଇ ଆସିଛନ୍ତି ନିଜର ସେ ପ୍ରତିଶ୍ରୁତି ସେ ରକ୍ଷା କରି ପାରୁନାହାନ୍ତି। ତେଣୁ ସେ ଇସ୍ତଫା ଦେବାକୁ ମନସ୍ଥ କଲେ। ପ୍ରଧାନମନ୍ତ୍ରୀଙ୍କ ହାତକୁ ସେ ଯେତେବେଳେ ଇସ୍ତଫାପତ୍ର ବଢ଼ାଇଦେଲେ ସେତେବେଳେ ଶ୍ରୀ ଦେଶାଇ ବିଶ୍ୱାସ କରିପାରିଲେ ନାହିଁ। କାରଣ ସେ ପର୍ଯ୍ୟନ୍ତ ତାଙ୍କ ଦେଖିବାରେ କୌଣସି ମନ୍ତ୍ରୀ ଏଭଳି କାରଣ ପାଇଁ ସ୍ୱେଚ୍ଛାରେ ଇସ୍ତଫା ଦେଇନଥିଲେ। ମୋରାରଜୀ ପଚାରିଲେ, "ତମେ କ'ଣ ସତରେ ଇସ୍ତଫା

ଦେଇଦେଉଛ ?” ଅବଶ୍ୟ ରବିବାବୁଙ୍କ ଜିଦ୍ ହେତୁ ସେ ଇସ୍ତଫା ଗୃହୀତ ହେଲା। ରବିବାବୁଙ୍କର ଆତ୍ମସନ୍ତୋଷ ହୋଇ ନଥିଲେ ମଧ୍ୟ ସେଇ ବର୍ଷେ, ଦେଢ଼ବର୍ଷର ମନ୍ତ୍ରୀତ୍ୱ ଭିତରେ ସେ ଅନେକ କିଛି କାର୍ଯ୍ୟ କରିଥିଲେ। ଓଡ଼ିଶାରେ ସେ ଜାତୀୟ ଆୟୁର୍ବେଦ କେନ୍ଦ୍ର ପ୍ରତିଷ୍ଠା କରିଥିଲେ। ଭଦ୍ରକରେ ଓଡ଼ିଶାର ପ୍ରଥମ ୟୁନାନୀ ଚିକିତ୍ସାଳୟ ପ୍ରତିଷ୍ଠା କରିଥିଲେ। ସାଧାରଣ ଲୋକ ଯେପରି ନିଜ ସାହିବସ୍ତିରେ ରହି ସ୍ୱାସ୍ଥ୍ୟସେବା ପାଇପାରିବେ ସେଥିପାଇଁ ଇଂଲଣ୍ଡରୁ ୩୦୦ଟି ଶୀତତାପ ନିୟନ୍ତ୍ରିତ, ସମସ୍ତ ଅତ୍ୟାଧୁନିକ ଯନ୍ତ୍ରପାତିରେ ସଜ୍ଜିତ ମେଡ଼ିକାଲ୍ ଭ୍ୟାନ୍ ଅଣାଇଥିଲେ ଯାହାକି ‘ଭ୍ରାମ୍ୟମାଣ ସ୍ୱାସ୍ଥ୍ୟକେନ୍ଦ୍ର’ ରୂପେ ପରିଚିତ ଥିଲା। ଚୀନ୍‌ର ‘ଖାଲିପାଦ ଡାକ୍ତର’ ପରି ଗାଁଗହଳିର ସାଧାରଣ ଲୋକଙ୍କୁ ଚିକିତ୍ସାର କେତେକ ପ୍ରାଥମିକ ଦିଗ ଶିକ୍ଷା ଦେଇ ତୃଣମୂଳ ସ୍ୱାସ୍ଥ୍ୟସେବାକୁ ଦୃଢ଼ିଭୂତ କରିବା ପାଇଁ ସେ ‘ଜନ ସ୍ୱାସ୍ଥ୍ୟ ରକ୍ଷକ’ ନାମରେ ଏକ ‘ଲୋକ ଡାକ୍ତର’ ବ୍ୟବସ୍ଥାର ପରିକଳ୍ପନା କରିଥିଲେ ଓ କାର୍ଯ୍ୟକାରୀ ମଧ୍ୟ କରାଇଥିଲେ। ମାତ୍ର ରାଜ୍ୟ ସରକାରମାନଙ୍କର ନିଶ୍ଚେଷ୍ଟତା ଫଳରେ ଶେଷୋକ୍ତ ଦୁଇ ବ୍ୟବସ୍ଥା ତାଙ୍କରି ଆଖିଆଗରେ ଭୁଷୁଡ଼ି ପଡ଼ିଲା। ଏହା ତାଙ୍କୁ ଖୁବ୍ ବାଧିଥିଲା।

୧୯୮୯ରେ ସେ ୯ମ ଲୋକସଭାକୁ ନିର୍ବାଚିତ ହୋଇ ୩ୟ ଥର ପାଇଁ ଲୋକସଭା ସଦସ୍ୟ ହେଲେ ଏବଂ ଏକ ଝୁଲା ସଂସଦରେ ସୁଦ୍ଧା ସର୍ବସମ୍ମତି କ୍ରମେ ଲୋକସଭାର ବାଚସ୍ପତି ପଦ ଗ୍ରହଣ କଲେ। ଏ ସମୟରେ ସେ ଅନେକ ଐତିହାସିକ ନିଷ୍ପତ୍ତି ନେଇଛନ୍ତି ଯାହା ଦେଶବିଦେଶରେ ସଂସଦୀୟ ରାଜନୀତିର ଆଲୋଚନାବେଳେ ଏବେ ମଧ୍ୟ ଚର୍ଚ୍ଚାର ବିଷୟ ହୋଇଥାଏ। ଦଳବଦଳ ଆଇନ କଡ଼ାକଡ଼ି ଭାବେ ଲାଗୁକରି କିଛି ମନ୍ତ୍ରୀଙ୍କ ସମେତ ଛଅ ଜଣ ସଭ୍ୟଙ୍କୁ ସେ ବରଖାସ୍ତ କଲେ। ସୁପ୍ରିମ୍‌କୋର୍ଟ ବିଚାରପତି ଶ୍ରୀ ରାମସ୍ୱାମୀଙ୍କୁ ଦୁର୍ନୀତି ଅଭିଯୋଗରେ ବିଚାରପତି ଆସନରୁ ବିତାଡ଼ନ ଉଦ୍ୟମ ବିରୁଦ୍ଧରେ ସମସ୍ତ ଷଡ଼ଯନ୍ତ୍ର ସତ୍ତ୍ୱେ ସେ ଯେପରି ଦୃଢ଼ ପଦକ୍ଷେପ ନେଲେ ତାହା ସେତେବେଳେ ସମଗ୍ର ବିଶ୍ୱରେ ଆଲୋଚିତ ହୋଇଥିଲା। ସଂସଦୀୟ ଆଲୋଚନାକୁ ଜନସାଧାରଣଙ୍କ ଆଗରେ ଏକ ଖୋଲାପୃଷ୍ଠା ରୂପେ ରଖିବା ପାଇଁ ତାଙ୍କରି ଅମଳରେ ପ୍ରଥମେ ସଂସଦୀୟ ଆଲୋଚନାର ରେଡ଼ିଓ ଏବଂ ଟି.ଭି. ପ୍ରସାରଣ ଆରମ୍ଭ ହେଲା। ତାଙ୍କରି ପ୍ରଚେଷ୍ଟାରେ ସ୍ୱନାମଧନ୍ୟ ସାଂସଦମାନଙ୍କ କାର୍ଯ୍ୟାବଳୀ ସ୍ମରଣ କରାଇବା ପାଇଁ ‘ଏମିନେଣ୍ଟ ପାର୍ଲାମେଣ୍ଟାରିଆନ୍‌ସ’ ଶୀର୍ଷକ ଏକ ମନୋଗ୍ରାଫ୍ ସିରିଜ୍ ପ୍ରକାଶ ପାଇଥିଲା।

ବାଚସ୍ପତି ପଦରୁ ଓହ୍ଲାଇ ଆସିବା ପରେ ସେ ଅନ୍ୟାନ୍ୟ ଗାନ୍ଧିବାଦୀଙ୍କ ସହ ଚାଲିଲେ ଗୁଜରାଟର କାଣ୍ଡଲାଠାରେ ବହୁ ଦେଶୀୟ କମ୍ପାନୀ କାରଗିଲ୍‌ର ଲୁଣ କାରଖାନା

ବିରୁଦ୍ଧରେ ସତ୍ୟାଗ୍ରହ କରିବାକୁ। ସେଇବର୍ଷ ସେ ପୁନଶ୍ଚ ଲୋକସଭାକୁ ସଦସ୍ୟ ରୂପେ ନିର୍ବାଚିତ ହେଲେ। ସେହି ସମୟରେ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଉଦାରୀକରଣ ବା ଜଗତିକରଣ ନୀତି ପ୍ରଚଳନ କଲେ। ସେ ସମୟରେ ମଧ୍ୟ ସଂସଦରେ ରବିବାବୁଙ୍କର ଭୂମିକା ଚମକ୍‌ପ୍ରଦ ଥିଲା। ଜଗତିକରଣ ପ୍ରକ୍ରିୟା କାର୍ଯ୍ୟକାରୀ ହେଲେ ଗରିବ ଦେଶମାନେ କିପରି ତଳିତଳାନ୍ତ ହୋଇଯିବେ ତାହା ଦର୍ଶାଇ ଏକ ରିପୋର୍ଟ ଭାରତ ସମେତ ଦକ୍ଷିଣ ଗୋଲାର୍ଦ୍ଧର ବିଭିନ୍ନ ଗରିବ ଦେଶମାନଙ୍କର ଅନୁଷ୍ଠିତ ଏକ ସମ୍ମିଳନୀ ପ୍ରକାଶ କରିଥିଲେ। ତାହା ସାଉଥ୍-ସାଉଥ୍ ରିପୋର୍ଟ ରୂପେ ପରିଚିତ। ସେଥିରେ ଦସ୍ତଖତ କରିଥିବା ତା'ର ଅନ୍ୟତମ ରଚୟିତା ଜଣେ ବିଶ୍ୱବିଖ୍ୟାତ ଅର୍ଥନୀତିଜ୍ଞ ସେଦିନ ଲୋକସଭାରେ ଉପସ୍ଥିତ ଥିଲେ। ରବିରାୟ ସଦ୍ୟ ପ୍ରକାଶିତ ସେ ରିପୋର୍ଟକୁ ସର୍ବସମ୍ମୁଖରେ ଟେକିଧରି କହିଲେ, "ଏଥିରେ ଦସ୍ତଖତ କରିଥିବା ବ୍ୟକ୍ତି ଏଠାରେ ସାଂସଦ ରୂପେ ଉପସ୍ଥିତ ଅଛନ୍ତି।" ସଙ୍ଗେ ସଙ୍ଗେ ସଂସଦରେ ହଇଚଇ ପଡ଼ିଗଲା। ରବିବାବୁଙ୍କ ମାଧ୍ୟମରେ ସାଂସଦମାନେ ଏବଂ ଭାରତର ଜନସାଧାରଣ ପ୍ରଥମଥର ପାଇଁ ଜାଣିବାକୁ ପାଇଲେ ଯେ ରାଓଙ୍କ ମନ୍ତ୍ରୀମଣ୍ଡଳରେ ତଦାନୀନ୍ତନ ଅର୍ଥମନ୍ତ୍ରୀ ଶ୍ରୀ ମନମୋହନ ସିଂହ ଯେ କି ଭାରତରେ ଉଦାରୀକରଣ ନୀତିର ଶିଳାନ୍ୟାସ କଲେ ସିଏ ହିଁ ତା'ର କିଛିକାଳ ପୂର୍ବରୁ ଦକ୍ଷିଣ-ଦକ୍ଷିଣ ସମ୍ମିଳନୀରେ ତା'ର ମାରାତ୍ମକ ପରିଣତି ସୂଚାଇ ପୂର୍ବୋକ୍ତ ରିପୋର୍ଟରେ ହାତକାଟି ଦସ୍ତଖତ କରିଥିଲେ।

ଏହିଭଳି ସାଂସଦ ଏବଂ ଲୋକସଭା ବାଚସ୍ପତି ରୂପେ ବହୁ କୃତିତ୍ୱର ଅଧିକାରୀ ଥିଲେ ରବିବାବୁ। ଜଣେ ପୋଖତ ପାର୍ଲାମେଣ୍ଟାରିଆନ୍ ରୂପେ ଯେତେବେଳେ ତାଙ୍କ ସୁନାମ ସର୍ବୋଚ୍ଚ ଶିଖରରେ ପହଞ୍ଚିଥିଲା ସେତିକିବେଳେ ସେ କ୍ଷମତା ଓ ଦଳୀୟ ରାଜନୀତିରୁ ବିଦାୟ ନେଲେ – ରାଜନୀତିରୁ ସନ୍ୟାସ ନେବା ପାଇଁ ନୁହେଁ, ରାଜନୀତିକୁ ସଜାଡ଼ିବା ପାଇଁ। ଏକ ସମ୍ଭ୍ରାନ୍ତ ଜମିଦାର ପରିବାରରେ ଜନ୍ମଗ୍ରହଣ କରି ଶୈଶବରୁ ସେ ପରିବାର ଭିତରେ ଏବଂ ବାହାରରେ ସମାଜବାଦୀ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ ଲଢ଼ି ଆସିଛନ୍ତି। ଏକାଧିକ ବାର ଜେଲ୍ ବରଣ କରିଛନ୍ତି।

ତାଙ୍କୁ ନୀତିପଥରେ ଅଟଳ ରହିବା ଦିଗରେ ତାଙ୍କର ଧର୍ମପତ୍ନୀ ଡା. ସରସ୍ୱତୀ ସ୍ୱାଇଁ ଅନେକ ପରିମାଣରେ ଦାୟୀ ବୋଲି ଶ୍ରୀ ରାୟ ସ୍ୱୀକାର କରନ୍ତି। ଭାରତର ସ୍ୱାସ୍ଥ୍ୟ ମନ୍ତ୍ରୀଙ୍କ ପତ୍ନୀ ଡାକ୍ତରାଣୀ କଟକ ବଦଳି ନହୋଇ ସେହି ବୁର୍ଲାରେ ହିଁ ପଡ଼ିରହିବ। ଏହା ଏବେ ଅକଳ୍ପନୀୟ। ଡାକ୍ତର ସ୍ୱାଇଁ ସ୍ୱାମୀଙ୍କ ପଦମର୍ଯ୍ୟାଦାର ଦୁରୂପଯୋଗ କରିବା ତ ଦୂରର କଥା, ବିଖ୍ୟାତ ଭାଷାତତ୍ତ୍ୱ ବିଜ୍ଞାନୀ ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ କହିବା ଭଳି,

"ସ୍ୱାମୀଙ୍କ ବିବେକର ଜାଗ୍ରତ ପ୍ରହରୀ" ହୋଇ ତାଙ୍କୁ 'ବୁରି ନଜର ବାଲେ'ଙ୍କ କୁଦୃଷ୍ଟିରୁ ରକ୍ଷା କରିଛନ୍ତି। ଆଜି ଏ ସବୁ ଅକଳ୍ପନୀୟ।

ରବିବାବୁ ଏବେ କହନ୍ତି, ଦିନେ ଯୁବସମାଜବାଦୀ ରୂପେ ସେ ଯେଉଁ ଗାନ୍ଧିବୁଢ଼ାଙ୍କୁ ଅନେକ ସମାଲୋଚନା କରିଛନ୍ତି ଏବେ ପ୍ରତିଦିନ ତା ସାହିତ୍ୟରୁ କିଛି ପାରାୟଣ ନକଲେ ସେ ଜଳସ୍ପର୍ଶ କରିପାରନ୍ତି ନାହିଁ। ତାଙ୍କ ମତରେ ଜାତିଆଣଭାବ ତଥା ସାମ୍ପ୍ରଦାୟିକତା ଭଳି ଅମାନବବାଦୀ ଅପଶକ୍ତିମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ଏକ ଶକ୍ତିଶାଳୀ ଭାବାଦର୍ଶ ଏବଂ ଶକ୍ତିଶାଳୀ ସଂଗଠନର ଜରୁରୀ ଆବଶ୍ୟକତା ରହିଛି। ଏହି ଭାବାଦର୍ଶର ନିର୍ମାଣ ଦିଗରେ ମାର୍କ୍ସ, ଗାନ୍ଧି, ବିବେକାନନ୍ଦ, ଖାଁ ଅବଦୁଲ୍ ଗଫର୍ ଖାଁ, ଆମ୍ବେଦକର ତଥା ଲୋହିଆଙ୍କ ଭାବାଦର୍ଶ ଭିତରେ ଏକ ସମନ୍ୱୟ ସୂତ୍ର ଖୋଜାହେବା ଉଚିତ। ସେହି ଭାବାଦର୍ଶକୁ ଭିତ୍ତିକରି କିପରି ଲଢ଼େଇ ହେବ ସେ ସଂପର୍କରେ ବିସ୍ତର ବିମର୍ଶ ପାଇଁ ତଥା ବିଭିନ୍ନ ପ୍ରଗତିଶୀଳ ଦଳ, ସଂଗଠନ ଓ ବ୍ୟକ୍ତିଙ୍କ ମଧ୍ୟରେ ସମଝୋତା ପ୍ରତିଷ୍ଠା ଓ ନିରନ୍ତର ଆଲୋଚନା ପାଇଁ ତାଙ୍କର ବ୍ୟଗ୍ରତାରୁ ଜନ୍ମ ନେଇଛି 'ଲୋହିଆ ଏକାଡ଼େମୀ'କୁ ଏକ ସମନ୍ୱୟ ମଞ୍ଚରେ ପରିଣତ କରିବାର ପରିକଳ୍ପନା। ଏବେ ଭୁବନେଶ୍ୱରର କେନ୍ଦ୍ରସ୍ଥଳରେ ନିର୍ମିତ ହୋଇଥିବା 'ଲୋହିଆ ଏକାଡ଼େମୀ'ର ସୁବୃହତ୍ ଅଟ୍ଟାଳିକା ତାଙ୍କ କର୍ମବହୁଳ ଜୀବନର ଅନ୍ୟତମ କୃତିତ୍ୱ। ତାଙ୍କ ଜୀବନ ସ୍ମୃତିର ଉପସଂହାରରେ ସେ କହିଛନ୍ତି "ଜୀବନ ଏକ ଅସରନ୍ତି ଅନ୍ୱେଷଣ। ଏକ ଅସରନ୍ତି ଯାତ୍ରା। ଜୀବନର ଶେଷ ମୁହୂର୍ତ୍ତଯାଏ ଜଣେ ସମାଜବାଦୀ ସୈନିକ ରୂପେ ସକ୍ରିୟ ରହିବି – ଏହାହିଁ ମୋର କାମନା।" ତାଙ୍କର ଏହି ପବିତ୍ର ଜନ୍ମଦିବସରେ ଅଗଣିତ ସ୍ତାବକ ତଥା ସାଥିମାନେ ତାଙ୍କର ନିରାମୟ ଦୀର୍ଘଜୀବନ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା ଜଣାଉଛନ୍ତି।

(ସଂଗୃହୀତ ଲେଖା)

■■■

# ରବି ରାୟଙ୍କୁ ମୁଁ ଯେପରି ଜାଣେ

ଶ୍ରୀ ରମେଶ ଚନ୍ଦ୍ର ରଥ (ଚେତନା)

ସତକୁ ସତ ରବି ରାୟ ଏକ କ୍ରାନ୍ତିର ଅଭୟ ସ୍ୱରୂପ ବିବେଚିତ ହେବେ ନିଶ୍ଚୟ ଯେ ସାରା ଜୀବନ ନିଜକୁ ଲୋକଙ୍କ ସ୍ୱାର୍ଥ ପାଇଁ କଲ୍ୟାଣ ପାଇଁ ତିଳ ତିଳ ଉତ୍ସର୍ଗ କରିଦେଇଛନ୍ତି । ଜଣେ ଉଚ୍ଚଶିକ୍ଷିତ ସ୍ୱାଧୀନତା ସଂଗ୍ରାମୀ ଓ ବେପରବାୟ ଧୀମାନ, ଚିନ୍ତାନାୟକ ତଥା ଜୀବନଶୈଳୀରେ ନିଜର ଶୈଶବ, କୈଶୋର, ଯୌବନ ଓ ଶେଷକୁ ବାର୍ଦ୍ଧକ୍ୟ ବୟସ ପର୍ଯ୍ୟନ୍ତ ନିଧଡ଼କ୍ ଅତିବାହିତ କରିଚାଲିଛନ୍ତି ଓ ସେଇ ରବି ରାୟଙ୍କ ନାଁ ମୁଁ କେବଳ ଶୁଣିନାହିଁ – ତାଙ୍କ ସହିତ ଆଳାପ ଆଲୋଚନା କରିଛି । ପତ୍ରାଳାପ କରିଛି । ସେ ମୋଠାରୁ ଦଶବର୍ଷ ବଡ଼ – ତେଣୁ ତାଙ୍କ ପ୍ରତି ବରିଷ୍ଠତା ଭିତ୍ତିରେ ଶ୍ରଦ୍ଧା ସମ୍ମାନ ରହିବା ସ୍ୱାଭାବିକ । ସେ ରାଜନୀତିରେ ଗୋଟିଏ ଧୂଳିଝଡ଼ ଭଳି ଅନୁଭୂତ ହୋଇ ଆସିଛନ୍ତି । ସେ ଏକ ପ୍ରକାର ଘୂର୍ଣ୍ଣି । ତାଙ୍କୁ ଦେଖିଲେ ମନେହୁଏ କେଉଁ ଏକ ଦୃପ୍ତ ବିଜୟୀ ବୀର ଯେପରି ଯୁଦ୍ଧକ୍ଷେତ୍ରକୁ ଯାତ୍ରା କରୁଛନ୍ତି । ତାଙ୍କ ଯୁଦ୍ଧ ଥିଲା ଜନଜାଗୃତିର ଯୁଦ୍ଧ, ଅହିଂସ ଅଥଚ ଶାଣିତ ସେ ଶବ୍ଦ ଯୁଦ୍ଧ । ଷାଠିଏ ବର୍ଷ ଧରି ଏକ ସକ୍ରିୟ ସମାଜବାଦୀ ନେତାଭାବେ ସେ ସବୁବେଳେ ବ୍ୟତିକ୍ରମ ଭଳି ମନେହୁଅନ୍ତି । ରାଜନୀତିକୁ ସ୍ୱାଧୀନତା ପରେ ଯେଉଁମାନେ ପେସା କରି କ୍ଷମତାର ସିଡ଼ି ଚଢ଼ି ଚାଲନ୍ତି ସେମାନଙ୍କ ପାଇଁ ରବି ରାୟ ଏକ ମୋହଭଙ୍ଗକାରୀ ମୁଦ୍‌ଗର । ସବୁବେଳେ ସେ ସରକାରୀ ବ୍ୟବସ୍ଥାର ଅସାରତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଆସିଛନ୍ତି । ଓଡ଼ିଶାରେ ଡ. ରାମମନୋହର ଲୋହିଆଙ୍କ ଅନୁଗାମୀ ଭାବେ ସେ ଜାତୀୟ ସ୍ତରରେ ମଧ ଲୋହିଆ-ସିଦ୍ଧାନ୍ତକୁ ଅଭ୍ରାନ୍ତ ଓ ଅଲଂଘ୍ୟ ବୋଲି ପ୍ରତିପାଦନ କରି ଆସିଛନ୍ତି । ବହୁ ସମାଜବାଦୀ ନେତାଙ୍କର ସେ ଥିଲେ ଅତି ପ୍ରିୟ, ଆପଣାର ମଣିଷ । ଅନେକ ବିରୋଧୀ ରାଜନୀତିଜ୍ଞଙ୍କ ପାଇଁ ମଧ ସେ ଏକ ପ୍ରତିସ୍ପର୍ଦ୍ଧୀ ଅଥଚ ସମ୍ମାନଜନକ ବ୍ୟକ୍ତି ଭାବରେ ସ୍ୱୀକୃତ ହୋଇ ଆସିଛନ୍ତି । ସେ ଅଟଳବିହାରୀ ବାଜପେୟୀ ହୁଅନ୍ତୁ କି ବିଜୁ ପଟ୍ଟନାୟକ ହୁଅନ୍ତୁ କାହାରି ପ୍ରତି ତାଙ୍କର ବ୍ୟକ୍ତିଗତ ବିଦ୍ୱେଷ ନଥିଲା, କି ନାହିଁ ମଧ । ରାଜନୀତିର ସରହଦରେ ବିତର୍କ ହିଁ ସିଦ୍ଧାନ୍ତର ଏକ ଆବଶ୍ୟକ ପ୍ରସ୍ତୁତି । ସେ କୌଣସି ପ୍ରସଙ୍ଗକୁ କାହାଦ୍ୱାରା ପ୍ରଭାବିତ

ହୋଇ ଗ୍ରହଣ କରିପାରନ୍ତି ନାହିଁ। ସେ ଗୋଟିଏ କ୍ରାନ୍ତିର ପ୍ରତୀକ – ବିନା ରକ୍ତପାତରେ ଯେଉଁ କ୍ରାନ୍ତିର ପଥ ମହାତ୍ମା ଗାନ୍ଧୀ ଗ୍ରହଣ କରିଥିଲେ ତାହା ହିଁ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା। ଛାତ୍ରଜୀବନରୁ ସାଧାରଣ ଜୀବନରେ ଗଣନେତୃତ୍ୱର ଭୂମିକା ଗ୍ରହଣ କରି ସେ ଚର୍ଚ୍ଚିତ ହୋଇ ଆସିଛନ୍ତି। ସମାଜବାଦୀ ଆନ୍ଦୋଳନର ଏକନିଷ୍ଠ ଅଗ୍ରଗାମୀ ନେତା ଭାବେ ସେ ତାଙ୍କ ସମକାଳୀନ ସମାଜବାଦୀ ନେତା ଜର୍ଜ ଫର୍ଣ୍ଣାଣ୍ଡିସ୍, ଚନ୍ଦ୍ରଶେଖର ପ୍ରମୁଖଙ୍କ ଭଳି ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରିଥିଲେ। ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ସଂପୂର୍ଣ୍ଣ କ୍ରାନ୍ତିକୁ ସେ ସମର୍ଥନ କରି ଦେଶରେ ପ୍ରଥମ ଥର ପାଇଁ ଅଣକଂଗ୍ରେସ ସରକାର ଗଠନରେ 'ଜନତାଦଳ'ର ଅନ୍ୟତମ ପ୍ରତିଷ୍ଠାତା ହୋଇଥିଲେ। ବିଜୁ ପଟ୍ଟନାୟକ, ଚରଣ ସିଂହ, ମୋରାରଜୀ ଦେଶାଇ ପ୍ରମୁଖ ରାଜନେତା ତଥା ବରିଷ୍ଠ ଜାତୀୟ ସ୍ତରର ବହୁ ବିଖ୍ୟାତ ଚିନ୍ତାନାୟକଙ୍କ ସହିତ ତାଙ୍କର ସଂପର୍କ ଥିଲା। ସେ ସଂସଦ ଭାବରେ ଲୋକସଭାରେ ପ୍ରବେଶ କରି ନିଜର ପାର୍ଲିଆମେଣ୍ଟାରୀ ଜ୍ଞାନବତ୍ତା ଓ ଅଭିଜ୍ଞତାରେ ଅନ୍ୟ ସାଂସଦମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ। ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳରେ ସେ ସ୍ୱାସ୍ଥ୍ୟମନ୍ତ୍ରୀ ହୋଇ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ଯୁଗାନ୍ତକାରୀ ପଦକ୍ଷେପ ନେଇଥିଲେ; ବିଦେଶୀ ରାଷ୍ଟ୍ର ଗସ୍ତକରି ସହାୟତା ଆଣିଥିଲେ। ପରବର୍ତ୍ତୀକାଳରେ ଲୋକସଭାର ବାଚସ୍ପତି ଭାବରେ 'ଦଳବଦଳ ନିରୋଧ ଆଇନ'କୁ କାର୍ଯ୍ୟକାରୀ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରି ଜାତୀୟ ରାଜନୀତିରେ ଏକ ବିସ୍ମୟକର ବ୍ୟକ୍ତିର ସମ୍ମାନ ଲାଭ କରିଥିଲେ। ଲୋକସଭା ବାଚସ୍ପତି ଭାବେ ସେ ଏକ ଦୀର୍ଘ ରୁଲିଂ ଦେଇଥିଲେ ଯାହା ଇତିହାସ ସୃଷ୍ଟି କରିଥିଲା।

ଆଜି ଜୀବନର ଅପରାହ୍ନରେ ରବି ରାୟ ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ସହରର ପୂର୍ବାଞ୍ଚଳସ୍ଥ କଲ୍ୟାଣୀ ନଗରରେ ଅବସ୍ଥାନ କରୁଛନ୍ତି। ତାଙ୍କର ଆଉ ଦଳୀୟ ରାଜନୀତି ସହିତ ସମ୍ପର୍କ ନାହିଁ। 'ଲୋକଶକ୍ତି ଅଭିଯାନ' ନାମକ ଏକ ଗଣ ଆନ୍ଦୋଳନ ଚଳାଇବାକୁ ସେ କେତେକ ଯୁବକ ତଥା ବୁଦ୍ଧିଜୀବୀଙ୍କୁ ପ୍ରୋତ୍ସାହିତ କରିଛନ୍ତି। ସେଥିମଧ୍ୟରେ ପ୍ରଫୁଲ୍ଲ ସାମନ୍ତରାଙ୍କ ଭଳି ସୁଦକ୍ଷ ସଂଗଠକଙ୍କ ନାମ ଉଚ୍ଚାରିତ ହୋଇଥାଏ। ରବି ରାୟ ଏକ ନିରବଚ୍ଛିନ୍ନ କ୍ରାନ୍ତିର ପ୍ରବାହ ଭଳି ଅନୁଭୂତି ହୁଅନ୍ତି। ସେ ସ୍ୱାସ୍ଥ୍ୟମନ୍ତ୍ରୀ ଥିଲାବେଳେ ମୁଁ ତାଙ୍କୁ ମୋର ପତ୍ନୀଙ୍କ ହୃଦ୍‌ରୋଗର ଚିକିତ୍ସା ପାଇଁ ପ୍ରଧାନମନ୍ତ୍ରୀଙ୍କ ପାଣ୍ଠିରୁ ସହାୟତା ପାଇଁ ଚିଠି ଲେଖିଥିଲି। ସେ ତାହା ସୁପାରିଶ କରିଥିଲେ। କିନ୍ତୁ ତାହା ତାଙ୍କଦ୍ୱାରା ଅନୁମୋଦିତ ହୋଇଥିଲେ ମଧ୍ୟ ମୋତେ ସେ ସହାୟତା ମିଳି ନଥିଲା ଅଥଚ କୋଡ଼ିଏ ହଜାର ଟଙ୍କାର ସାଙ୍କ୍‌ସନ୍ ଚିଠି ଆସିଥିଲା ତାହା ପୁଣି ପୂର୍ବତନ ସୁପ୍ରିମ୍‌କୋର୍ଟର ମୁଖ୍ୟ

ବିଗ୍ରରପତି ତଥା ଜାତୀୟ ମାନବାଧିକାର କମିଶନ ନ୍ୟାୟମୂର୍ତ୍ତି ସ୍ୱର୍ଗତ ରଙ୍ଗନାଥ ମିଶ୍ରଙ୍କ ଦ୍ୱାରା ମଧ୍ୟ ଅନୁମୋଦିତ ହୋଇଥିଲା। ତାହା କିନ୍ତୁ ରିଲିଜ୍ କରାଗଲା ନାହିଁ। ସେ ମୋତେ ଦୁଇଖଣ୍ଡି ପୋଷ୍ଟକାର୍ଡ୍ ଯୋଗେ ସରକାରୀ ସଂସ୍କୃତିର ସ୍ୱରୂପ ଯେ କେତେ କୁହେଳିକାପୂର୍ଣ୍ଣ ତାହା ସ୍ପଷ୍ଟ ଅବଗତ କରାଇଥିଲେ।

ରବି ରାୟ ମୋଠାରୁ ବୟସରେ ଢେର ବଡ଼ – ପ୍ରାୟ ଦଶବର୍ଷ ବ୍ୟବଧାନରେ। ସେ ପ୍ରତ୍ୟକ୍ଷ ସଂଗ୍ରାମୀ; କିନ୍ତୁ ମୁଁ ପରୋକ୍ଷ ସଂଗ୍ରାମୀ। ତାଙ୍କର ବାକ୍ୟ ହେଉଛି ଖୁବ୍ ଶାଣିତ ଓ ମର୍ମସ୍ପର୍ଶୀ। ଆଦର୍ଶ ଓ ସିଦ୍ଧାନ୍ତ ଦୃଷ୍ଟିରୁ ସେ କେବେ ବି ସାଲିସ୍ କରିନାହାନ୍ତି। ତାଙ୍କର ସମକାଳୀନ ନେତାମାନେ ଏବେ ନିଷ୍ପ୍ରଭ ଓ ନିଷ୍କ୍ରାନ୍ତ ହୋଇଗଲେଣି। ସେ ବିଶ୍ୱାସ ରଖୁଥିବା ସମାଜବାଦୀ ଚିନ୍ତା ଏବେ କ୍ଷମତାର ଅନ୍ଧଗଳିରେ ଦିଶାହରା ହେଲାଣି। ଲୋକଙ୍କର ସ୍ୱରକୁ ସୌଦାଗରୀ କିସ୍ତିମାତ୍ ଦ୍ୱାରା ଚପି ଦିଆଯାଉଛି। ରାଜନୀତିର ସତରଞ୍ଜ ଖେଳରେ ଏସବୁ ଘଟିବା ସ୍ୱାଭାବିକ। ରବି ରାୟ କିନ୍ତୁ ସେଥିରେ ଗୋଟି ଚଳାଇ ନାହାନ୍ତି। ତାଙ୍କୁ କ୍ଷମତା ସ୍ୱତଃଅର୍ପିତ ହୋଇଥିଲା। ସେ କ୍ଷମତା ପଛରେ ଗୋଡ଼ାଇ ନାହାନ୍ତି କି କାହାର ସ୍ତାବକତା କରିବା ତାଙ୍କ ଜାତକରେ ନାହିଁ। ନିର୍ଭୀକ, ନିର୍ଲିପ୍ତ ଓ ଜନସ୍ୱାର୍ଥ ସମ୍ବଳିତ ପ୍ରସଙ୍ଗରେ ସେ ଦୃଢ଼ତାର ସହିତ ତାଙ୍କର ମତ ରଖୁଥିଲେ। ଓଡ଼ିଆ ଜାତିର ସ୍ୱାଭିମାନ ଓ ସ୍ୱାଧିକାର ପାଇଁ ସେ ଓଡ଼ିଆ ଭାଷାର ସାର୍ବଜନୀନ ବ୍ୟବହାର ପାଇଁ ଆନ୍ଦୋଳନ କରିଛନ୍ତି। ତାଙ୍କ ଜୀବନ ହେଉଛି ଏକ ଖୋଲାବହି। ପୁରୀ ଜିଲ୍ଲା ଭଅଁରାଗଡ଼ ଗ୍ରାମରେ ଏକ ସଂଭ୍ରାନ୍ତ ଖଣ୍ଡାୟତ ପରିବାରରେ ଜନ୍ମହୋଇ ସେ ସାରା ଓଡ଼ିଶାର ରାଜନୀତିରେ ଗୋଟାଏ ବିରାଟ ବ୍ୟତିକ୍ରମ ଭଳି ମନେହୁଅନ୍ତି। ଦିଲ୍ଲୀର ଲୋକସଭା ଥିଲା ତାଙ୍କପାଇଁ ଗୋଟାଏ ବିରାଟ ସୁଯୋଗ। ଜାତୀୟ ରାଜନେତାର ସମ୍ମାନ ସେ ଲାଭ କରି ମଧ୍ୟ ଓଡ଼ିଶାରେ ହିଁ ତାଙ୍କର ଅସ୍ତୋନ୍ମୁଖ ଅନ୍ୱେଷାର ଆକାଶକୁ ଚାହିଁ ତଥାପି ସୂର୍ଯ୍ୟର ଉଦୟରାଗକୁ ମନେପକାଉଛନ୍ତି। ସେ ଶତାୟୁ ହୁଅନ୍ତୁ ଏବଂ ଆମ ଗହଣରେ ଗୋଟିଏ ଦମ୍ଭିଲା ମଣିଷର ଖମ୍ବ ହୋଇ ଆମ ପାଇଁ ଆତ୍ମବିଶ୍ୱାସର ଭରସା ହୁଅନ୍ତୁ।

■■■

# ଦିଲ୍ଲୀ ଯାହାଙ୍କୁ ବଦଳାଇ ପାରିଲା ନାହିଁ

ପ୍ରଫେସର ରାଜକୁମାର ଜୈନ

୧୯୬୭ ମସିହାର ଏକ ଶୀତ ସଂଧ୍ୟା। ଦିଲ୍ଲୀ କନ୍ନାଟ ପ୍ଲେସର୍ ମଝିରେ ଚାଲୁଥିବା କଫି ହାଉସ୍। ଲୋହିଆଙ୍କ ପ୍ରିୟ କଫିହାଉସ୍। ତା'ର ଛାତ ହେଲା ତମ୍ବୁ। ତା ଭିତରେ ଦୁଇଟି ଟେବୁଲ୍‌କୁ ଯୋଡ଼ି ତା' ପାଖକୁ ଚୌକୀ ଟାଣି ଆଣି ସେଥିରେ ବିରାଜମାନ ଆଠ-ଦଶ ଜଣ ନିୟମିତ ସମାଜବାଦୀ ଗରାଖ। ତମ୍ବୁର ବାଉଁଶରେ ଲଟକି ଥିବା ବିଜୁଳି ବଲ୍‌ବର ସୀମିତ ପ୍ରକାଶରେ ଆଲୋକିତ ହୋଇଛି ସ୍ଥାନଟି। ମୁଁ ବି ଜଣେ ନିୟମିତ ଗରାଖ କଫି ହାଉସର। ପହଞ୍ଚି ଦେଖିଲି ଜଣେ ବ୍ୟକ୍ତି କାନ, ମୁଣ୍ଡ, ଗଳା, ବେକ ସବୁଥିରେ ଭଲକରି ମଫଲର ଗୁଡ଼ାଇଛି କିଛି କହୁଛି ଯାହାକୁ କ୍ୱଚିତ୍ ନୀରବ ରହିପାରୁଥିବା ସମାଜବାଦୀ ସାଥୀ ମନ ଧ୍ୟାନ ଦେଇ ଶୁଣୁଛନ୍ତି।

ମୁଁ ଭାବିଲି ଦିଲ୍ଲୀ ବାହାରୁ କେହି ମଫସଲିଆ ସମାଜବାଦୀ ଆସିଛି କାରଣ ଯେତେ ଥଣ୍ଡା ହେଲେ ବି ମୁଣ୍ଡ କାନ ଗଳାକୁ ଆଚ୍ଛାଦିତ କରି କେହି ଦିଲ୍ଲୀବାଲା ଗାଉଁଲୀ ଭଳି ଦେଖାଯିବା ପସନ୍ଦ କରିବ ନାହିଁ। ଚୌକିରେ ବସିଲାପରେ ପଚାରି ବୁଝିଲି ଯେ ବ୍ୟକ୍ତିଜଣକ ଓଡ଼ିଶାର ସାଂସଦ ରବିରାୟ ଯିଏ ଲୋକସଭାରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ନେତା। ସେ ଓଡ଼ିଆଭାଷୀ ହୋଇ ମଧ୍ୟ ସହଜ ଓ ସାବଲୀଳ ଭାବେ ଅନର୍ଗଳ ହିନ୍ଦୀରେ କହି ଚାଲିଥିଲେ।

୧୯୬୭ର ସେ ପ୍ରଥମ ପରିଚୟ। ୩୮-୩୯ ବର୍ଷ ଭିତରେ ସେଇ ରବିରାୟଙ୍କୁ ଦଳର ସଂଗଠନ, ସାଂସଦ, କେନ୍ଦ୍ରମନ୍ତ୍ରୀ ଓ ଲୋକସଭା ବାଚସ୍ପତି ଆଦି କ୍ଷମତାର ବହୁ ଆସନରେ ଆସୀନ ହେବାର ମୁଁ ଦେଖିଛି। କିନ୍ତୁ ଆଜି ମୁଁ ଅନୁଭବ କରୁଛି ୧୯୬୭ରେ ଯେଉଁ ଶିକ୍ଷିତ ଗାଉଁଲି ସାଂସଦଙ୍କୁ ମୁଁ ଦେଖିଥିଲି ସେ କ୍ଷମତାର କେନ୍ଦ୍ରରେ ରହି ଆହୁରି ସରଳ ଓ ସିଧାସାଦା ହୋଇ ଯାଇଛନ୍ତି।

ଆଜିର ରାଜନୀତିର ବିଡ଼ମ୍ବନା ଯେ ରାଜନୀତିକୁ ଆସିବା ପୂର୍ବରୁ ଯାହାର ବାଡ଼ିଗୋବରେ ଗୋଟେ ଜମି ନଥିଲା ସେ ଯେମିତି ଲାଭପ୍ରଦ ପଦରେ ପହଞ୍ଚି ଯାଉଛି ସାତପୁରୁଷ ପାଇଁ ଅତି ନିର୍ଲ୍ଲଜ ଭାବେ ସଂପତ୍ତି ଠୁଳ କରୁଛି। ରବିରାୟ ହିଁ ବିରଳ ବ୍ୟତିକ୍ରମ।

ଦିଲ୍ଲୀରେ ରବିରାୟଙ୍କ ସରକାରୀ ବାସଭବନ ସବୁବେଳେ ପାନ୍ଥଶାଳା। ମୁଁ ଏ ପ୍ରସଙ୍ଗ ଏଇଥିପାଇଁ ଉଠାଇଲି ଯେ ସୁଯୋଗ ନ ପାଇଲେ ତ ସମସ୍ତେ ସତୀ। ଯିଏ ସୁଯୋଗ ପାଇ ମଧ୍ୟ ନିଜର ସଚ୍ଚରିତ୍ର ଅକ୍ଷୁଣ୍ଣ ରଖେ ସେ ହିଁ ପ୍ରକୃତ ଚରିତ୍ରବାନ୍। ଭୁବନେଶ୍ୱରସ୍ଥ ଲୋହିଆ ଏକାଡ଼େମୀ ତାଙ୍କର ସ୍ୱପ୍ନର ମହଲ। ସେଇ ସାର୍ବଜନୀନ ସଂପତ୍ତି ହିଁ ତାଙ୍କର ଏକମାତ୍ର ସଂପତ୍ତି। କ୍ଷମତାର ନିଶା ଏକ ଜବରଦସ୍ତ ନିଶା ଯାହା ବହୁ ରାଜନେତାଙ୍କୁ ଘାରିଛି ହେଲେ ରବିରାୟଙ୍କୁ ପ୍ରଭାବିତ କରିପାରି ନାହିଁ।

ଲୋକସଭା ବାଚସ୍ପତି ଥିବାବେଳେ ତାଙ୍କୁ ବ୍ୟକ୍ତିଗତ ସୁରକ୍ଷା ଗାର୍ଡ଼ ମିଳିଥିଲା। ସେ ଦିନେ ମାଧୁଲିମାଏଙ୍କୁ (୰ ମଧୁଲିମାଏ ଜଣେ ବିଶିଷ୍ଟ ସମାଜବାଦୀ ସାଂସଦ ଓ ନେତା) ଭେଟିବାକୁ ତାଙ୍କ ପାଣ୍ଡରାରୋଡ଼ସ୍ଥିତ ବାସଭବନକୁ ଯାଇଥିଲେ। ମଧୁଜୀ ସୁରକ୍ଷା ଗାର୍ଡ଼କୁ ରବିରାୟଙ୍କ ସହ ଦେଖି ପଚାରିଲେ, ରବି ଏ ସବୁ ତୁମର କ'ଣ ଦରକାର ତୁମେ ପୁଣି କାହାଠୁ ବିପଦ ଆଶା କରୁଛ! ଏହି କଥା ପଦେରେ ରବିରାୟ ତତ୍‌କ୍ଷଣାତ୍ ସୁରକ୍ଷା ଗାର୍ଡ଼ ଫେରାଇ ଦେଲେ।

ସମାଜବାଦୀ ବିଚାର ଓ କାର୍ଯ୍ୟକ୍ରମରେ ଲାଗି ରହିଥିବା କର୍ମୀଙ୍କୁ ସାହାଯ୍ୟ କରିବାରେ ରବିରାୟ ସଦାତତ୍ପର। ମଧୁଜୀ ଓ ରବିରାୟଙ୍କ ମିଳିତ ଉଦ୍ୟମ ଯୋଗୁ ଜନତା ପାର୍ଟି ସମୟରେ ଓ ପରେ ଦଳର ସଂଗଠନ ଓ ବିଧାନ ସଭାମାନଙ୍କରେ ବହୁ ନିଷ୍ଠାପର ସମାଜବାଦୀ ପଦ ଲାଭ କରିପାରିଲେ। ରବିରାୟ ରାଜନୀତିରେ ନିର୍ଜନ ସ୍ଥାନରେ ରହିବାକୁ ପଡ଼ିଲେ ମଧ୍ୟ ଏକୁଟିଆ ହୋଇଗଲେ ମଧ୍ୟ ସମାଜବାଦୀ ବିଚାର ଧାରାକୁ ଛାଡ଼ିବା ଲୋକ ନୁହଁନ୍ତି। ତାଙ୍କର ସାଧୁତା ପାଇଁ ପତ୍ନୀ ପ୍ରଫେସର ସରସ୍ୱତୀ ସ୍ୱାଇଁଙ୍କ ଅବଦାନ ମଧ୍ୟ କିଛି କମ୍ ନୁହେଁ। ରବିରାୟ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଥିଲାବେଳେ ପତ୍ନୀ ଓଡ଼ିଶାରୁ ଦିଲ୍ଲୀ ଆସିଲେ। ସରକାରୀ ଗାଡ଼ି ଗଲା ଷ୍ଟେସନରୁ ତାଙ୍କୁ ଆଣିବା ପାଇଁ ସେ ଗାଡ଼ି ଫେରାଇ ଦେଲେ, କହିଲେ, "ନିଜ କାମରେ ଆସିଛି, ସରକାରୀ ଗାଡ଼ି ବ୍ୟବହାର କରିବି ନାହିଁ।"

ରବିରାୟ ଚାହିଁଥିଲେ କ୍ଷମତା ସୁଖ ପାଇଁ ବେଶ୍ ସାଧନ ଓ ସଂପତ୍ତି ଜୁଟାଇ ପାରିଥାନ୍ତେ। ହେଲେ ନିରାଶାଜନକ ସ୍ଥିତିରେ ବି ସେ ନିଜ ଆଦର୍ଶ ବିରୁଦ୍ଧରେ ସାଲିସ୍ କଲେ ନାହିଁ। ଏବେ ବି ଲୋକଶକ୍ତି ଅଭିଯାନ ମାଧ୍ୟମରେ ସେ ଦେଶପାଇଁ ଶକ୍ତି ଖଟାଇଛନ୍ତି ଓ ତାଙ୍କର ଏହି ସରଳତା, ପବିତ୍ରତା ଓ ନୀତିନିଷ୍ଠତା ଯୋଗୁଁ ପ୍ରଫେସର ଆନନ୍ଦ କୁମାରଙ୍କ ଭଳି ଶହ ଶହ ସଂଗଠନକୁ ସେ ଏକେଲା ଚାଲୁ ଅଭିଯାନରେ ଆଣି ପାରିଛନ୍ତି।

▮▮▮

(ସଂଗୃହୀତ ଲେଖା)

# ରବିବାବୁ ଏକ ବିରଳ ବ୍ୟକ୍ତିତ୍ୱ

**ଶ୍ରୀ ଶାନ୍ତନୁ କୁମାର ପ୍ରଧାନ**

ଦିଲ୍ଲୀରେ ଏକ ଶୀତୁଆ ସକାଳେ ଚଉକିରେ ବସି ଚିଠି ପଢୁଥାନ୍ତି ରବିବାବୁ। ହାତରେ ଥାଏ ଚା'କପ। ହଠାତ୍ କାହିଁକି ସେ ଚୁପ୍ ହୋଇଗଲେ, କିଛି ସମୟ ବସି ରହିଲେ। ଚା'କପର ଚା' ସରିଲା ନାହିଁ। ମୁଁ ପାଖକୁ ଯାଇ ପଚାରିଲି ସ୍ୱାସ୍ଥ୍ୟ ଠିକ୍ ଅଛି। ସେ ଉତ୍ତର ଦେଲେ ଦେହ ଠିକ୍ ଅଛି ମନ ଠିକ୍ ଲାଗୁ ନାହିଁ। ମୁଁ ବ୍ୟସ୍ତ ହୋଇଗଲି। ଏତେ ସକାଳୁ ଏ କ'ଣ ହେଲା। ସେ କହିଲେ କଟକ ଜିଲ୍ଲା କେନ୍ଦ୍ରାପଡ଼ାର ରାଜକନିକା ଅଞ୍ଚଳର ଜଣେ ଚିଠି ଲେଖିଛି। ଏ ଚିଠି ପଢ଼ି ସେ ମର୍ମାହତ। ମୁଁ ପଚାରିଲି କିଛି ଖରାପ ସମ୍ବାଦ ଅଛି କି ? ସେ ଆପଣଙ୍କ ସାଙ୍ଗ ଅତି ଅନ୍ତରଙ୍ଗ। ସେ ପୁଣି କହିଲେ ନାଁଇ ଶାନ୍ତନୁ ତା' ରୋଜଗାର ବୁଡ଼ିଯାଇଛି। ମୁଁ ଭାବିଲି ରୋଜଗାର ଆସେ ଯାଏ ମଧ। ଦିଲ୍ଲୀରେ ବସି ରବି ରାୟଙ୍କ ଭଳି ରାଜନେତା ଏତେ ବ୍ୟସ୍ତ କାହିଁକି ? ମୁଁ ତାଙ୍କ ଆଡ଼କୁ ଅନାଇ ରହିଲି। ସେ ମୋ ମନକଥା ବୁଝିପାରି ପାଖକୁ ଡାକିଲେ, କହିଲେ ଚିଠି ଲେଖିଥିବା ବ୍ୟକ୍ତିଜଣକ ପୋଷ୍ଟକାର୍ଡରେ ଜଣାଇଛନ୍ତି ଯେ ସେ ଗୋଟିଏ ଗାଈ ରଖି ଦୁଗ୍ଧ ବିକ୍ରି କରି ଜୀବିକା ନିର୍ବାହ କରୁଥିଲା। କୌଣସି କାରଣରୁ ଗାଈଟି ମରିଯିବା ପରେ ତା'ର ଦୁନିଆ ଏକ ପ୍ରକାର ଉଜୁଡ଼ିଯାଇଛି। ଆଉ ଗୋଟିଏ ଗାଈ କିଣିବା ପାଇଁ ସାମର୍ଥ୍ୟ ନାହିଁ। ସରକାରୀ କାର୍ଯ୍ୟାଳୟରେ ଓ ରାଜନେତାଙ୍କ ପାଖକୁ ଦୌଡ଼ି ଦୌଡ଼ି ନୟାନ୍ତ ହେଲାଣି କହି ଦୀର୍ଘନିଃଶ୍ୱାସ ନେଲେ। ମୁଁ ପୁଣି କହିଲି ଆମେ କ'ଣ କରିପାରିବା ? ସେ କହିଲେ ନିଶ୍ଚିତ ଭାବେ କିଛି କରିବାକୁ ପଡ଼ିବ, ତୁ ଯା ପୋଷ୍ଟ ଅଫିସରୁ ଗୋଟେ ମନିଅର୍ଡର ଫର୍ମ ଆଣ। ଦଶଟା ବାଜିଲାବେଳକୁ ମୁଁ ପୋଷ୍ଟ ଅଫିସ ବାହାରିଲି। ଦେଢ଼ଘଣ୍ଟା ପରେ ଘରକୁ ଫେରିବାବେଳକୁ ଦେଖିଲି ଖୋଦ୍ ରବିରାୟ ମୋତେ ଅପେକ୍ଷା କରି ବସିଛନ୍ତି। ପଚାରିଲେ ମନିଅର୍ଡର ଫର୍ମ ଆଣିଛୁ। ମୁଁ ହଁ ଭରିଲି ତାଙ୍କ ହାତକୁ ଫର୍ମ ବଢ଼ାଇଦେଲି। ସଙ୍ଗେ ସଙ୍ଗେ ଫର୍ମରେ ଲେଖିବାକୁ ଆରମ୍ଭ କଲେ। ପକେଟରୁ ଅଢ଼େଇ ହଜାର ଟଙ୍କା ବାହାର କରି ମୋତେ କହିଲେ ଶୀଘ୍ର ଏ ଟଙ୍କାକୁ ମନିଅର୍ଡର କରିଦେ। ବାଟରେ ଫର୍ମ ନେଲାବେଳେ ମୁଁ ଦେଖିଲି ଯେ ସେଥିରେ ଲେଖାଅଛି "ମୁଁ ତୁମକୁ ଯତ୍କିଞ୍ଚିତ୍ ସାହାଯ୍ୟ

କରୁଛି। ଗାଈଟିଏ କିଣିଦେବ। ଗାଈ କିଣିବା ପରେ ନିଶ୍ଚିନ୍ତ ଭାବେ ଚିଠି ଲେଖି ଜଣାଇବ।" ଘଟଣାର ପ୍ରାୟ ପନ୍ଦର କୋଡ଼ିଏ ଦିନ ପରେ ରାଜକନିକାରୁ ଏକ ପୋଷ୍ଟକାର୍ଡ ଆସିଥିଲା। ସେଥିରେ ଯାହା ଲେଖା ଥିଲା ମୋ ଆନନ୍ଦର ସୀମା ରହିଲା ନାହିଁ। ଲେଖାଥିଲା ଯେ ଓଡ଼ିଶାରେ ବିଭିନ୍ନ ବ୍ୟକ୍ତିବିଶେଷଙ୍କ ପାଖକୁ ଦୀର୍ଘଦିନ ଧରି ଦୌଡୁଥିଲି। ମୋତେ କେହି ସାହାଯ୍ୟ କରି ନଥିଲେ। ଆପଣ ଗୋଟିଏ ପୋଷ୍ଟକାର୍ଡ ପ୍ରତିବଦଳରେ ମନିଅର୍ଡର ମୋ ପରିବାରକୁ ବଞ୍ଚାଇଦେଲେ। ବାସ୍ତବରେ ଦୟାଳୁ ସ୍ୱଭାବନାର ରବିରାୟ ଜଣେ ବିରଳ ବ୍ୟକ୍ତିତ୍ୱ ଥିଲେ।

ନବେ ଦଶକର ପ୍ରାରମ୍ଭରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଏକ ରାତ୍ରିଭୋଜନର ଆୟୋଜନ କରିଥିଲେ। ଲୋକସଭା ବାଚସ୍ପତି ରବିରାୟ ବିଶେଷଭାବେ ଆମନ୍ତ୍ରିତ ହୋଇଥିଲେ। ସେତେବେଳେ ଘରେ ଆମେ ପ୍ରାୟ ପନ୍ଦର ଜଣ ଥିଲୁ। ହଠାତ୍ ଫୋନ୍‌ର ଘଣ୍ଟି ବାଜିଲା। ଫୋନ୍‌ର ଅନ୍ୟପଟରେ ରବିରାୟ କହୁଥାନ୍ତି ପ୍ରଧାନମନ୍ତ୍ରୀଙ୍କ ପାର୍ଟି ଖୁବ୍ ଭଲ ହୋଇଛି। ଖାଦ୍ୟପେୟର ବ୍ୟବସ୍ଥା ବହୁତ ଭଲ। ଫୋନ୍ ପରେ ଆମେମାନେ ଘରେ ରନ୍ଧାଯାଇଥିବା ଖାଦ୍ୟ ଖାଇ ହାଣ୍ଡିକଡ଼େଇ ମାଜି ସଫା କରିଦେଲୁ। ରାତି ୧୨ଟାରେ ରବି ରାୟ ଘରେ ପହଞ୍ଚି କହିଲେ ମୋ ପାଇଁ ଖାଇବା ବାଢ଼। ଘରେ ଉପସ୍ଥିତ ଆମେ ସମସ୍ତେ ବିଚଳିତ ହୋଇଗଲୁ। ପ୍ରଧାନମନ୍ତ୍ରୀଙ୍କ ରାତ୍ରିଭୋଜନରୁ ଖାଲିପେଟରେ ଖୋଦ୍ ରବିରାୟ ଫେରିଛନ୍ତି। ଆମକୁ ଆଶ୍ଚର୍ଯ୍ୟ ଲାଗିଲା। ସେ ଠିକ୍ ବୁଝିପାରିଲେ କହିଲେ ଘରେ ଭାତ ଡାଲମାର ମଜା ପ୍ରଧାନମନ୍ତ୍ରୀଙ୍କ ରାତ୍ରିଭୋଜନର ନାହିଁ। ମୁଁ ସଙ୍ଗେ ସଙ୍ଗେ ପାଉଁରୁଟି ଓ କ୍ଷୀର ଗରମ କରି ଖାଇବାକୁ ଦେଲି। ପ୍ରଧାନମନ୍ତ୍ରୀଙ୍କ ରାତ୍ରିଭୋଜନ ପ୍ରତିବଦଳରେ ଘରେ କ୍ଷୀର ପାଉଁରୁଟି ଖାଇ ସେ ଖୁବ୍ ଖୁସି ଥିବାର ଦେଖିବାକୁ ମିଳିଥିଲା। ପରେ ମୁଁ ଭାବିଲି ଦେଶରେ ରବିରାୟଙ୍କ ଭଳି ଲୋହିଆବାଦୀ ହିଁ ପ୍ରଧାନମନ୍ତ୍ରୀ ରାତ୍ରିଭୋଜନକୁ ତୁଚ୍ଛ ମଣିପାରନ୍ତି।

ଦିଲ୍ଲୀରେ ଓଡ଼ିଆଙ୍କୁ ପାଖରେ ଦେଖିଲେ ଖୁସିରେ ଫାଟିପଡ଼ନ୍ତି ରବିବାବୁ। ଦିଲ୍ଲୀରେ କୌଣସି ଓଡ଼ିଆ ସାଂସଦଙ୍କ ଘରେ ଏତେସଂଖ୍ୟକ ଓଡ଼ିଆ ମାଗଣାରେ ରହିବା, ଖାଇବା ଓ ରୋଗୀସେବା ପାଇବାର ନଜିର ନାହିଁ। ଘରେ ସବୁବେଳେ ୧୨-୨୫ ଜଣ ଓଡ଼ିଆଙ୍କୁ ଦେଖିବାକୁ ମିଳୁଥିଲା। ସମସ୍ତଙ୍କ ପାଇଁ ଚାରିଥର ଚ୍ଚ' କ୍ଷୀର ପାଉଁରୁଟି ଓ ଡାଲମାଭାତର ବ୍ୟବସ୍ଥା ଥିଲା। ତାଙ୍କ ପାଖକୁ ଆସିବାପାଇଁ ଚିହ୍ନା ପରିଚିତ ଅଥବା ସୁପାରିଶର ଆବଶ୍ୟକତା ନଥିଲା। ଆମକୁ ତାଗିଦ ଥିଲା ମୋ ରାଜ୍ୟରୁ ଆସୁଥିବା ଲୋକ ଯେପରି କେହି କେବେ ଖାଲିପେଟ ରହିବେ ନାହିଁ। ଡାକ୍ତରଖାନା ସେବା ଥିଲେ ସାଙ୍ଗରେ ନେଇ ଡାକ୍ତର ଦେଖାଇବ।

ସରକାରୀ ଅଧିକାରୀଙ୍କୁ ଓଡ଼ିଆ ଲୋକଙ୍କ କାମପାଇଁ ଫୋନ୍‌ରେ ସେ ନିଜେ ଅନୁରୋଧ କରୁଥିଲେ। ରାତି ରାତି ବସି ରହି ବିଭିନ୍ନ ମନ୍ତ୍ରଣାଳୟ ଓ ମନ୍ତ୍ରୀଙ୍କୁ ଚିଠି ଲେଖୁଥିଲେ। ଯେ କେହି ଘରକୁ କୌଣସି କାମରେ ଆସନ୍ତି ସେ ହସହସ ମୁଖରେ ସ୍ୱାଗତ କରୁଥିଲେ। କିଏ ତାଙ୍କ ଦ୍ୱାରସ୍ଥ ହୋଇଛି ଓ ରବି ବାବୁଙ୍କଠାରୁ ସାହାଯ୍ୟ ପାଇ ନାହିଁ ଏପରି ଉଦାହରଣ ମୁଁ ଅଦ୍ୟାବଧି ଦେଖି ନାହିଁ।

ଆଜିକାଲି ନୂଆଦିଲ୍ଲୀ ଅଞ୍ଚଳରେ ସାଂସଦଙ୍କ ଘର ଆଗରେ ଚିଠିର ଗଦା ଦେଖିବାକୁ ମିଳୁଛି। ଚିଠି ଖୋଲି ପଢ଼ିବା ପାଇଁ କାହା ପାଖରେ ସମୟ ନାହିଁ। ପ୍ରତିଦିନ ସକାଳେ ସେ ନିଜେ ପ୍ରତ୍ୟେକ ଚିଠିକୁ ତନ୍ନତନ୍ନ କରି ପଢ଼ନ୍ତି। ପରେ ଆରମ୍ଭ ହୁଏ ପୋଷ୍ଟକାର୍ଡରେ ପ୍ରତିଉତ୍ତର ଲେଖାପର୍ବ। ମୁଁ ପ୍ରତିଦିନ ପ୍ରାୟ ପଚାଶଟି ଚିଠି ଡାକଘରେ ପହଞ୍ଚାଏ। ଜୀବନର ଏହି ଅଭୁଲା ସ୍ମୃତିଗୁଡ଼ିକ ମନେପଡ଼ିଲେ ଲାଗୁଛି ଆଜିର ସାଂସଦ ତାଙ୍କଠାରୁ ଏତେ ଭିନ୍ନ କାହିଁକି। ଜନସେବା ନାଁରେ ନିୟମିତ ପ୍ରତାରଣା କାହିଁକି। ରବି ରାୟଙ୍କ ଜୀବନରୁ ଯଦି ଏମାନେ କିଛି ଶିଖି ଜନସେବାରେ ନିଜକୁ ଲଗାଇ ପାରିବେ ଏ ଦେଶରେ ନିଶ୍ଚିତ ଭାବେ ରାମରାଜ୍ୟ ଫେରିଆସିବ।

■■■

# ଆମର ଗର୍ବ

ଡ. ସତ୍ୟ ରାୟ

ରବି ରାୟ – ସମଗ୍ର ଓଡ଼ିଆ ଜାତିର ଗର୍ବ ଓ ଗୌରବ। କେବଳ ଜଣେ ସାଧୁ, ସଚ୍ଚୋଟ, ନିର୍ଭୀକ ଓ ନିରହଙ୍କାରୀ ସମାଜବାଦୀ ରାଜନେତା ରୂପେ ନୁହଁନ୍ତି, ଜଣେ ନିଃସ୍ୱାର୍ଥପର ସମାଜସେବୀ ଓ ଦରଦୀ ହୃଦୟର ମଣିଷ ରୂପେ ମଧ୍ୟ ସେ ସମଗ୍ର ଦେଶରେ ସୁପରିଚିତ। ଜାତୀୟ ସ୍ତରରେ ଓଡ଼ିଆ ଜାତିକୁ ପ୍ରତିଷ୍ଠିତ କରାଇବାରେ ଶ୍ରୀ ରାୟଙ୍କ ଭୂମିକା ଅବିସ୍ମରଣୀୟ। ଲୋକସଭାର ବାଚସ୍ପତି ଭଳି ଏକ ଗୁରୁତ୍ୱପୂର୍ଣ୍ଣ ପଦରେ ଅଧିଷ୍ଠିତ ହେବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ। ଜାତିର ଜନକ ମହାତ୍ମା ଗାନ୍ଧୀ, ରାମମନୋହର ଲୋହିଆ, ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ ଭଳି ପୁଣ୍ୟାତ୍ମାଙ୍କ ନୀତି ଓ ଆଦର୍ଶକୁ ପାଥେୟ କରି ଶ୍ରୀ ରାୟ ନିଜର ରାଜନୈତିକ ଜୀବନକୁ ଗଢ଼ିତୋଳିଛନ୍ତି। ନୀତି ଓ ଆଦର୍ଶକୁ ନେଇ ସେ କାହାରି ସହିତ ସାଲିସ କରି ନଥାନ୍ତି। ଅନ୍ୟାୟ, ଅନୀତି ଓ ଭ୍ରଷ୍ଟାଚାର ବିରୋଧରେ ସେ ସାହସର ସହିତ ଲଢ଼ିଛନ୍ତି। ଲୋକସଭାର ବାଚସ୍ପତି ଥିବା ସମୟରେ ସଂସଦର ଅଧିବେଶନଗୁଡ଼ିକୁ ସେ ଯେପରି ନିରପେକ୍ଷ ଭାବେ ପରିଚାଳନା କରୁଥିଲେ ଯାହା ଆଜି ବିରଳ। ବାଚସ୍ପତି ରୂପେ ତାଙ୍କର 'ରୁଲିଂ'ଗୁଡ଼ିକ ଆଜି ବି ଦୃଷ୍ଟାନ୍ତ ହୋଇ ରହିଯାଇଛି। ଜାତୀୟ ସ୍ତରର ତୁଙ୍ଗନେତା ଓ ବରିଷ୍ଠ ସାମ୍ବାଦିକମାନେ ଏବେ ବି ତାଙ୍କୁ ସ୍ମରଣ କରନ୍ତି। କେନ୍ଦ୍ରରେ ସ୍ୱାସ୍ଥ୍ୟ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ଥିଲାବେଳେ ଓଡ଼ିଶାରେ ଅନେକ ଯୋଜନା କାର୍ଯ୍ୟକାରୀ କରାଇବାରେ ସେ ସଫଳ ହୋଇଥିଲେ। ତାଙ୍କର ଉଦ୍ୟମ ଯୋଗୁଁ ଗ୍ରାମାଞ୍ଚଳରେ ଦରିଦ୍ର ଜନସାଧାରଣ ସୁବିଧାରେ ସ୍ୱାସ୍ଥ୍ୟସେବା ଲାଭ କରିପାରି ଥିଲେ। ଏହାକୁ ଓଡ଼ିଆ ଜାତି ଭୁଲିଯିବା ଉଚିତ ହେବ ନାହିଁ।

ଓଡ଼ିଆଙ୍କ ମନରୁ ହୀନମନ୍ୟତା ଓ ଦୁର୍ବଳତା ଦୂର କରି ସେମାନଙ୍କ ମଧ୍ୟରେ ଗଭୀର ଆତ୍ମବିଶ୍ୱାସ, ଅଦମ୍ୟ ସାହସ ଓ ଜାତିପ୍ରେମ ଉଦ୍ରେକ କରିବାରେ ସେ ସର୍ବଦା ଯତ୍ନଶୀଳ ଥିଲେ। ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ତଥା ସମସ୍ତଙ୍କ ପାଇଁ ମଧ୍ୟ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ। ଓଡ଼ିଆ ଭାଷାରେ ସେ ଓଜସ୍ୱିନୀ ଭାଷଣ

ଦେଇପାରନ୍ତି। ତେବେ ଉଭୟ ହିନ୍ଦୀ ଓ ଇଂରାଜୀ ଭାଷାରେ ମଧ୍ୟ ଚମତ୍କାର ଭାବେ ଭାଷଣ ଦେବାରେ ତାଙ୍କର ଦକ୍ଷତା ଥିଲା। ଶ୍ରୀ ରାୟଙ୍କର ଭାଷଣ ଶୁଣିବା ଲାଗି ତାଙ୍କ ସଭାଗୁଡ଼ିକରେ ପ୍ରବଳ ଭିଡ଼ ପରିଲକ୍ଷିତ ହେଉଥିଲା।

ସେ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଥିଲାବେଳେ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ସମ୍ମିଳନୀ କକ୍ଷରେ ଆୟୋଜିତ ଏକ ସମାବେଶରେ ମୁଖ୍ୟ ଅତିଥି ରୂପେ ଯୋଗଦେଇଥିଲେ। ଜଣେ ସାମ୍ବାଦିକ ରୂପେ ଏହି ଲେଖକକୁ ସେଥିରେ ଯୋଗଦେବାର ସୁଯୋଗ ମିଳିଥିଲା। ସଭାରେ ଯୋଗ ଦେଇଥିବା ସମସ୍ତ ନିମନ୍ତ୍ରିତ - ସମ୍ମାନିତ ଅତିଥି ଓ ଚିକିତ୍ସକମାନେ ଇଂରାଜୀରେ ଭାଷଣ ଦେବାପରେ ଶ୍ରୀରାୟଙ୍କର ପାଳି ପଡ଼ିଥିଲା। ସେ ଭାଷଣ ଦେବାପାଇଁ ଛିଡ଼ାହେବା ମାତ୍ରେ ସମବେତ ବହୁସଂଖ୍ୟକ ଛାତ୍ରଛାତ୍ରୀ ଉଚ୍ଚସ୍ୱରରେ ତାଙ୍କୁ ଓଡ଼ିଆରେ କୁହନ୍ତୁ ବୋଲି ଅନୁରୋଧ କରିଥିଲେ। ଶ୍ରୀ ରାୟ ସେମାନଙ୍କୁ ଲକ୍ଷ୍ୟକରି କହିଥିଲେ – "ତୁମେ ସବୁ କ'ଣ ଭାବିଥିଲେ ମୁଁ ଇଂରାଜୀରେ କହିବି ବୋଲି ? ମୁଁ ମାତୃଭାଷା ଓଡ଼ିଆରେ ହିଁ କହିବି"। ଏଥିରେ ଛାତ୍ରଛାତ୍ରୀମାନେ ଉତ୍‌ଫୁଲ୍ଲିତ ହୋଇ କରତାଳି ମାରି ସମ୍ମିଳନୀ କକ୍ଷକୁ ପ୍ରକମ୍ପିତ କରିଦେଇଥିଲେ। ପରିବେଶ ଶାନ୍ତ ହେବାପରେ ଶ୍ରୀ ରାୟ ଓଡ଼ିଆରେ ଚମତ୍କାର ଭାଷଣ ଦେଇଥିଲେ।

ତାଙ୍କ ଭଳି ସ୍ନେହୀ ବ୍ୟକ୍ତି ଖୁବ୍ ବିରଳ। ତାଙ୍କ ସହ ଅନେକ ଉତ୍ସବରେ ଯୋଗଦେବାର ସୁଯୋଗ ଯାଇଛି। ସେ ଅତି ସରଳ ଓ ସାବଲୀଳ ଓଡ଼ିଆ ଭାଷାରେ ଭାଷଣ ଦେଇ ଶ୍ରୋତାମାନଙ୍କୁ ବିମୁଗ୍ଧ କରି ଦେଉଥିଲେ। ଓଡ଼ିଶାର ବିଭିନ୍ନ ସମସ୍ୟା ବିଶେଷକରି ଚାଷୀମାନଙ୍କର ଦୁଃଖଦୁର୍ଦ୍ଦଶା, ଦୁର୍ନୀତି, ଭ୍ରଷ୍ଟାଚାର ଓ ଶୋଷଣ ପ୍ରଭୃତି ପ୍ରସଙ୍ଗରେ ସେ ଖୋଲାଖୋଲି ଭାବେ ନିଜର ମତବ୍ୟକ୍ତ କରୁଥିଲେ। ଦୁର୍ନୀତି ଓ ଶୋଷଣ ମୁକ୍ତ ସମାଜ ଗଠନ ପାଇଁ ଐକ୍ୟବୋଧ ହୋଇ ସଂଗ୍ରାମ କରିବାକୁ ସେ ଆହ୍ୱାନ ଦେଉଥିଲେ।

ଦଳମତ ନିର୍ବିଶେଷରେ ଯେ କୌଣସି ବ୍ୟକ୍ତି ତାଙ୍କୁ ନମସ୍କାର କଲେ ସେ ହସିହସି ତାଙ୍କୁ ପ୍ରତିନମସ୍କାର ଜଣାଇବା ସହି ତାଙ୍କର ଭଲ ମନ୍ଦ ପଚାରି ବୁଝୁଥିଲେ। ତାଙ୍କର ସ୍ମରଣଶକ୍ତି ଅତି ପ୍ରଖର ଥିଲା। ତାଙ୍କ ସହ ସଂପର୍କରେ ଆସୁଥିବା ପ୍ରତ୍ୟେକ ବ୍ୟକ୍ତିଙ୍କର ନାମ ଓ ଘରଦ୍ୱାର କଥା ପଚାରି ମନେ ରଖୁଥିଲେ। 'ସମାଜ'ର ପୂର୍ବତନ ସମ୍ପାଦକ ତଥା ଶତାବ୍ଦୀପୁରୁଷ ପଦ୍ମଭୂଷଣ ଡଃ ରାଧାନାଥ ରଥଙ୍କୁ ସେ ଭକ୍ତି କରୁଥିଲେ। ବାବୁଜୀ ସକ୍ରିୟ ଥିବାବେଳେ ଶ୍ରୀ ରାୟ ଗୋପବନ୍ଧୁ ଭବନରେ ପହଞ୍ଚି ତାଙ୍କ ସ୍ୱର ରାଜ୍ୟ, ଦେଶ

ତଥା ବିଶ୍ୱର ବିଭିନ୍ନ ସମସ୍ୟା ସଂପର୍କରେ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରୁଥିଲେ। ଡଃ ରଥ ମଧ୍ୟ ଶ୍ରୀ ରାୟଙ୍କ ମୂଲ୍ୟବାନ୍ ବକ୍ତବ୍ୟ ଓ ପ୍ରସ୍ତାବକୁ 'ସମାଜ' ପୃଷ୍ଠାରେ ଗୁରୁତ୍ୱ ଦେଇ ପ୍ରକାଶ କରୁଥିଲେ।

ବ୍ୟକ୍ତିଗତ ଭାବେ ମୁଁ ତାଙ୍କଠାରୁ ଅନେକ ମୂଲ୍ୟବାନ୍ ପରାମର୍ଶ ଓ ପ୍ରେରଣା ପାଇଛି। ମୁଁ ତାଙ୍କୁ ମାମୁଁ ବୋଲି ସମ୍ବୋଧନ କରୁଥିଲି। ସେ ମଧ୍ୟ ଖୁସିରେ ଅନ୍ୟମାନଙ୍କୁ ମୋତେ ତାଙ୍କର ଭଣଜା ରୂପେ ପରିଚିତ କରାଇଦେଉଥିଲେ। ବିଭିନ୍ନ ସମୟରେ ତାଙ୍କୁ ସାକ୍ଷାତ କରି କିମ୍ବା ଫୋନ୍ କରି ତାଙ୍କର ଅନେକ ମୂଲ୍ୟବାନ୍ ପ୍ରତିକ୍ରିୟା ପ୍ରକାଶ କରିଛି। ତାଙ୍କଠାରେ ମୁଁ ବିଶେଷ ଋଣୀ। ନିକଟରେ ସେ ଅସୁସ୍ଥ ହୋଇ ପଡ଼ିଥିବାର ଖବର ପାଇଁ ମୁଁ ମୋର ଘନିଷ୍ଠ ବନ୍ଧୁ ବିଧାୟକ ଶିଶଭୂଷଣ ବେହେରାଙ୍କ ସହ ତାଙ୍କର କଲ୍ୟାଣୀନଗରସ୍ଥିତ ବାସଭବନକୁ ଯାଇଥିଲି। ବାର୍ଦ୍ଧକ୍ୟଜନିତ ଅସୁସ୍ଥତା ଯୋଗୁଁ ସେ ବିଶେଷ କଥାବାର୍ତ୍ତା କରିପାରୁ ନଥିଲେ। ଏକଦା ଖୁବ୍ ସକ୍ରିୟ ଥିବା ତାଙ୍କ ଭଳି ଜଣେ ତୁଙ୍ଗନେତା ଆଜି ନିସ୍ତେଜ ହୋଇ ପଡ଼ିଛନ୍ତି। ଲୋକ ଚିହ୍ନିପାରୁ ନାହାନ୍ତି। ତାଙ୍କ ପତ୍ନୀ ବିଶିଷ୍ଟ ସମାଜସେବୀକା ପ୍ରଫେସର ଡାକ୍ତର ସରସ୍ୱତୀ ସ୍ୱାଇଁ ସର୍ବଦା ପାଖେପାଖେ ରହି ତାଙ୍କର ଖୁବ୍ ଯତ୍ନ ନେଉଛନ୍ତି। ସେବା କରୁଛନ୍ତି। ତାଙ୍କ ଭଳି ଜଣେ ମହାନ୍ ବ୍ୟକ୍ତିଙ୍କର ନିୟମିତ ଭଲମନ୍ଦ ବୁଝି ତାଙ୍କୁ ନିୟମିତ ସେବା ଯୋଗାଇଦେବା କ'ଣ ସରକାରଙ୍କର ଦାୟିତ୍ୱ ନୁହେଁ ? ଅତି ସରଳ ଓ ନିରାଡ଼ମ୍ବର ଭାବେ ଜୀବନଯାପନ କରୁଥିବା ରବିବାବୁଙ୍କ ମହନୀୟ ସେବା, ତ୍ୟାଗ ଓ ଅବଦାନ ପ୍ରତି ସରକାରଙ୍କର ବା ଏ ଜାତିର ଏହାହିଁ କ'ଣ ସ୍ୱୀକୃତି ?

▮▮▮

# ଶ୍ରୀ ରବିରାୟ – ସମାଜବାଦର ବାହକ

**ଶ୍ରୀ ସତ୍ୟ ପ୍ରକାଶ ମାଲବ୍ୟ**

୧୯୨୬ ମସିହା ନଭେମ୍ବର ୨୬ ତାରିଖରେ ଓଡ଼ିଶାର ଭଅଁରାଗଡ଼ରେ ଜନ୍ମ ଲଭିଥିବା ଶ୍ରୀ ରବିରାୟ ଜୀବନର ୮୦ ବର୍ଷ ପୂରଣ କରିବା ଆନନ୍ଦର କଥା। ସେ ଲୋକନାୟକ ଜୟପ୍ରକାଶ ଓ ଡଃ ରାମମନୋହର ଲୋହିଆଙ୍କ ଜୀବନ ଓ ଆଦର୍ଶ ଦ୍ୱାରା ପ୍ରଭାବିତ। ଶାନ୍ତ, ନମ୍ର ଓ ହସମୁଖ ଶ୍ରୀରାୟ ବହୁବଡ଼ ପଦପଦବୀରେ ରହି ମଧ ଜଣେ ସଚ୍ଚା ସମାଜବାଦୀ ଭଳି ସିଧାସାଦା ଜୀବନ ବିତାଇଛନ୍ତି। ତାଙ୍କର ଦୀର୍ଘ ରାଜନୈତିକ ଜୀବନ ନିର୍ମଳ ଓ ନିଷ୍କଳଙ୍କ।

ଆଜିକାଲିର ରାଜନୀତି ଓ ରାଜନେତାଙ୍କୁ ନେଇ ଶ୍ରୀ ରବିରାୟ ଦୁଃଖିତ କିନ୍ତୁ ନିରାଶ ନୁହଁନ୍ତି। ସେ ଦେଶର ଅବସ୍ଥା ସୁଧାରିବା ପାଇଁ ବ୍ୟସ୍ତ। ମଝିରେ ମଝିରେ ଲେଖାଲେଖି ଓ ବକ୍ତବ୍ୟ ଦ୍ୱାରା ସେ ଦେଶବାସୀଙ୍କୁ ସଜାଗ କରୁଛନ୍ତି। ସଂଯୁକ୍ତ ସୋସାଲିଷ୍ଟ ପାର୍ଟି, ଲୋକଦଳ, ଜନତା ପାର୍ଟି ତଥା ଜନତା ଦଳରେ ମୋର ତାଙ୍କ ସହ ନିବିଡ଼ ସଂପର୍କ ରହି ଆସିଛି। ସେ ମୋତେ 'ସତ୍ୟ ପ୍ରକାଶ' ବୋଲି ଜାଣନ୍ତି ଓ 'ତୁମେ' ବୋଲି ସମ୍ବୋଧନ କରନ୍ତି। ତାଙ୍କ ସହ ଭେଟଭାଟ ହେଲେ କେମିତି ନିଜର ନିଜର ଲାଗେ।

ରବିରାୟ ଗଣତନ୍ତ୍ର ଓ ମାନବ ତଥା ନାଗରିକ ଅଧିକାରର ଦୃଢ଼ ସମର୍ଥକ, ବିଶ୍ୱସାରା ମଣିଷର ସ୍ୱାଧୀନତାର ସେ ପ୍ରବକ୍ତା। ତିବ୍ବତ ହେଉ, ବର୍ମା ହେଉ, ଭୁଟାନ ହେଉ କି ନେପାଳ ହେଉ ସବୁଠି ସେ ଗଣତନ୍ତ୍ର ପାଇଁ ସ୍ୱର ଉତ୍ତୋଳନ କରୁଛନ୍ତି ଓ ମାର୍ଗ ଦର୍ଶକ ହୋଇଛନ୍ତି।

ନବମ ଲୋକସଭାରେ ସେ ଲୋକସଭା ବାଚସ୍ପତି ଥିବାବେଳେ ମୁଁ ଚନ୍ଦ୍ରଶେଖରଜୀଙ୍କ ମନ୍ତ୍ରିମଣ୍ଡଳରେ ଅନ୍ୟ ବିଭାଗ ସହ ସଂସଦୀୟ କାର୍ଯ୍ୟ ବିଭାଗର ମଧ ମନ୍ତ୍ରୀ ଥିଲି। ତାଙ୍କ ବାଚସ୍ପତି ପ୍ରକୋଷ୍ଠରେ ଅନେକ ସମୟରେ ସବୁଦଳର ସଂସଦୀୟ ନେତାଙ୍କ ବୈଠକ ବସୁଥିଲା। ସେଥିରେ ବିଶ୍ୱନାଥ ପ୍ରତାପ ସିଂହ, ସୋମନାଥ ଚ୍ୟାଟାର୍ଜୀ, ରାଜୀବ ଗାନ୍ଧୀ, ଇନ୍ଦ୍ରଜିତ ଗୁପ୍ତ, ଲାଲକୃଷ୍ଣ ଆଡ୍‌ଭାନୀ, ଚିତ୍ତବସୁ, ସୁଶ୍ରୀମାୟାବତୀ, ସୈଫୁଦ୍ଦିନ ସୋଜ, ଇବ୍ରାହିମ ସୁଲେମାନ୍ ସେଠ, ଶିବୁ ସୋରେନ୍, ମହନ୍ତ ଅବୈଦ୍ୟ

ନାଥ, ସୈଫୁଦ୍ଦିନ ଚୌଧୁରୀ ଆଦି ଭାଗ ନେଉଥିଲେ। ସରକାରଙ୍କ ପକ୍ଷରୁ ମୁଁ ବସୁଥିଲି। ଉପାଧ୍ୟକ୍ଷ ଶିବରାଜ ପାଟିଲ ବି ରହୁଥିଲେ।

ବିରୋଧୀ ଦଳ ପକ୍ଷରୁ ଉଠାଯାଉଥିବା ପ୍ରଶ୍ନର ସହଜ ସମାଧାନ ରବିରାୟ ବାହାର କରୁଥିଲେ, ଆବଶ୍ୟକ ପଡ଼ିଲେ ସରକାରୀ ପକ୍ଷକୁ ପରାମର୍ଶ ଦେଉଥିଲେ। ସମସ୍ତେ ସନ୍ତୁଷ୍ଟ ହେଉଥିଲେ। ଲୋକସଭାର ଗାରିମା ବଜାୟ ରଖିବା ପ୍ରତି ସେ ବିଶେଷ ଧ୍ୟାନ ଦେଉଥିଲେ। ସଦସ୍ୟମାନଙ୍କର ଯଥାର୍ଥ ବିଶେଷାଧିକାରକୁ ସେ ରକ୍ଷା କରୁଥିଲେ। ନିଜେ ଉଚ୍ଚ ପରମ୍ପରାକୁ ପାଳନ କରୁଥିଲେ ଓ ପରମ୍ପରା ପାଳନ ତଥା ଲୋକସଭାର ମର୍ଯ୍ୟାଦା ରକ୍ଷା କରିବାକୁ ସଦସ୍ୟମାନଙ୍କୁ ସେ ବାଧ୍ୟ କରିପାରୁଥିଲେ।

ଲୋକସଭାର ନିୟମ କାନୁନ୍ ଯେଉଁ ଉଦ୍ଦେଶ୍ୟରେ କରାଯାଇଚି ରବିରାୟ ତାକୁ ସେହି ଉଦ୍ଦେଶ୍ୟ ଅନୁରୂପ ପାଳନ କରୁଥିଲେ। ନିଜର ରାୟ ବା ମନ୍ତବ୍ୟ ଦେଲାବେଳେ ସେ ଯଥେଷ୍ଟ ସତର୍କତା ଅବଲମ୍ବନ କରୁଥିଲେ। ବାଚସ୍ପତି ଭାବରେ ସେ ନିରପେକ୍ଷତାର ସହ କାମ କରିଛନ୍ତି ଓ ରୁଲିଂ ଦେଇଛନ୍ତି। ସଂସଦୀୟ ପ୍ରଣାଳୀକୁ ସୁଦୃଢ଼ କରିବାରେ ତାଙ୍କର ଅବଦାନ ଅନୁକରଣୀୟ।

ସଂସଦୀୟ ପ୍ରଣାଳୀ ଉପରେ ଏମ୍. ଏନ୍. କୌଲ ଓ ଏସ୍.ଏଲ୍ ଶକଧରଙ୍କ ଦ୍ୱାରା ଲିଖିତ ପୁସ୍ତକର ପ୍ରସ୍ତାବନାରେ ୧୯୯୦ ଜୁନ୍ ୨୨ ତାରିଖରେ ରବିରାୟ ଲେଖିଛନ୍ତି, "ଆମେ ଭାରତର ଲୋକେ ବିଭିନ୍ନ ସମୟରେ ପ୍ରମାଣ କରିଦେଇଛୁ ଯେ ଆମେ ଗଣତନ୍ତ୍ର ସପକ୍ଷରେ ସଂକଳ୍ପବଦ୍ଧ ଓ ଗଣତନ୍ତ୍ରକୁ ଅକ୍ଷୁଣ୍ଣ ରଖିବାର ସମସ୍ତ ଯୋଗ୍ୟତା ଆମର ଅଛି। ଜନତାର ନିର୍ବାଚିତ ପ୍ରତିନିଧି ହେବା ଦୃଷ୍ଟିରୁ ସାଂସଦ ଓ ବିଧାୟକଙ୍କ ପ୍ରାଥମିକ କର୍ତ୍ତବ୍ୟ ହେଲା ଦେଶର ସେବା କରିବା।"

ଦଳବଦଳ ଆଇନ ଅନୁସାରେ ଲୋକସଭାରେ ଜନତାଦଳର ୨୫ ଜଣ ସଦସ୍ୟଙ୍କୁ ନିର୍ଦ୍ଦଳୀୟ ସଦସ୍ୟ ଘୋଷଣା କରିବା ଓ ପରେ ଦଳ ବଦଳାଇଥିବା ୪ ଜଣ ମନ୍ତ୍ରୀଙ୍କ ସହ ୭ ଜଣ ଅନ୍ୟ ସଦସ୍ୟଙ୍କୁ ଅଯୋଗ୍ୟ ଘୋଷଣା କରିବାର ରବିରାୟଙ୍କ ନିଷ୍ପତ୍ତି ଐତିହାସିକ ଥିଲା। ପୂର୍ବ ରାଷ୍ଟ୍ରପତି ତାଙ୍କ ସ୍ମରଣ ପୁସ୍ତିକାରେ ଏହି ନିଷ୍ପତ୍ତିକୁ ସମର୍ଥନ କରି ଲେଖିଛନ୍ତି ଯେ ଏହା ନିରପେକ୍ଷ ଓ ପ୍ରଶଂସନୀୟ ନିଷ୍ପତ୍ତି। ଏହି ନିଷ୍ପତ୍ତିକୁ ସ୍ଥାପିତ କରିବାକୁ ଦିଲ୍ଲୀ ହାଇକୋର୍ଟ ଯେଉଁ ନୋଟିସ୍ ପଠାଇଥିଲା ତାକୁ ଗ୍ରହଣ କରିବାକୁ ମନାକରି ରବି ରାୟ ଲୋକସଭାର କାର୍ଯ୍ୟ କ୍ଷେତ୍ରର ମର୍ଯ୍ୟାଦା ରକ୍ଷାକଲେ। ଦିଲ୍ଲୀ ହାଇକୋର୍ଟ ନିଜ ସ୍ଥଗିତାଦେଶ ଫେରାଇନେଲା ଓ ଦଳବଦଳ ସଂକ୍ରାନ୍ତରେ ବାଚସ୍ପତିଙ୍କ ନିଷ୍ପତ୍ତିର ପ୍ରାଧାନ୍ୟକୁ ସ୍ୱୀକାର କଲା।

ସୁପ୍ରିମ୍ କୋର୍ଟର ବିଚାରପତି ଭି. ରାମସ୍ୱାମୀଙ୍କ ବିରୁଦ୍ଧରେ ଭ୍ରଷ୍ଟାଚାରର ବିଷୟ ମଧ୍ୟ ରବିରାୟଙ୍କ ପାଖକୁ ଆସିଲା। ୧୯୯୧ ମସିହା ଫେବୃୟାରୀ ୨୭ ତାରିଖରେ ମଧୁଦଣ୍ଡବତେ ଓ ଅନ୍ୟ ୧୦୭ ଜଣ ଲୋକସଭା ସଦସ୍ୟ ବାଚସ୍ପତିଙ୍କୁ ନୋଟିସ୍ ଦେଲେ ଯେ ବିଚାରପତିଙ୍କୁ ପଦଚ୍ୟୁତ କରିବାପାଇଁ ରାଷ୍ଟ୍ରପତିଙ୍କ ନିକଟକୁ ପଠାଯିବା ପ୍ରସ୍ତାବ ଉକ୍ତ ଅଧିବେଶନରେ ରଖିବାକୁ ସେମାନଙ୍କୁ ଅନୁମତି ମିଳୁ।

ବାଚସ୍ପତି ରବିରାୟ ୧୯୯୧ ମସିହା ମାର୍ଚ୍ଚ ୨ ତାରିଖରେ ଏହି ନୋଟିସ୍‌କୁ ଗ୍ରହଣ କଲେ। ଲୋକସଭାରେ ଘୋଷଣା କଲେ। ନିଜ ଯାଞ୍ଚ ନିୟମ ୧୯୬୮ର ଧାର ୩(୨) ଅନୁସାରେ ସୁପ୍ରିମ୍ କୋର୍ଟର ବିଚାରପତି ପି.ବି ସାମନ୍ତ, ବମ୍ବେ ଉଚ୍ଚନ୍ୟାୟାଳୟର ମୁଖ୍ୟ ବିଚାରପତି ପି.ଡ଼ି. ଦେଶାଇ ଓ ବିଧି ବିଶାରଦ ଚିନ୍ନପା ରେଡ଼ି (ସୁପ୍ରିମ୍ କୋର୍ଟର ଅବସରପ୍ରାପ୍ତ ନ୍ୟାୟାଧୀଶ)ଙ୍କୁ ନେଇ ତଦନ୍ତ କମିଟି ଗଠନ କଲେ। ସୁପ୍ରିମ୍ କୋର୍ଟ ବିଚାରପତିଙ୍କ ବିରୁଦ୍ଧରେ ଭ୍ରଷ୍ଟାଚାର ଅଭିଯୋଗର ତଦନ୍ତ ପ୍ରଥମ ଥର ହେଲା। ଉକ୍ତ ବିଚାର ବିଭାଗୀୟ କମିଟି ସର୍ବ ସମ୍ମତିକ୍ରମେ ରାମସ୍ୱାମୀଙ୍କୁ ଭ୍ରଷ୍ଟାଚାର ମାମଲାରେ ଦୋଷୀ ବିବେଚନା କରି ରିପୋର୍ଟ ୧୯୯୨ ଜୁଲାଇ ୨୦ ତାରିଖରେ ପରବର୍ତ୍ତୀ ବାଚସ୍ପତି ଶିବରାଜ ପାଟିଲଙ୍କୁ ପ୍ରଦାନ କଲେ। (ରାମସ୍ୱାମୀ ଇସ୍ତଫା ଦେଲେ)

ଲୋକସଭା ବାଚସ୍ପତି ଭାରତୀୟ ସଂସଦୀୟ ଗୋଷ୍ଠୀର ମଧ୍ୟ ମୁଖ୍ୟ। ଗୋଷ୍ଠୀ ପକ୍ଷରୁ ଦେଶର ବିଖ୍ୟାତ ନେତାଙ୍କ ସଂକ୍ଷିପ୍ତ ଜୀବନୀ। ପୁସ୍ତିକା ପ୍ରକାଶ ହେବାର ନୂତନ ଧାରା ୧୯୯୦ ମାର୍ଚ୍ଚରୁ ଆରମ୍ଭ ହେଲା। ଲୋହିଆଙ୍କ ଜୀବନୀ ଉଭୟ ହିନ୍ଦୀ ଓ ଇଂରାଜୀରେ ପ୍ରକାଶିତ ହେଲା। ଯା ଭିତରେ ଅନେକ ନେତାଙ୍କ ଜୀବନୀ ଲୋକସଭା ସେକ୍ରେଟାରୀଏଟ୍ ପକ୍ଷରୁ ପ୍ରକାଶିତ ହେଲାଣି।

ରବି ରାୟଙ୍କ ପ୍ରଚେଷ୍ଟାରେ କେନ୍ଦ୍ରୀୟ ହଲ୍‌ରେ ମଧ୍ୟ ଲୋହିଆ ଓ ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀ ପ୍ରମୁଖ ନେତାଙ୍କ ଫଟୋଚିତ୍ର ରହିଲା। ତତ୍କାଳୀନ ପ୍ରଧାନମନ୍ତ୍ରୀ ଚନ୍ଦ୍ର ଶେଖର ଓ ରାଷ୍ଟ୍ରପତି ଭେଙ୍କଟରମଣ ଏହି ଉତ୍ସବର ମୁଖ୍ୟ ଥିଲେ।

ଜନସେବାରେ ନିଜକୁ ଉତ୍ସର୍ଗ କରିଥିବା ବ୍ୟକ୍ତିର ଅଭିନନ୍ଦନ କରିବା ଏକ ଅନୁକରଣୀୟ ପରମ୍ପରା। ସେଥିରୁ ପ୍ରେରଣା ମିଳେ।

ଆଜିକାଲି ରବିରାୟଙ୍କ ଭଳି ବ୍ୟକ୍ତି ମିଳିବା ବିରଳ। ଖୁବ୍ କମ୍ ଲୋକ ଅଛନ୍ତି ଯାହାଙ୍କ ଆଗରେ ମୋ ମଥା ଶ୍ରଦ୍ଧା ଓ ସମ୍ମାନରେ ମଥାନତ ହୋଇଯାଏ। ରବିରାୟ ସେଇମାନଙ୍କ ମଧ୍ୟରୁ ଜଣେ।

ଦେଶ ଆଜି ଘୋର ସଂକଟମୟ ସ୍ଥିତିରେ ଅଛି। ଦେଶ ବେକାରୀ, ଦାରିଦ୍ର୍ୟ, ଅନାହାର, କୁଖାଦ୍ୟ, ଅଶିକ୍ଷା, କ୍ରମ ବର୍ଦ୍ଧମାନ ଜନସଂଖ୍ୟା ଓ ବିଳାସୀ ସଂସ୍କୃତିର ଶିକାର ସାଜିଛି। ଗଣତନ୍ତ୍ର ଉପରେ ଗୁଣ୍ଡାତନ୍ତ୍ର ଓ ଧନତନ୍ତ୍ରର ପ୍ରଭୁତ୍ୱ। ସାଂପ୍ରଦାୟିକତା, ଜାତିବାଦ, କ୍ଷେତ୍ରବାଦ, ଆତଙ୍କବାଦ ଓ ଭ୍ରଷ୍ଟାଚାର ଦେଶପାଇଁ ବିପଦ। ସାଧୁତା ଓ ନୈତିକତାର ଅଭାବ ଘଟୁଛି।

ରାଜଶକ୍ତିକୁ ଅଙ୍କୁଶ ଦେବାକୁ ରବିରାୟ ଲୋକଶକ୍ତିର ସମର୍ଥକ। ସେ ରାଜନୀତିକୁ ଅପରାଧରୁ ମୁକ୍ତ କରିବାକୁ ଚାହାଁନ୍ତି। ଦେଶ ତାଙ୍କ ଭଳି ମଣିଷ ଲୋଡ଼ୁଛି। ଆମେ ସମସ୍ତେ ଚାହିଁବା ସେ ସଦା ସୁସ୍ଥ ରହି ଦେଶବାସୀଙ୍କ ସେବାରେ ମଗ୍ନ ରୁହନ୍ତୁ।

*(ସଂଗୃହୀତ ଲେଖା)*

# ମୋର ଅନ୍ତରଙ୍ଗ ମିତ୍ର ରବିରାୟ

**ବି. ସତ୍ୟନାରାୟଣ ରେଡ୍ଡୀ**

ଯେତେବେଳେ ସମାଜବାଦୀ ଯୁବଜନ ସଭା ରବିରାୟଙ୍କ ନେତୃତ୍ୱରେ କାମ କରୁଥିଲା ସେତେବେଳୁ ମୋର ତାଙ୍କର ପରିଚୟ। ଡଃ ଲୋହିଆଙ୍କ ସିଦ୍ଧାନ୍ତରେ ଅନୁପ୍ରାଣିତ ହୋଇ ଦେଶର କେତେକ ଯୁବନେତା ସମାଜବାଦୀ ଯୁବଜନ ସଭା ଗଢ଼ିଲେ ଓ ସେଥିରେ ଆନ୍ଧ୍ର, ଓଡ଼ିଶା, ବିହାର ଓ ଉତ୍ତରପ୍ରଦେଶ ତଥା ଅନ୍ୟ ରାଜ୍ୟର ଯୁବଜନ ମହତ୍ୱପୂର୍ଣ୍ଣ ଯୋଗଦାନ କଲେ। ଓଡ଼ିଶାରୁ ଆସିଥିବା ଯୁବନେତା ଥିଲେ ରବିରାୟ। ଯୁବଜନ ସଭା ସମାଜବାଦୀ ପାର୍ଟିକୁ ଶକ୍ତିଶାଳୀ କଲା ଓ ଚାଷୀ, ଶ୍ରମିକ ଓ କର୍ମଜୀବୀଙ୍କୁ ସଂଗଠିତ କଲା। ରବିରାୟ ପଥଚ୍ୟୁତ ହୋଇ ନଥିବା ନେତାଙ୍କ ମଧ୍ୟରେ ଅନ୍ୟତମ। ଏହି ସଂଗଠନର ଦାୟିତ୍ୱ ତୁଲାଇବା ଭିତରେ ସେ ଲୋକସଭା ଓ ରାଜ୍ୟସଭାକୁ ଯାଇଛନ୍ତି ଓ ଜଣେ ସାଂସଦ ଭାବରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି। ଲୋହିଆଙ୍କ ସିଦ୍ଧାନ୍ତକୁ ସଠିକ୍ ଭାବେ ଲୋକଙ୍କ ଆଗରେ ରଖୁଥିବା ନେତାଙ୍କ ମଧ୍ୟରେ ରବିରାୟ ଅନ୍ୟତମ। ତାଙ୍କ ଭଳି ନେତା ଯୁବପୀଢ଼ିର ପ୍ରେରଣା। ତାଙ୍କୁ ଆଦର୍ଶ ମଣି ଯୁବପୀଢ଼ି ରାଷ୍ଟ୍ର ନିର୍ମାଣ କାମରେ ଆଗେଇବେ। ଦୁନିଆର ସମସ୍ୟା ସଂପର୍କରେ ସେ ଯଥେଷ୍ଟ ସଂବେଦନଶୀଳ। ମୁଁ ତାଙ୍କର ଦୀର୍ଘଜୀବନ କାମନା କରୁଛି।

*(ସଂଗୃହୀତ ଲେଖା)*

▮▮▮

# ରବି ରାୟ - ମୋର ବିଶ୍ୱକୁ ଗବାକ୍ଷ

ଶ୍ରୀ ସତ୍ୟନାରାୟଣ ରାୟ ପିତାମ୍ବର ମହାପାତ୍ର

ପୁରାତନବାଦ, ଅଜ୍ଞତା ଓ ଭ୍ରାନ୍ତି ଜଣେ ମଣିଷକୁ ବାନ୍ଧି ରଖିଥାଏ। ଚଳିତ ସ୍କୁଲଶିକ୍ଷା, ଏହି ପୁରାତନବାଦ, ଅଜ୍ଞତା ଓ ଭ୍ରାନ୍ତିର ବନ୍ଧନକୁ ଛିଣ୍ଡାଇ ପାରିନଥାଏ। ଏହି ବନ୍ଧନକୁ ଛିଣ୍ଡାଇବା ପାଇଁ ଏକ ଆଲୋକ ଓ ପବନ ଦେଉଥିବା ବିଶ୍ୱକୁ ଗବାକ୍ଷ ଦରକାର। ମୋ ପାଇଁ ରବି ରାୟ (ଢେଙ୍କେ) ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ସେହି ବିଶ୍ୱକୁ ଗବାକ୍ଷ।

ପ୍ରଥମତଃ, ସେହି ଗବାକ୍ଷ ମାଧମରେ ମୁଁ ଜାଣିବାକୁ ପାଇଥିଲି କି ଏପରି ଏକ ପୃଥିବୀ ସମ୍ଭବ ଯେଉଁଠାରେ ସମାଜବାଦ ଦ୍ୱାରା ବିଭିନ୍ନ ଜାତି, ଧର୍ମ ଓ ସଂପ୍ରଦାୟର ଲୋକମାନେ ଏକାଠି ବସବାସ କରିପାରିବେ। ସେହି ବିଶ୍ୱରେ ନାରୀ ଓ ପୁରୁଷର ସମନ୍ୱୟ ରହିବ ଓ ସମସ୍ତ ଅଧିବାସୀଙ୍କ ଭିତରେ ସମାନତା ରହିବ। ମୋର ବିଶ୍ୱମତର ମୂଳ ଅଂଶ ଆସିଛି ଲୋହିଆପନ୍ଥୀ ସମାଜବାଦୀ ରବି ରାୟଙ୍କର ବିଶ୍ୱ ଦୃଷ୍ଟିରୁ। ବର୍ତ୍ତମାନ ପୃଥିବୀସାରା ପୁଞ୍ଜିବାଦ-କୃତ ସଙ୍କଟର ସମାଧାନ କରିବାପାଇଁ ପୁଣିଥରେ ସେହି ବିଶ୍ୱ ଦୃଷ୍ଟିର ଅନେକ ଆବଶ୍ୟକତା ରହିଛି।

ଦ୍ୱିତୀୟରେ ମୁଁ ରବି ରାୟଙ୍କଠାରୁ ଶିଖିଛି ସାମାଜିକ ନ୍ୟାୟ ବିଷୟରେ। ସାମାଜିକ ନ୍ୟାୟ ବିଷୟରେ ରବି ରାୟଙ୍କର ମତ ସବୁବେଳେ ଦୃଢ଼। ତାଙ୍କ ନିଜ ଜୀବନରେ, ସମାଜବାଦୀ ରାଜନୀତି ଦ୍ୱାରା ଅତୀତ ଓ ବର୍ତ୍ତମାନ ଚଳିତ ଶୋଷଣ ଓ ଅନ୍ୟାୟ ବିରୋଧରେ ସେ ସଦାବେଳେ କାର୍ଯ୍ୟ କରି ଆସିଛନ୍ତି। ରବି ରାୟଙ୍କ ଯୋଗୁ ହିଁ ମୁଁ ଶିଖିଛି କିପରି କୌଣସି ବି ଶୋଷଣ ଓ ଅନ୍ୟାୟ ପାଇଁ ସଜାଗ ରହିବା ଦରକାର। ମୋର ମନେଅଛି ଯେତେବେଳେ ମଣ୍ଡଳ କମିଶନ୍ ପ୍ରସ୍ତାବ ପାରିତ ହୋଇଥିଲା, ସେତେବେଳେ ଅନେକ ବନ୍ଧୁ ଓ ପରିବାରବାସୀ ଏହାକୁ ବିରୋଧ କରିଥିଲେ। କିନ୍ତୁ ଲୋହିଆ-ପନ୍ଥୀ ରବିରାୟ, ସକ୍ରେଟିସ୍ ବାକ୍ୟାଳାପ କରି ସମସ୍ତଙ୍କୁ ଏହାର ଆବଶ୍ୟକତା ବୁଝାଇଥିଲେ।

ରବି ରାୟଙ୍କର ରାଜନୀତି ଜୀବନ ହେଉଛି ମୋ ପାଇଁ, କିପରି ସ୍ୱଚ୍ଛ ରାଜନୀତି କରାଯିବା ଦରକାର। ତାହାର ଏକ ଜ୍ୱଳନ୍ତ ଉଦାହରଣ। ସେ ସଦାବେଳେ ଦେଖାଇଛନ୍ତି,

କିପରି ନିଜ ଆଦର୍ଶକୁ ପରିତ୍ୟାଗ ନକରି, ରାଜନୀତି ଦ୍ୱାରା ଦ୍ୱନ୍ଦ୍ୱମୂଳକ-ପାରମ୍ପରିକ ଓ ଆଧୁନିକ ମତ ଭିତରେ ସମନ୍ୱୟ ଆଣିହେବ। ଅନେକ ବାର ସେ ଏହି ସମନ୍ୱୟ ଆଣିବାରେ ସଫଳ ହୋଇଛନ୍ତି ଓ ଅନେକବାର ବିଫଳ ବି ହୋଇଛନ୍ତି। କିନ୍ତୁ ସେ କେବେ ବି ନିଜର ଆଦର୍ଶକୁ ପରିତ୍ୟାଗ କରିନାହାନ୍ତି। ସମାଜର ଗଠନ ଓ ବିକାଶପାଇଁ ରାଜନୀତି ହିଁ ଏକମାତ୍ର ସମ୍ଭାବିତ କଳା, ଏହି ବିଶ୍ୱାସ ମୁଁ ରବି ରାୟଙ୍କଠାରୁ ଶିଖିଛି।

୧୯୯୦ ଦଶକର ଶେଷ ଆଡ଼କୁ, ସେ ବୁଝିପାରିଥିଲେ କି ସେତେବେଳର ଭୋଟ୍-ରାଜନୀତିରେ ଦମ୍ଭ ନାହିଁ ସାମାଜିକ ନ୍ୟାୟ ଓ ସାମାଜିକ କ୍ରାନ୍ତି ପାଇଁ। ତେଣୁ ସେ ଭୋଟ୍-ରାଜନୀତିରୁ ଅବସର ନେଇ ପୁରା ସମୟ କଟାଇବା ଆରମ୍ଭ କଲେ ବିଭିନ୍ନ ସ୍ଥାନୀୟ ଆନ୍ଦୋଳନରେ ଭାଗ ନେଇ। ସେହି ଲୋକ ଶକ୍ତି ଚାଳିତ, ବିରୋଧ ଆନ୍ଦୋଳନଗୁଡ଼ିକ କେତେ ଯେ ଆବଶ୍ୟକ, ତାହା ମୁଁ ରବି ରାୟ ଓ ତାଙ୍କର ସହକର୍ମୀଙ୍କଠାରୁ ଜାଣିବାକୁ ପାଇଲି।

ଜଳ, ଜମି, ପ୍ରକୃତି ଓ ଜୀବିକାରୁ ସ୍ଥାନୀୟ ଲୋକମାନେ ପୃଥିବୀସାରା ନିଜର ଅଧିକାରରୁ ବର୍ତ୍ତମାନ ବଞ୍ଚିତ ହେଉଛନ୍ତି; ବିଶ୍ୱୀକରଣ ଓ ଅର୍ଥନୈତିକ ଉଦାରୀକରଣ ଯୋଗୁଁ ସ୍ଥାନୀୟ ବାସିନ୍ଦାମାନେ ଏହି ଅଧିକାରଗୁଡ଼ିକୁ ଫେରିପାଇବା ପାଇଁ ବିରୋଧ, ଆନ୍ଦୋଳନ ହେଉଛି ଏକମାତ୍ର ପନ୍ଥା। ରବି ରାୟ ଓ ତାଙ୍କର ସହକର୍ମୀମାନଙ୍କର ବିରୋଧ ଆନ୍ଦୋଳନ ବିଷୟରେ ଥିବା ପୂର୍ବ ଦୃଷ୍ଟି, ମୁଁ ବର୍ତ୍ତମାନ ପୃଥିବୀର ଅନ୍ୟ କୋଣରେ ଦେଖିବାକୁ ପାଉଛି।

ଏହି ବିରୋଧ ଆନ୍ଦୋଳନ ସଚେତନତା ହେଉଛି ମୋର ରବି ରାୟଙ୍କଠାରୁ ତୃତୀୟ ବଡ଼ ଶିକ୍ଷାପ୍ରାପ୍ତି। ଅନେକ ଗୁଣ ଓ ଚିନ୍ତାଧାରା ବହନ କରୁଥିବା ରବି ରାୟଙ୍କ ବ୍ୟକ୍ତିତ୍ୱର ସବୁଠାରୁ ସରଳ ବିଶେଷତ୍ୱ ହେଉଛି ବ୍ୟକ୍ତିଗତ ଉଦାରତା।

ତାହାର ଏକ ଛୋଟ ଉଦାହରଣ ହେଉଛି ଯେତେବେଳେ ମୁଁ ଉଚ୍ଚଶିକ୍ଷା ପାଇଁ ଆମେରିକା ଆସିବାକୁ ଠିକ୍ କଲି, ସେ ମୋତେ ଖୁସି ହୋଇ, ଉଚ୍ଚଚିନ୍ତା କରିବାକୁ ଉପଦେଶ ଦେଇଥିଲେ। ରାମ ମନୋହର ଲୋହିଆଙ୍କ ଆମେରିକା ଭ୍ରମଣ ଉପରେ ଏକ ବହି ମୋତେ ଉପହାର ଦେଇଥିଲେ। କିନ୍ତୁ ମୁଁ ମନ ଭିତରେ ଜାଣିଥିଲି କି ରବି ରାୟ ଆମେରିକାର ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ ବିରୋଧୀ। ମୁଁ ମନ ଭିତରେ ଜାଣିଥିଲି କି, ରବି ରାୟ ଚାହାଁନ୍ତି, ମୋ ବୟସର ଭାରତୀୟ ଯୁବକ ଯୁବତୀମାନେ ଭାରତୀୟ ସାମାଜିକ କ୍ରାନ୍ତିରେ ଭାଗ ନିଅନ୍ତୁ।

ଜେଜେ, ରବି ରାୟ ମୋର, ବିଶ୍ୱକୁ ଗବାକ୍ଷ।

■ ■ ■

# ରବି ରାୟ – ଏକ ଉପଲବ୍ଧି

ଡାକ୍ତର ସରସ୍ୱତୀ ସ୍ୱାଇଁ

ରବି ରାୟଙ୍କ ସଂପର୍କରେ କିଛି ଲେଖିବା ପାଇଁ ମୋତେ ଭଲପାଉଥିବା କେତେକ ଶୁଭେଚ୍ଛୁ ବନ୍ଧୁଙ୍କର ଅନୁରୋଧ ଏବଂ ତାଗିଦ। ମାତ୍ର ମୋ ଜୀବନର ସବୁଠାରୁ ବଡ଼ କଷ୍ଟ, ବଡ଼ ଅପାରଗତା ସେମାନେ ବୁଝିବାକୁ, ହୃଦୟଙ୍ଗମ କରିବାକୁ ପ୍ରସ୍ତୁତ ନୁହଁନ୍ତି। କେବଳ ମୋର ଭାଷାଜ୍ଞାନର ଯେ ଅଭାବ ତା' ନୁହେଁ, ଅନୁଭୂତିର ଦାରିଦ୍ର୍ୟ ସବୁଠାରୁ ବଡ଼ ବାଧକ, ତାହା ପୁଣି ରବିରାୟଙ୍କୁ ନେଇ।

ତଥାପି ଆଜି କଲମ ଧରିଛି - ବହୁକଥା, ବହୁଘଟଣା ବିସ୍ମୃତି ଗର୍ଭରେ ବିଲୀନ ହୋଇଯାଇଛି। ସେସବୁ ଯେ ଆବଶ୍ୟକ, ଭବିଷ୍ୟତରେ ଲୋଡ଼ାହେବ ତାହା କେବେହେଲେ ମୋ କଳ୍ପନା ରାଜ୍ୟରେ ନଥିଲା। ଘଟଣାବଳୀକୁ ସଜାଡ଼ିବା ଆଜି ଆଉ ମୋ ପକ୍ଷରେ ସମ୍ଭବ ହୋଇପାରୁ ନାହିଁ। ମାୟାମୃଗ ଭଳି ସେଗୁଡ଼ିକ କେବଳ ଆଖି ଆଗକୁ ଆସନ୍ତି, ଦେଖାଦିଅନ୍ତି, ଧରିବା ପୂର୍ବରୁ ଉଭେଇଯା'ନ୍ତି। ପଛେ ପଛେ ଧାଇଁବା ସାର ହୁଏ। ସ୍ୱପ୍ନକୁ କ'ଣ ଧରିହୁଏ ? ବୟସର ଘ୍ରପ।

ତାଙ୍କର ଅଗଣିତ ବନ୍ଧୁ ଏ ପୁସ୍ତକରେ ସେମାନଙ୍କ ଅନୁଭୂତିର ବହୁ ଘଟଣା ବା ଦୁର୍ଘଟଣାକୁ ଉଲ୍ଲେଖ କରିଥିବେ। ଆଉ କେତେକ ବନ୍ଧୁ ଅଧିକ ଗୋଟାଇ ପାରିଥା'ନ୍ତି। ମୋର ମନେହୁଏ ବହୁ ଘଟଣା ତଥାପି ଲୋକଲୋଚନକୁ ଆସିପାରି ନାହିଁ; ଯାହା ମୋ ମତରେ ତାଙ୍କ ଚରିତ୍ରର ଏକ ବିଶେଷ ଦିଗପ୍ରତି ଦୃଷ୍ଟିପାତ କରିଥାଏ। ଅତୀତ ଜୀବନର ସେଇ ଅନାବନା ସ୍ମୃତିରୁ କିଛି ଅଡୁଆ ସୂତାକୁ ଏଠାରେ ସଜାଡ଼ିବାର ଧୃଷ୍ଟତା ମାତ୍ର ରଖୁଛି।

**ଜଣେ ଦରଦୀବନ୍ଧୁ**

ସବୁ ମଣିଷଙ୍କୁ ଭଲପାଇବା ଥିଲା ତାଙ୍କ ଚରିତ୍ରର ଏକ ବିଶେଷତ୍ୱ। ତାଙ୍କ ମତରେ "Everybody is good, unless otherwise proved"। ଏତେ ଉଦାର, ଏତେ ଅକୃତ୍ରିମ ଭାବରେ, ଏତେ ପ୍ରାଣଭରି ଭଲପାଇବାର ମଣିଷ ମୁଁ ଆଉ ଦେଖିନାହିଁ।

ଅନ୍ୟର ଦୁଃଖ ସହ ନିଜକୁ ମିଶାଇଦେବା, ଅନୁଭବ କରିବା ପ୍ରାୟ ବିରଳ। ଏକଦା ତାଙ୍କର ଜଣେ ଛାତ୍ରବନ୍ଧୁ ବିପିନ ଦାସ ଏବଂ ସେ ଏକାଠି କିଛି କାର୍ଯ୍ୟରେ ଗୋଟିଏ ଜିପ୍‌ରେ ଯାଉଥିଲେ। ଜାନୁୟାରୀ ମାସର ଶୀତ ରାତ୍ରି। ଜିପ୍ ଖୋଲା - ଶୀତୁଆ ପବନ ଗାଡ଼ି ଭିତରେ ନାଡ଼ି ଦୋହଲାଇ ଦେଉଥାଏ। ବିପିନ ଦାସଙ୍କର ଗରମ ଚଦର ନଥିଲା। ସେ ଶୀତରେ ଥରୁଥିଲେ। ରବି ରାୟ ନିଜ ଚଦର ବିପିନ ବାବୁଙ୍କୁ ଘୋଡ଼ାଇ ଦେଲେ। ବିପିନ ବାବୁଙ୍କ ଆଖିରୁ ଝରିଆସିଥିଲା ଅମାନିଆ ଲୁହ। ତାଙ୍କ ମତରେ, ଏ ସ୍ନେହ, ଏ ଭଲପାଇବା ତାଙ୍କୁ ପୁଣି ତାଙ୍କ ବାପା-ବୋଉଙ୍କୁ ମନେପକାଇ ଦେଲା। ରବି ରାୟଙ୍କର ନିଜର ମଧ ବିଶେଷ ଗରମ ଲୁଗା ନଥାଏ। ମାତ୍ର ସେ ଅନୁଭବ କରିଥିଲେ ତାଙ୍କଠାରୁ ବିପିନ ବାବୁଙ୍କର ଆବଶ୍ୟକତା ବହୁ ଅଧିକ। ଏଭଳି ଘଟଣାର ବହୁ ଉଦାହରଣ ତାଙ୍କ ଜୀବନରେ ଘଟିଥିବା ପ୍ରକାଶ। ନିଜର ଆବଶ୍ୟକତାଠାରୁ ଅନ୍ୟର ଆବଶ୍ୟକତା ସର୍ବଦା ତାଙ୍କ ମନକୁ ଅଧିକ ଆନ୍ଦୋଳିତ କରିଥାଏ। ଏ ଘଟଣା ବିପିନ ଦାସ ବହୁଥର ଅନ୍ୟମାନଙ୍କ ଆଗରେ ପ୍ରକାଶ କରିଛନ୍ତି ଅତ୍ୟନ୍ତ ଭାବବିହ୍ୱଳ ହୋଇ। ତାଙ୍କ ମତରେ ସେଦିନର ଏ ଘଟଣା କେବେହେଲେ ବିସ୍ମରଣ ହେବନାହିଁ।

ରବି ରାୟଙ୍କର ବନ୍ଧୁ ସଂଖ୍ୟା ଅମାପ। ସମସ୍ତଙ୍କୁ ମନେରଖିବାର ଶକ୍ତି ଅଦ୍ଭୁତ। ଏତେ ସ୍ମରଣଶକ୍ତି ଏବଂ ଏତେ ଅକୃତ୍ରିମ ଭାବରେ ସେମାନଙ୍କୁ ନିଜର କରିବାର ଶକ୍ତି ମୁଁ ପ୍ରାୟ କାହାରିଠାରେ ଦେଖିନାହିଁ। ତାଙ୍କର ବହୁ ରାଜନୈତିକ ବନ୍ଧୁଙ୍କ ସଂସ୍ପର୍ଶରେ ମୁଁ ଆସିଛି। ସେମାନଙ୍କ ମଧ୍ୟରୁ ଅନେକଙ୍କର ସ୍ମରଣଶକ୍ତି ବେଶ୍ ପ୍ରଖର। ମାତ୍ର ବନ୍ଧୁମାନଙ୍କୁ ପ୍ରାଣଖୋଲା ଭଲପାଇବା, ଅକୃତ୍ରିମ ଭାବରେ ତାଙ୍କୁ ନିଜର କରିବାର ଶକ୍ତି ମୁଁ କାହାରିଠାରେ ଲକ୍ଷ୍ୟ କରିନାହିଁ। ଅନେକ ସମୟରେ ଭଲପାଇବା ବହୁକ୍ଷେତ୍ରରେ ଥାଏ ଉପରଠାଉରିଆ, ସ୍ୱାର୍ଥଜଡ଼ିତ। ନିଃସ୍ୱାର୍ଥ ଭାବରେ ଅନ୍ୟକୁ ନିଜର କରି ପାରିବାର ଯେଉଁ ସ୍ୱର୍ଗୀୟ ଅନୁଭୂତି, ଯେଉଁ ବିପୁଳ ଆନନ୍ଦ, ନିଜକୁ ଅନ୍ୟପାଇଁ ନିଃଶେଷ କରିଦେବାରେ ଯେଉଁ ମହନୀୟତା ମୁଁ ଆଉ କେଉଁଠାରେ ଅନୁଭବ କରିପାରି ନାହିଁ।

**ଯାଯାବର ଜୀବନ**

ରବି ରାୟ ନିଜେ ଛାତ୍ରଜୀବନରୁ ରାଜନୀତିକୁ ଆସିଥିବା ସମସ୍ତେ ଜାଣନ୍ତି। ପରବର୍ତ୍ତୀ କାଳରେ ଛାତ୍ରମାନଙ୍କୁ ଏକାଠି କରିବା, ତାଙ୍କୁ ରାଜନୀତିକୁ ଆଣିବା ଥିଲା ତାଙ୍କର ଏକ ପ୍ରଧାନ କାର୍ଯ୍ୟ। ଉଦ୍ଦେଶ୍ୟ, ଯୁବକମାନଙ୍କୁ ଦେଶମାତୃକାର ସେବାରେ ନିୟୋଜିତ କରିବା, ସେମାନଙ୍କୁ ଆଦର୍ଶ ମଣିଷ କରି ଗଢ଼ିବା, ସେମାନଙ୍କ ମନରୁ ହୀନମନ୍ୟତା ଦୂରକରିବା। ତାଙ୍କ ମତରେ, ଏ ସବୁ ଭଲ ଛାତ୍ରର ଲକ୍ଷଣ ହେବା

ଆବଶ୍ୟକ। ବିଦ୍ୟା ଅଧ୍ୟୟନ ସହ ଏ ସବୁ ଗୁଣକୁ ମଧ୍ୟ ଆହରଣ କରିବା ଏବଂ ତାହା ଏହି ସମୟରୁ ହିଁ ଆରମ୍ଭ କରିବା ଲୋଡ଼ା, ତା' ନହେଲେ ସେମାନେ ଦିଗଭ୍ରଷ୍ଟ ହେବାର ସମ୍ଭାବନା ବହୁ ଅଧିକ। ତାଙ୍କ ସ୍ଲୋଗାନ ଥିଲା "Catch them Young"। ବର୍ତ୍ତମାନ ରାଜନୀତିର ନେତୃସ୍ଥାନରେ ଥିବା ବହୁ ବ୍ୟକ୍ତି ଛାତ୍ରଜୀବନରୁ ହିଁ ରାଜନୀତିରୁ ଆସିଥିଲେ। ସମୟ ବଦଳିଛି – ଛାତ୍ର ରାଜନୀତି ଆଦର୍ଶ ବିଚ୍ୟୁତ ହୋଇଥିବା ସର୍ବଦା ରବିରାୟଙ୍କୁ ଦୁଃଖ ଦେବା ମୁଁ ଦେଖିଛି। ବହୁସମୟରେ ଅତ୍ୟନ୍ତ ଦୁଃଖରେ ଭାଙ୍ଗିପଡ଼ି ସେ କହିପକାନ୍ତି "ଟୁନା ସତେ କ'ଣ ହୋଇଗଲା ?" ଏହି ପଦେ କଥା ଭିତରେ ଲୁଚି ରହିଥିବା ବେଦନା ମୁଁ ହୁଏତ ସବୁ ବୁଝିପାରି ନାହିଁ – ସାନ୍ତ୍ୱନା ଦେବାର ଚେଷ୍ଟା ବି କରନି। କେଉଁ ସାନ୍ତ୍ୱନା ଏଭଳି ଛାତଫଟା ଦୁଃଖକୁ ଲାଘବ କରିପାରିବ ? ମୁଁ ନିରବ ରୁହେ। ରବି ରାୟ ଓଡ଼ିଶାରେ ଖୁବ୍ ଅଳ୍ପ ସମୟ ବିତାଇଥାନ୍ତି। ତାଙ୍କ ଦଳର ଜଣେ ପ୍ରମୁଖ କର୍ମକର୍ତ୍ତା ଭାବରେ ତାଙ୍କୁ ବହୁ ସମୟ ସର୍ବଭାରତୀୟ ସ୍ତରରେ ବିଭିନ୍ନ ପ୍ରଦେଶ ଗସ୍ତ କରିବାକୁ ପଡ଼ିଥାଏ। ଦଳର ସେକ୍ରେଟାରୀ ଭାବରେ ସେ ହାଇଦ୍ରାବାଦ ଅଫିସ ଦାୟିତ୍ୱରେ ରହୁଥିଲେ। ତାଙ୍କର ରାଜନୈତିକ ଗୁରୁ ଏବଂ ମାର୍ଗଦର୍ଶକ ଡ. ଲୋହିଆଙ୍କ ମତ – ଦିଲ୍ଲୀରେ ସବୁ ଅଫିସ କାହିଁକି ରହିବ ? ଉତ୍ତରଭାରତ ଭଳି ଦକ୍ଷିଣଭାରତ ଦେଶର ଏକ ବିଶିଷ୍ଟ ଅଙ୍ଗ। ସେଥିପାଇଁ ଦକ୍ଷିଣ ଭାରତର ହାଇଦ୍ରାବାଦରେ ସେ ତାଙ୍କର ଦଳର ପ୍ରଧାନ ଅଫିସ କରିବାକୁ ପରାମର୍ଶ ଦେଇଥିଲେ ଏବଂ ଅଫିସ ଦାୟିତ୍ୱ ଦିଆଯାଇଥିଲା ଶ୍ରୀଯୁକ୍ତ ରବି ରାୟଙ୍କୁ। ସେଥିପାଇଁ ବହୁ ସମୟ ସେ ସେଠାରେ କଟାଉଥିଲେ। ଓଡ଼ିଶାରେ ସେମାନଙ୍କର କାର୍ଯ୍ୟକ୍ଷେତ୍ରର ପ୍ରାଣକେନ୍ଦ୍ର ଥିଲା ସମ୍ବଲପୁର ଜିଲ୍ଲା। ବର୍ତ୍ତମାନ ମଧ୍ୟ ସମ୍ବଲପୁର ଏବଂ ବିଶେଷତଃ ବରଗଡ଼ରେ ସମାଜବାଦୀ ଦଳର ଅଫିସ ରହିଛି। ଦଳର ଶାଖାପ୍ରଶାଖା ଏପରି ବଳଶାଳୀ ଥିଲା ଯେ ତାଙ୍କ ଦଳର ଶ୍ରୀଯୁକ୍ତ  କିଶନ ପଟ୍ଟନାୟକ, ଜେଲ୍‌ରେ ରହି, ଦିନେ ହେଲେ ନିର୍ବାଚନ କ୍ଷେତ୍ରକୁ ନ ଯାଇ, ଜିତି ସାଂସଦ ହୋଇପାରିଥିଲେ। ସେଦିନର ସେଇ ଜ୍ୱଳନ୍ତ ଶିଖା ଆଜି ମଧ୍ୟ ଜାଜ୍ୱଲ୍ୟମାନ। ଜଣେ ନିରଳସ ସଂଗଠକ, ସଚ୍ଚୋଟ, ନିଷ୍ଠାପର କର୍ମୀ ଭାବରେ ରବି ରାୟଙ୍କର ଥିଲା ସ୍ୱତନ୍ତ୍ର ପରିଚୟ।

ବିଭିନ୍ନ ଆନ୍ଦୋଳନର ନେତୃତ୍ୱ ନେଇ ରବି ରାୟଙ୍କୁ ଜେଲ୍ ବରଣ କରିବାକୁ ପଡ଼ିଥିଲା। କେତେକ ଆମ ବିଭାଘର ପୂର୍ବରୁ ଏବଂ କେତେକ ପରେ ସବୁ ମୋର ମନେ ନାହିଁ। ଯେତିକି ମନେଅଛି ତା' ମଧ୍ୟରେ କଟକ ଜିଲ୍ଲା ବନ୍ୟା ପ୍ରପୀଡ଼ିତଙ୍କ ପାଇଁ ସତ୍ୟାଗ୍ରହ କରି କାରାବରଣ, ମାତୃଭାଷାର ପ୍ରଚ୍ଚର ଏବଂ ପ୍ରସାର ପାଇଁ ଆନ୍ଦୋଳନ କରି ପୁରୀରେ ଜେଲ ଜୀବନ, ଦୁର୍ନୀତି ବିରୁଦ୍ଧରେ ଲଢ଼େଇ କରି DIRରେ ଗିରଫ, ଭାରତର କିଛି

ଅଂଶ ପାକିସ୍ତାନକୁ ଦିଆଯିବାର ପ୍ରତିବାଦରେ କଚ୍ଛ ସତ୍ୟାଗ୍ରହ, ଜରୁରୀ ପରିସ୍ଥିତିରେ କାରାବରଣ ଇତ୍ୟାଦି। ଦେଶପାଇଁ, ଆଦର୍ଶପାଇଁ ଯେକୌଣସି କାର୍ଯ୍ୟକୁ ସେ ଅତ୍ୟନ୍ତ ଆନନ୍ଦର ସହ ଆଦରି ନେଉଥିଲେ। ତାହା ସମ୍ପନ୍ନ କରିବାକୁ ସେ ନିଜର ପରମ କର୍ତ୍ତବ୍ୟ ବୋଲି ଧରି ନେଇଥିଲେ। ସେଥିପାଇଁ ସବୁକିଛି ତ୍ୟାଗପାଇଁ ସେ ଥିଲେ ସର୍ବଦା ପ୍ରସ୍ତୁତ। ବାହାରେ ଜଣେ ସାଲିସବିହୀନ ଏକ ବିଦ୍ରୋହୀ ଯୁବକ ରବି ରାୟ ଜେଲ ଭିତରେ ଥିଲେ ଅତ୍ୟନ୍ତ ଶୃଙ୍ଖଳିତ। ଜେଲରେ ଅନ୍ୟ ବନ୍ଦୀମାନଙ୍କର ଅନ୍ୟାୟ ଦାବୀକୁ ସେ କେବେହେଲେ ବରଦାସ୍ତ କରୁନଥିଲେ ଏବଂ ସେମାନଙ୍କୁ ବୁଝାଇ ଜେଲ କର୍ତ୍ତୃପକ୍ଷଙ୍କୁ ବହୁ ବିପଦରୁ ଉଦ୍ଧାର କରିଥିବା ବିଷୟ ଓଡ଼ିଶା ଜେଲର କିଛି ସୁପରିନ୍‌ଟେଣ୍ଡେଣ୍ଟ୍ ମୋତେ କହିଛନ୍ତି। ତାଙ୍କ ମତରେ, "ରବି ରାୟଙ୍କ ଭଳି ବନ୍ଦୀ ବିରଳ।"

ଏଠାରେ ଏ ପ୍ରସଙ୍ଗକୁ ଉଲ୍ଲେଖ କରିବାର ଅର୍ଥ ରବି ରାୟ ଓଡ଼ିଶାରେ ପ୍ରାୟ ଅନାଲୋଚିତ ଥିଲେ। ସେ କେବେହେଲେ ବିଧାନ ସଭାକୁ ଯାଇ ନାହାନ୍ତି ବା ସେଥିପାଇଁ ଆଗ୍ରହ ପ୍ରକାଶ କରିନାହାନ୍ତି। ମାତ୍ର ଓଡ଼ିଶା ତାଙ୍କର ମାତୃଭୂମି ଏବଂ ଓଡ଼ିଆ ତାଙ୍କର ମାତୃଭାଷା – ଏଥିପାଇଁ ଗର୍ବ ଏବଂ ଗୌରବ ଅନୁଭବ କରିବାରେ ସେ କେବେହେଲେ ହେଳା କରୁ ନଥିଲେ। ତାଙ୍କ ଭାଷାରେ "ମୁଁ ପ୍ରଥମେ ଜଣେ ଭାରତୀୟ ଏବଂ ପୁଣି ଜଣେ ଓଡ଼ିଆ"। ତାଙ୍କର ରାୟ ଉପାଧି ଯୋଗୁଁ ବଙ୍ଗଳାର ଲୋକେ ତାଙ୍କୁ ବଙ୍ଗାଳୀ ବୋଲି ଭାବୁଥିବାର ମୁଁ ଶୁଣିଛି। ତାଙ୍କର ସାଲିସବିହୀନ ଲଢ଼େଇ ଯୋଗୁଁ ପାର୍ଲାମେଣ୍ଟରେ ମାତୃଭାଷାରେ ବିତର୍କର ଆରମ୍ଭ ହୋଇଥିଲା।

ବିବାହର ବହୁ ବର୍ଷ ବିତିଯାଇଛି। ବିସ୍ମୃତି ଗର୍ଭରେ ବହୁ ଅନୁଭୂତି ମିଳେଇଯାଇଛି। ତାଛଡ଼ା ରବି ରାୟଙ୍କ ସହ ଏକାଠି କିଛିଦିନ ରହିବା ଭଳି ସମୟ ହୋଇପାରି ନାହିଁ। ସର୍ବଭାରତୀୟ କ୍ଷେତ୍ରରେ କାମ ପାଇଁ ସର୍ବଦା ସେ ଓଡ଼ିଶା ବାହାରେ ରହୁଥିଲେ ଏବଂ ବହୁସମୟରେ ଜେଲ୍ ଜୀବନ ଆଦରେଇ ନେବାକୁ ପଡୁଥିଲା। ସେଥିପାଇଁ ପରିବାର ବିଷୟ ଚିନ୍ତା କରିବାର ଅବସର ସେ ପାଇ ନଥିଲେ। ମୁଁ ସରକାରୀ ଚାକିରି କରିଥିବାରୁ ମୋର ମଧ୍ୟ ସମୟ ନଥାଏ ରବି ରାୟଙ୍କ ପାଖରେ ରହିବା ପାଇଁ। ବେଳେବେଳେ ହଠାତ୍ ଆମର ଦେଖାସାକ୍ଷାତ ହୋଇଥାଏ କେଉଁ ଏକ ରେଳ ଷ୍ଟେସନର ୱେଟିଂ ରୁମ୍‌ରେ ବା ଗାଡ଼ି ଛାଡ଼ିବା ସମୟରେ ଷ୍ଟେସନରେ। ହାତ ହଲାଇ ସେ ଅଭିବାଦନ କରିଥାନ୍ତି। ଯାତ୍ରାପଥ ଆମ୍ଭମାନଙ୍କର ଅଲଗା। ଠିକ୍ ଦୁଇ ଟ୍ରେନ୍‌ର ବିପରୀତ ଗତିପଥ ଭଳି। ସେଥିପାଇଁ ମୋ ମନରେ ବା ରବି ରାୟଙ୍କ ମନରେ କେବେହେଲେ ଦୁଃଖ ବା ଅନୁଶୋଚନା ହେବାର ମୋର ମନେନାହିଁ। ଏ ମଧ୍ୟ ଏକ ଜୀବନ ଏବଂ ଆମେ ଏହାକୁ

ଆନନ୍ଦର ସହ ଗ୍ରହଣ କରି ନେଇଥିଲୁ। ବରଂ ରବି ରାୟଙ୍କ କାମରେ ଯେପରି କୌଣସି ଅଣହେଳା ନହୁଏ ସେଥିପାଇଁ ମୁଁ ଥିଲି ସର୍ବଦା ଚେଷ୍ଟିତ। ମୁଁ ଜାଣେ ସେ ଏକ ନିଷ୍ଠାପର ଦେଶସେବକ। ତାହାହିଁ ତାଙ୍କର ପ୍ରଥମ ଏବଂ ପ୍ରଧାନ ପରିଚୟ। ସେଥିରେ କୃତ୍ରିମତା, ଅନାଦର ବା ଅବହେଳା କରିବା ବିଷୟ ସେ କେବେହେଲେ କଳ୍ପନା କରିପାରନ୍ତି ନାହିଁ।

## ଦ୍ୱିତୀୟ ଓଡ଼ିଶା ଭବନ

ଦିଲ୍ଲୀରେ ସାଂସଦ ଥିବା ସମୟରେ ତାଙ୍କୁ ମିଳିଥିବା ସରକାରୀ କୋଠି ସମସ୍ତଙ୍କ ପାଇଁ ଥିଲା ସର୍ବଦା ଖୋଲା। ସେଠାରେ ତାଙ୍କ ଦଳର କିଛି କର୍ମକର୍ତ୍ତା ବିଭିନ୍ନ ସମୟରେ ତାଙ୍କ ଘରେ ରହୁଥିବା ଥିଲା ଏକ ସାଧାରଣ ଘଟଣା। ସେଦିନ ମୁଁ ଥିଲି ତାଙ୍କ ଘରେ। ଗୋଟିଏ କୋଠରିରେ ରାଧାକ୍ରିଷ୍ଣନ ବୋଲି ଜଣେ ଦକ୍ଷିଣଭାରତୀୟ ରହୁଥିଲେ। ସେ କୋଠରିଟିରେ କିଛି ବ୍ୟକ୍ତି ସେଦିନ ଭାରତର ବିଭିନ୍ନ ପ୍ରଦେଶରୁ ଆସି ରହିଥାନ୍ତି। ସମସ୍ତଙ୍କର ବିଛଣା ଏବଂ ବ୍ୟାଗ୍ ଅଲଗା ଅଲଗା ରଖା ଯାଇଥାଏ। ରାଧାକିଷନଙ୍କର ବ୍ୟାଗ୍ ମଧ ସେ ମଧରେ ଥିଲା। ଜଣେ ଟ୍ୟାକ୍ସିବାଲା ଆସି ସେ କୋଠରିଟିରେ ଥିବା ସମସ୍ତ ବିଛଣା ଏବଂ ସୁଟ୍‌କେଶ ନେଇ ଚାଲିଗଲା। ରାଧାକ୍ରିଷ୍ଣନ ନିଜେ ବସି ଖବରକାଗଜ ପଢୁଥିଲେ। ତାଙ୍କର ଧାରଣା ଥିଲା ଏମାନେ ନିଜ ନିଜ ଘରକୁ ଫେରିଯାଉଛନ୍ତି, ପରେ ଯେତେବେଳେ ନିଜେ ରାଧାକ୍ରିଷ୍ଣନ ଗାଧୋଇବାକୁ ଗଲେ, ତାଙ୍କର ସୁଟ୍‌କେଶ ନଥିବା ଦେଖିଲେ। ତାଙ୍କର ପିନ୍ଧିବା ପାଇଁ ଲୁଗା ମଧ ନଥିଲା। ମୁଁ ତାଙ୍କୁ ରବି ରାୟଙ୍କର ଏକ ଧୋତି ଏବଂ ସାର୍ଟ ଦେଲି। ସେ ପିନ୍ଧିଲେ। ରବି ରାୟ ଫେରିବାପରେ ତାଙ୍କୁ ନେଇ ବଜାରକୁ ଗଲେ ଏବଂ ତାଙ୍କ ପାଇଁ ଟ୍ରାଉଜର୍ ପଞ୍ଜାବୀ କିଣାଗଲା।

ଏ କଥା ଉଦ୍ଧାର କରିବାର ଅର୍ଥ ଯେ ରବି ରାୟଙ୍କ ଘର ଏଭଳି ଖୋଲାଘର ଯେ ଯିଏ ଆସେ ସେ ବିନାଦ୍ୱିଧାରେ ସେଠାରେ ରୁହେ। କେହି କାହାର ପରିଚ୍ୟ ଜାଣିବାର ଅବସର ନଥାଏ। ଘରେ ଯାହା ଭାତ ଡାଲମା ରନ୍ଧାଯାଇଥାଏ ସେ ସ୍ୱତଃ ଟା'ର ଭାଗୀଦାର ହୋଇଥାଏ। ରବି ରାୟଙ୍କ ଘରେ ଏହାଠାରୁ ଅଧିକ ଖାଦ୍ୟ ଜୁଟାଇବା ସମ୍ଭବ ହୋଇନଥାଏ। ସେ ନିଜେ ସାଥୀମେଳରେ ଏହି ଖାଦ୍ୟ ଉପଭୋଗ କରିଥାନ୍ତି। ବସ୍ତୁତଃ, ବନ୍ଧୁମେଳରେ ସମୟ କଟାଇବା ଓ ଆହାର କରିବା ଥିଲା ତାଙ୍କ ଜୀବନର ଏକ ଅତ୍ୟନ୍ତ ସୁଖଦ ଅନୁଭୂତି।

ଏହି ଖାଦ୍ୟ ସଂପର୍କରେ ବର୍ତ୍ତମାନର ସାଂସଦ ଶ୍ରୀଯୁକ୍ତ ଶରଦ ଯାଦବ ଏକ ମିଟିଂରେ କହୁଥିବା ମୁଁ ଶୁଣିଛି। ସେ ସେତେବେଳେ ସାଂସଦ ନଥାନ୍ତି ଏବଂ ରବି ରାୟଙ୍କ

ଘରେ ରହୁଥାନ୍ତି – ସାଂସଦ ହେବାପରେ ସେ ଏକଦା ରବି ରାୟଙ୍କ ଘରର ରହଣୀ ଓ ଖାଦ୍ୟ ବର୍ଣ୍ଣନା କରି ଥଟ୍ଟାରେ କହିଥିଲେ, "ପ୍ରତ୍ୟେକ ଦିନ ଭାତ ଓ ଡାଲମା, ଯେଉଁଦିନ ଡାଲମାରେ ଟିକିଏ ନଡ଼ିଆ ପଡ଼ିଥାଏ ତାହା ସୂଚାଇଥାଏ ଡାକ୍ତର ସରସ୍ୱତୀଙ୍କ ଆଗମନର ବାର୍ତ୍ତା, ସେଦିନ ଡାଲମାର ସ୍ୱାଦ ଟିକିଏ ବଦଳି ଥାଏ।"

ରବି ରାୟଙ୍କ ଓଡ଼ିଶା ସଂକ୍ରାନ୍ତରେ ଗଭୀର ଦୁଃଖ। ମାତୃଭୂମିର ଦାରିଦ୍ର୍ୟ। ସବୁ ଥାଇ ମଧ ଓଡ଼ିଶା ଦରିଦ୍ର। ସେତେବେଳେ ଦିଲ୍ଲୀରେ କେବଳ ମାତ୍ର ଗୋଟିଏ ଓଡ଼ିଶା ଭବନ ଥାଏ। ଓଡ଼ିଶା ନିବାସ ତିଆରି ହୋଇ ନଥାଏ। ଓଡ଼ିଶା ଭବନରେ ସମସ୍ତଙ୍କୁ ଜାଗା ମିଳେନାହିଁ, ବିଶେଷତଃ ଛାତ୍ର ଏବଂ ସାଧାରଣ ଲୋକେ ଏଥିପାଇଁ ବହୁ ଅସୁବିଧାର ସମ୍ମୁଖୀନ ହେବା ଥିଲା ଏକ ସାଧାରଣ କଥା। ଯେକୌଣସି ବ୍ୟକ୍ତି ଦିଲ୍ଲୀ ଆସୁଥିଲେ ବିଶେଷତଃ ଛାତ୍ରମାନେ ପୂର୍ବରୁ ଖବର ନ ଦେଇ ସିଧା ରବି ରାୟଙ୍କ ଘରେ ପହଞ୍ଚି ଯାଉଥିଲେ ରହିବାପାଇଁ। ରବି ରାୟ ଆନନ୍ଦରେ ସେମାନଙ୍କୁ ସ୍ୱାଗତ କରୁଥିଲେ। ସେଥିପାଇଁ ତାଙ୍କ କୋଠିକୁ 'ଦ୍ୱିତୀୟ ଓଡ଼ିଶା ଭବନ' ବୋଲି କୁହାଯାଉଥିଲା। ଦିଲ୍ଲୀ ଇଉନିଭରସିଟିରେ ଶିକ୍ଷକତା କରୁଥିବା ଶିକ୍ଷକମାନଙ୍କୁ ମଧ ଘର ମିଳେ ନାହିଁ। ସେ ମଧରୁ କିଛି ପରିବାର ନେଇ ରବି ରାୟଙ୍କର ୩୦ ଅତୁଲଗ୍ରୋଭ ରୋଡ଼ରେ ରହିଥିବା ମୁଁ ଦେଖିଛି। ସେ ମଧରେ ଲକ୍ଷ୍ମୀନାରାୟଣ ମହାପାତ୍ରଙ୍କୁ ମୋର ବେଶ୍ ମନେଅଛି। ବିଶେଷତଃ ତାଙ୍କ ମା'ଙ୍କର ଅନାବିଳ ସ୍ନେହ ଭୁଲିବା ସମ୍ଭବ ନୁହେଁ। ପୁଣି ବଦଳି ହୋଇ ଆସିଥିବା ରମେଶ ରଥ ମଧ ଥିଲେ ଆଉ ଜଣେ ବନ୍ଧୁ। କିଛିଦିନ ରହିବା ପରେ ସେ ଆମର ସାନଭାଇଠାରୁ ଅଧିକ ନିଜର ପାଲଟିଗଲେ। ଭାରତର ଯେକୌଣସି ଅଞ୍ଚଳରୁ ବିଶେଷତଃ ଓଡ଼ିଶାରୁ ଆସିଥିବା ଏବଂ ଆସୁଥିବା ଛାତ୍ର, ଡାକ୍ତରଖାନା (AIIMS) ପ୍ରଭୃତିରେ ଚିକିତ୍ସାପାଇଁ ଆସୁଥିବା ରୋଗୀ, IAS ଏବଂ IPS ପରୀକ୍ଷା ପ୍ରସ୍ତୁତି ନିମନ୍ତେ ଆସୁଥିବା ଯୁବକ, କଲେଜ ହଷ୍ଟେଲରେ ଜାଗାର ଅଭାବ ଥିଲେ ଏବଂ ସରକାରୀ ଓ ବେସରକାରୀ ଚାକିରି କରିଥିବା ବ୍ୟକ୍ତିମାନେ ରବି ରାୟଙ୍କ ଘରେ ଅନାୟାସରେ ମାସ ମାସ ଧରି ରହିବା ଥିଲା ଏକ ସାଧାରଣ ଘଟଣା।

ଥରେ କେତେକ କଲେଜଛାତ୍ର ଦିଲ୍ଲୀ ଭ୍ରମଣରେ (Excursion) ଆସିଥିଲେ। ସେମାନଙ୍କ ସଂଖ୍ୟା ଥିଲା ବହୁତ କୌଣସିଠାରେ ଜାଗା ମିଳି ନଥିଲା। ରାୟଙ୍କ ଘରେ ମଧ ଯାଗା କୁଳାଇବା ସମ୍ଭବ ନଥିଲା। ଶେଷରେ ସେମାନେ ରାୟଙ୍କର ଶୋଇବା ଘରକୁ ମଧ ଦଖଲ କରି ନେଇଥିଲେ। ରାୟ ନ ଥିଲେ। ତାଙ୍କର ବନ୍ଧୁ ତଥା ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ସହ କୌଣସି ଏକ ସ୍ଥାନକୁ ମିଟିଂ

ପାଇଁ ଯାଇଥିଲେ। ଫେରିଲେ ପ୍ରାୟ ରାତ୍ରି ୧୨ଟାରେ। ଦେବୀବାବୁଙ୍କ ଦିଲ୍ଲୀ ରହଣୀ ସର୍ବଦା ଥାଏ ରାୟଙ୍କ ଘରେ। ଦୁହେଁ ଫେରି ଘରର ଅବସ୍ଥା ଦେଖି ନିଜେ ଖଟତଳେ ଚଦର ବିଛାଇ ଶୋଇଗଲେ। ଦୁହେଁ ଥିଲେ ଅତ୍ୟନ୍ତ ଛାତ୍ରବତ୍ସଳ। ଛାତ୍ରମାନେ ବିନା ଅନୁମତିରେ ଘର ଦଖଲ କରିଥିବାରୁ ଦୁହେଁ ଥିଲେ ଅତ୍ୟନ୍ତ ଆନନ୍ଦିତ। "ଏହିମାନେ ତ ଦେଶର ଭବିଷ୍ୟତ। ଏ ସ୍ୱାଧୀନତା ସେମାନଙ୍କର ଅଧିକାର।"

## ବାଚସ୍ପତି ବଛାଯିବାର ପୂର୍ବରାତ୍ରୀ

ବାଚସ୍ପତି ବଛାଯିବାର ପୂର୍ବରାତି – ରବି ରାୟ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲେ। ଫୋନ୍ ଆସିଲା ଆଉ ଜଣେ ବନ୍ଧୁଙ୍କଠାରୁ (ବୋଧହୁଏ ଶରଦ ଯାଦବ)। ଭି.ପି. ସିଂହ ତାଙ୍କୁ ବାଚସ୍ପତି ପଦ ଗ୍ରହଣ କରିବାକୁ ଅନୁରୋଧ କରିଛନ୍ତି। ରବି ରାୟ ଆଶ୍ଚର୍ଯ୍ୟ। ଫେରିଲେ ବନ୍ଧୁଙ୍କ ଘରୁ। ଆସନ୍ତା କାଲି ବାଚସ୍ପତି ଭାବେ ବଛାହେବେ। ଜନତା ଦଳରୁ ରବି ରାୟ, କଂଗ୍ରେସର ବୋଧହୁଏ ଠିକଣା ହୋଇ ନଥାଏ। ରାଜୀବଗାନ୍ଧି ଥାଆନ୍ତି କଂଗ୍ରେସର ନେତା ଏବଂ ବିରୋଧୀ ଦଳର ନେତା। ସେ ବିରୋଧ କଲେ – ବାଚସ୍ପତି ସର୍ବସମ୍ମତି କ୍ରମେ ହେବା କଥା। ତାଙ୍କୁ ନ ପଚାରି ଭି.ପି. ସିଂ କିପରି ରବି ରାୟଙ୍କୁ ବାଚସ୍ପତି ଭାବେ ମନୋନୀତ କଲେ? କିନ୍ତୁ ଯେହେତୁ ରବି ରାୟଙ୍କୁ ବଛା ଯାଉଥିଲା ସେ ବିନା ଆପତ୍ତିରେ ତାଙ୍କର ପ୍ରାର୍ଥୀତ୍ୱକୁ ଗ୍ରହଣ କରିନେଲେ। ତାଙ୍କର ଉତ୍ତର ଥିଲା "ଆମେ ରବି ରାୟଙ୍କୁ ପ୍ରତିଦ୍ୱନ୍ଦ୍ୱିତା କରିବୁ ନାହିଁ।" ରବି ରାୟ ବିନା ପ୍ରତିଦ୍ୱିନ୍ଦ୍ୱିତାରେ ବାଚସ୍ପତି ନିର୍ବାଚିତ ହେଲେ। ସେ ବାଚସ୍ପତି ପଦ ଗ୍ରହଣ କରିବାବେଳେ ମୁଁ ଦିଲ୍ଲୀ ଯାଇ ନଥିଲି – ଏହା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲା।

ରବି ରାୟଙ୍କୁ ଶପଥ ପାଠ କରିବା ବେଳେ ସ୍ୱତନ୍ତ୍ର ପୋଷାକ ପିନ୍ଧିବାକୁ ପଡ଼ିବ – ଯାହା ତାଙ୍କର ନଥିଲା। ସେ ସର୍ବଦା ଟ୍ରାଉଜର ପଞ୍ଜାବୀ ବା ଧୋତି ପଞ୍ଜାବୀ ପିନ୍ଧୁଥିଲେ। ପୋଷାକ ତିଆରି ପାଇଁ ଦରଜୀକୁ ଡକାହେଲା। ସାରା ରାତି ଲୋକ ଲଗାଇ ଭବିଷ୍ୟତ ବାଚସ୍ପତିଙ୍କ ପାଇଁ ପୋଷାକ ତିଆରି ହେଲା। ରବି ରାୟ ପରଦିନ ସେଇ ପୋଷାକ ପିନ୍ଧି ପାର୍ଲିଆମେଣ୍ଟ ଗଲେ ଶପଥ ନେବାକୁ। ତାଙ୍କୁ ଉଭୟ ଭି.ପି. ସିଂହ ଏବଂ ରାଜୀବଗାନ୍ଧି ପାଛୋଟି ନେଇଥିଲେ।

## ଜୀବନଶୈଳୀ

ପୂର୍ବତନ ବାଚସ୍ପତି ବଳରାମ ଝାକରଙ୍କ ଥିଲା ଏକ ବିରାଟ ଗାଡ଼ି, ଯାହା ରବି ରାୟଙ୍କୁ ମିଳିଲା ବ୍ୟବହାର ପାଇଁ – ମାତ୍ର ସେ ସେଭଳି ମୂଲ୍ୟବାନ୍ ଆରାମଦାୟକ

ଗାଡ଼ି ବ୍ୟବହାର କରିବାକୁ ମନାକଲେ – ତାଙ୍କୁ ଭାରତ ତିଆରି ଏକ ସାଧାରଣ ଆମ୍ବାସାଡ଼ାର ଗାଡ଼ି ଦରକାର – ତାହା ତାଙ୍କୁ ପରେ ଯୋଗାଇ ଦିଆଗଲା – ବଡ଼ ଗାଡ଼ି ଭାରତ ପାର୍ଲିଆମେଣ୍ଟକୁ ଆସୁଥିବା ବିଦେଶୀ ବିଶିଷ୍ଟ ଅତିଥିମାନଙ୍କ ବ୍ୟବହାର ପାଇଁ ରଖାଗଲା ।

ରବି ରାୟଙ୍କର ନିଜର କୌଣସି ଗାଡ଼ି ନଥିଲା । ପାର୍ଲିଆମେଣ୍ଟ ତରଫରୁ ମିଳିଥିବା ସେଇ ଗୋଟିଏ ଗାଡ଼ିରେ ସେ ଏବଂ ତାଙ୍କର ସହକାରୀମାନେ ଏକାଠି ପାର୍ଲିଆମେଣ୍ଟକୁ ଯାଉଥିଲେ । ଯେଉଁଦିନ ବାଚସ୍ପତି ପଦ ଛାଡ଼ିଲେ ସେଇଦିନ ସେ ଗାଡ଼ି ଏବଂ ଡ୍ରାଇଭରଙ୍କୁ ଫେରାଇ ଦେଇ ନିଜେ ବସ୍‌ରେ ପାର୍ଲିଆମେଣ୍ଟକୁ ଗଲେ ଏବଂ ଯେତେଦିନ ପର୍ଯ୍ୟନ୍ତ ସେ ସାଂସଦ ଥିଲେ ପାର୍ଲିଆମେଣ୍ଟ ବସ୍‌ରେ ହିଁ ଯିବା ଆସିବା କରୁଥିଲେ । ତାଙ୍କର ଅମାୟିକ ସ୍ନେହ ଓ ବ୍ୟବହାର ଯୋଗୁଁ ତାଙ୍କର ସବୁ କର୍ମଚାରୀ ଅତ୍ୟନ୍ତ ଖୁସିଥିଲେ ଏବଂ ନିର୍ଭୟରେ କାମ କରୁଥିଲେ । ତାଙ୍କ ପାଖରେ ରହିବା ପାଇଁ ସମସ୍ତେ ଚାହୁଁଥିଲେ । ସେ ମଣିଷକୁ ମଣିଷ ଭାବରେ ବିଚାର କରୁଥିଲେ । କର୍ମଚାରୀ ମଧ ଜଣେ ମଣିଷ । ସମସ୍ତଙ୍କୁ ସମ୍ମାନ ଦେବା ଥିଲା ତାଙ୍କର ସ୍ୱତନ୍ତ୍ର ଗୁଣ । କାହାରିକୁ ସାନ ବୋଲି ବିଚାର କରିବା ଥିଲା ତାଙ୍କ ଚିନ୍ତାର ବାହାରେ । ସେଦିନ ବାଚସ୍ପତି ସମୟରେ ତାଙ୍କ ପାଖରେ ଥିବା ଡ୍ରାଇଭର ତାଙ୍କୁ ଦୁଃଖରେ ଅତ୍ୟନ୍ତ ବିକଳ ହୋଇ ଅନୁରୋଧ କଲା "ମୋତେ ଆଉ ଗୋଟିଏ ସପ୍ତାହ ରଖନ୍ତୁ ।" ରବି ରାୟ ବିନମ୍ର ଭାବରେ ତା' ପିଠିରେ ସସ୍ନେହ ହାତ ଥାପୁଡ଼ାଇ ତାକୁ ଫେରାଇ ଦେଲେ । ଡ୍ରାଇଭରର ନାମ ଥିଲା ପଣ୍ଡିତ । ପରେ ବହୁଥର ସେ ରାୟଙ୍କ କୋଠରିକୁ ଆସିଛି ତାଙ୍କୁ କେବଳ ନମସ୍କାର ଜଣାଇବାକୁ ।

କେନ୍ଦ୍ରାପଡ଼ାରୁ ନିର୍ବାଚନ ଲଢ଼ିବାବେଳେ, ତାଙ୍କ ଗାଡ଼ିରୁ ଜିନିଷପତ୍ର, ପୋଷ୍ଟର, ବ୍ୟାନର କାଢ଼ି ସେଠିକା ଅଫିସରେ ରଖିବା ପାଇଁ ଜଣେ ଶ୍ରମିକ ତାଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କର ରବି ରାୟଙ୍କୁ ଅନୁରୋଧ ଥିଲା, "ଜିତିଲା ପରେ ମୋ ଘରକୁ ଟିକେ ଆସିବେ" – ରବି ରାୟ ପ୍ରତିଶ୍ରୁତି ଦେଇଥିଲେ – କିନ୍ତୁ ସେ ବାଚସ୍ପତି ହୋଇଗଲେ – ସମୟ କରି ପାରିଲେ ନାହିଁ; ମାତ୍ର ପ୍ରଥମଥର କେନ୍ଦ୍ରାପଡ଼ା ଗସ୍ତବେଳରେ ସେ ସେଇ ଲୋକଟିକୁ ଖୋଜି ତାକୁ ଦେଖିବାପାଇଁ ତା'ଘରକୁ ଯାଇଥିଲେ । ତା'ର ଆନନ୍ଦ, ଖୁସି ଦେଖିବ କିଏ ? "ଭାରତର ବାଚସ୍ପତି ତାକୁ ଦେଖିବାକୁ ତା' ଘରକୁ ଆସିଛନ୍ତି ।"

ରବି ରାୟ ସାଧାରଣତଃ କୌଣସି କାର୍ଯ୍ୟରେ, ତାହା ଯେତେ ଅସୁବିଧା ବା ଦୁଃଖଜନକ ହୋଇଥିଲେ ସୁଦ୍ଧା ବିଚଳିତ ହେବାର କେହି କେବେ ଦେଖିନାହିଁ । ସେଥିପାଇଁ ତାଙ୍କର କିଛି ବନ୍ଧୁ ତାଙ୍କୁ "ନିଦାବିଷ୍ଣୁ" ଏବଂ "ପୁରୀ ବରଗଛ" ଆଖ୍ୟା ଦେବାର ମୁଁ

ଶୁଣିଛି। "ରବି ରାୟ ପ୍ରଥମ ଥର ନିର୍ବାଚନ ପୁରୀରୁ ଲଢ଼ିଥିଲେ ଏବଂ କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ ବିଭୁଧେନ୍ଦୁ ମିଶ୍ରଙ୍କୁ ହରାଇ ୬୦ ହଜାରରୁ ଅଧିକ ଭୋଟରେ ଜିତିଥିଲେ। ସେତେବେଳେ ତାଙ୍କର ନିର୍ବାଚନ ପ୍ରତୀକ (Election Symbol) ଥିଲା ବରଗଛ।" ବନ୍ଧୁମାନଙ୍କ ଗହଣରେ ଏବଂ ସେମାନଙ୍କ ଥଟ୍ଟା ପରିହାସକୁ ସେ ସର୍ବଦା ଆନନ୍ଦର ସହ ଗ୍ରହଣ କରିଥାନ୍ତି।

ରବି ରାୟଙ୍କୁ ସାଧାରଣତଃ ଦୁଃଖି ହେବାରେ ମୁଁ କେବେ ଦେଖିନାହିଁ। ଅର୍ଥ ଅଭାବ ସର୍ବଦା ରହିଥିଲା, ସେଥିପାଇଁ କେବେହେଲେ ବିଚଳିତ ହେବାର ମୁଁ ଜାଣିନାହିଁ। କେବଳ ଥରେମାତ୍ର ଏହାର ବ୍ୟତିକ୍ରମ ଘଟିଥିବାର ମୋ ନଜରକୁ ଆସିଛି। ସେଦିନ ଏକ ନିର୍ବାଚନ ପରେ ମୁଁ ରହୁଥିବା ମେଡ଼ିକାଲ କଲେଜ କ୍ୱାଟରର ବାହାର ବାରଣ୍ଡାରେ ଥିବା ସିମେଣ୍ଟ ପିଣ୍ଡା ଉପରେ ସେ ଏକା ବସିଥିବାର ମୁଁ ଲକ୍ଷ୍ୟକଲି। ଏହା ମୋତେ ଅତ୍ୟନ୍ତ ଅସ୍ୱାଭାବିକ ଲାଗିଥିଲା। ମନେ ହେଉଥିଲା ସେ ଯେପରି ଦୁଃଖରେ ଭାଙ୍ଗି ପଡ଼ିଛନ୍ତି। କାରଣ ମୁଁ ଜାଣିପାରୁ ନଥିଲି, ପଚ୍ଚରିଲି। ଉତ୍ତର ନ ଦେଇ, ତାଙ୍କର ମୋତେ ପ୍ରଶ୍ନ ଥିଲା "ମୋତେ ନ ପଚ୍ଚରି ତୁମେ ଗହଣା ବିକ୍ରି କଲ କାହିଁକି ?" ଦୁଃଖି ହେବାର କାରଣ ମୁଁ ଜାଣିଗଲି। ରବି ରାୟଙ୍କ ନିର୍ବାଚନରେ ଖର୍ଚ୍ଚ ବିଶେଷ ହୁଏନାହିଁ, ବନ୍ଧୁମାନେ ବହୁ ବୋଝ ତୁଲେଇଥାନ୍ତି; ମାତ୍ର ସେଥର କିଛି ଲୋକ ରବି ରାୟ ନଥିବା ସମୟରେ ମୋତେ ଆସି ଟଙ୍କା ମାଗିଥିଲେ, ନିର୍ବାଚନରେ ସେମାନେ କୁଆଡ଼େ ରବି ରାୟଙ୍କ ପାଇଁ ତାଙ୍କର କିଛି ଜମି ବିକ୍ରି କରିଦେଇଛନ୍ତି। ମୋତେ ଏହା ଅତ୍ୟନ୍ତ ଦୁଃଖ ଦେଇଥିଲା – ରବି ରାୟଙ୍କୁ ନ କହି ମୁଁ ମୋର କିଛି ଗହଣା ବିକ୍ରି କରି ସେମାନଙ୍କ ଋଣ ପରିଶୋଧ କରିଥିଲି ଏବଂ ଏହା କାହାରିକୁ ନ କହିବା ପାଇଁ ତାଙ୍କଠାରୁ ପ୍ରତିଶ୍ରୁତି ନେଇଥିଲି। କଥାଟା ଲୁଚିଲା ନାହିଁ। ବହୁଦିନ ପରେ ଜଣାଗଲା ଏବଂ ତାହା ଥିଲା ରବି ରାୟଙ୍କ ଦୁଃଖର କାରଣ। ମୋ ପାଇଁ ସେ କିଛି କରିପାରୁ ନଥିବା ବେଳେବେଳେ ପ୍ରକାଶ କରିଥାନ୍ତି, ମୁଁ କଥାକୁ ହାଲୁକା କରିଦିଏ "ମୋର ଆବଶ୍ୟକତା ହେଲେ ମୁଁ କହିବି।" ଘଟଣା ସେ ଠିକ୍ ବୁଝନ୍ତି, ମୁଁ ମଧ୍ୟ କଥାକୁ ଆଗକୁ ଫେଣାଏ ନାହିଁ। ସାଂସାରିକ ଜ୍ଞାନ, ଧାରଣା ତାଙ୍କର ବହୁତ ସୀମିତ - ପ୍ରାୟ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ। ଖୋଲାଖୋଲି ନିଜର ଅପାରଗତା ପ୍ରକାଶ କରିବାରେ ଦ୍ୱିଧା ଆଦୌ ନଥାଏ।

ଆଉ ଏକ ଘଟଣା - ରବି ରାୟ ସ୍ୱାସ୍ଥ୍ୟମନ୍ତ୍ରୀ – କଟକ ମେଡ଼ିକାଲ କଲେଜରେ ତାଙ୍କୁ ସମ୍ବର୍ଦ୍ଧନା ଦେବାର ଭବ୍ୟ ଆୟୋଜନ – ପ୍ରିନ୍ସିପାଲ ଥିଲେ ଡକ୍ଟର ମଧୁସୂଦନ ଖାଡ଼ଙ୍ଗା। ମୁଁ ଏ ଆୟୋଜନରେ ଅର୍ଥବ୍ୟୟର ବିରୋଧ କରିଥିଲି, ମାତ୍ର ମୋର ବିରୋଧ

ଗ୍ରାହ୍ୟ ହୋଇନଥିଲା। ମୁଁ ଯେଉଁ ବିଭାଗର ମୁଖ୍ୟ ତା'ର ତଳ ପଡ଼ିଆରେ ଆୟୋଜନ କରାଯାଉଥାଏ, ମୁଁ ଉପରୁ ଥାଇ ଏ ସବୁକୁ ଲକ୍ଷ୍ୟ କରୁଥିଲି। ରବି ରାୟଙ୍କ ପାଇଁ ଏ ଆୟୋଜନ, ଏ ଅର୍ଥବ୍ୟୟ, ଏ ଆଡ଼ମ୍ବର ମୋର ଅସହ୍ୟ ହେବା ଥିଲା ସ୍ୱାଭାବିକ। ସଭା ଆରମ୍ଭ ହେଲା – ଖୋଜା ପଡ଼ିଥିଲା ମୋତେ। ସାଧାରଣତଃ ମୋତେ ଖୋଜିବାର କୌଣସି କାରଣ ନଥିଲା। – ଅନ୍ୟ ଶିକ୍ଷକମାନଙ୍କ ଭଳି ମୁଁ ଥିଲି ଜଣେ ସେଇ କଲେଜର ଶିକ୍ଷକ। ମାତ୍ର ସେଦିନ ଖୋଜିବାର ଉଦ୍ଦେଶ୍ୟ ଥିଲା – ମୁଁ ଥିଲି ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପତ୍ନୀ। ମିଟିଂର ବହୁପୂର୍ବରୁ ମୁଁ ସେଦିନ ମୋର ଜଣେ ବାନ୍ଧବୀ ଡାକ୍ତର ନଳିନୀ ନାୟକଙ୍କ ଘରକୁ ଚାଲିଗଲି – ଫେରିଲି ସମ୍ବର୍ଦ୍ଧନା ଶେଷରେ। ରବି ରାୟ ମୋତେ ଘରେ ଦେଖି ସଭାକୁ ମୁଁ ଯାଇନାହିଁ ଜାଣି ଖୁସିରେ ମୋ ପିଠି ଥାପୁଡ଼େଇ କହିଥିଲେ – "ଭଲ କରିଛ।" ଏହାପରେ ଆଉ କୌଣସି ଆଡ଼ମ୍ବରପୂର୍ଣ୍ଣ ସଭା ଓଡ଼ିଶାରେ ଘଟିଥିବା ମୋର ମନେ ନାହିଁ।

ସ୍ୱାସ୍ଥ୍ୟମନ୍ତ୍ରୀ ଭାବରେ କଟକ ମେଡ଼ିକାଲ କଲେଜର ଚକ୍ଷୁ ବିଭାଗକୁ କିଛି ମୂଲ୍ୟବାନ୍ ଯନ୍ତ୍ରପାତି ସେ ଅନୁଦାନ ଦେଇଥିଲେ। ଦ୍ୱିତୀୟଥର ଆସିବା ପରେ ସେ ଯନ୍ତ୍ରପାତିର ବ୍ୟବହାର ଦେଖିବାପାଇଁ ସେ ସେହି ବିଭାଗକୁ ଯାଇଥିଲେ – ତାଙ୍କର ଦୁଃଖ ହେଲା ଯେ ଯନ୍ତ୍ରପାତିର ପେଟିସବୁ ସେଇମିତି ରହିଛି, ଖୋଲାଯାଇ ନାହିଁ।

ମୋର ଅତୀତର ଏକ ଘଟଣା ମନେପଡ଼ିଥିଲା। ରବି ରାୟ ଥିଲେ ବାଚସ୍ପତି, ମୁଁ ତାଙ୍କ ଗାଡ଼ିରେ ଦିନେ ହେଲେ ବସିଥିବା ମୋର ମନେନାହିଁ – ମୁଁ ଜାଣେ ଏହା ସରକାରୀ ଗାଡ଼ି, ମୁଁ ବେସରକାରୀ ବ୍ୟକ୍ତି। ମୁଁ କେଉଁଆଡ଼େ ଯିବାର ଥିଲେ ଅଲଗା ଗାଡ଼ି ନେଇ ଯାଇଥାଏ। ରବି ରାୟଙ୍କ ଦେହରକ୍ଷୀ (Security) ମାନେ ଥରେ ଆସି ମୋ ଗୋଡ଼ ଧରିଲେ – "Madam ଆମ ଚାକିରି ରଖନ୍ତୁ।" "ଏମାନେ କିଏ ମୁଁ ଜାଣେନା, ତାଙ୍କ ଚାକିରି ମୁଁ କାହିଁକି ନେବି?" କାରଣ ଥିଲା ଭିନ୍ନ। ସେତେବେଳେ ଭାରତର ଗୃହମନ୍ତ୍ରୀ ମୁଫତି ମହମ୍ମଦଙ୍କ କନ୍ୟାକୁ ହରଣ କରି ନିଆଯାଇଥାଏ। ମୁଁ ଯଦି ଦେହରକ୍ଷୀ ବିନା ବେସରକାରୀ ଗାଡ଼ିରେ ଯିବି ତାହେଲେ ମୋତେ ମଧ୍ୟ ହରଣ କରି ନିଆଯିବାର ଆଶଙ୍କାକୁ ଏଡ଼େଇ ହେବ ନାହିଁ। ଏଣୁ ମୁଁ କୁଆଡ଼େ ଗଲେ ଦେହରକ୍ଷୀ ନେଇ ଯିବାକୁ ଏବଂ ସରକାରୀ ଗାଡ଼ି ବ୍ୟବହାର କରିବାକୁ ଥିଲା ସେମାନଙ୍କର ଅନୁରୋଧ; ମାତ୍ର ମୁଁ ସେବେଠାରୁ ଆଉ ଘରୁ ବାହାରକୁ ଯାଇନାହିଁ। ସରକାରୀ ଗାଡ଼ି ବ୍ୟବହାର କରିବା ଅନ୍ୟାୟ। ଏଥିପାଇଁ ରବିରାୟ ମୋତେ ପ୍ରୋତ୍ସାହନ ଦେଇନଥିଲେ, ମୁଁ ଏ ଧରଣର କାର୍ଯ୍ୟ କରିବାକୁ ସାହସ କରିପାରି ନଥାନ୍ତି।

ରବି ରାୟଙ୍କ ଜୀବନଶୈଳୀ ଥିଲା ଅତ୍ୟନ୍ତ ସରଳ। ଆବଶ୍ୟକତା ଥିଲା ଅତ୍ୟନ୍ତ ସ୍ୱଳ୍ପ। ତାଙ୍କର ଜଣେ ବନ୍ଧୁ (ରସାନନ୍ଦ ମହାନ୍ତି, ସେ ଆଜି ଇହଲୋକରେ ନାହାନ୍ତି) ଥରାରେ କହିଥାନ୍ତି, "ମୁଠାଏ ଚୂଡ଼ା ଏବଂ ଖଣ୍ଡେ ସନ୍‌ଲାଇଟ୍ ସାବୁନ ହେଲେ ରବିର ଆଉ କିଛି ଲୋଡ଼ା ନଥାଏ।" ରବି ରାୟ ଭୋଜନପ୍ରିୟ; ମାତ୍ର ଗରିଷ୍ଠ ବା ମହାର୍ଘ ଖାଦ୍ୟ ଖାଇବାରୁ ସେ ବିରତ ହେବା ମୁଁ ଦେଖିଛି। ତାଙ୍କ ମତରେ ଖାଦ୍ୟ ସରଳ ଏବଂ ପୁଷ୍ଟିକର ହେବା ଲୋଡ଼ା। ଯାହା ଖାଇବାକୁ ଦିଆଁଯାଏ ଆଦରର ସହ ସେ ତାକୁ ଭୋଜନ କରିଥାନ୍ତି। ଖାଦ୍ୟ ସଂପର୍କରେ କୌଣସି ଅରୁଚିକର ମନ୍ତବ୍ୟ କେବେହେଲେ ଦେବା ମୁଁ ଦେଖିନାହିଁ। ତାଙ୍କର ପରିଧାନ ମଧ ଥିଲା ଅତ୍ୟନ୍ତ ସାଦାସିଧା। ଧଳାଖଦଡ଼ ଧୋତିପଞ୍ଜାବୀ ଥିଲା ଅତ୍ୟନ୍ତ ପ୍ରିୟ। ପ୍ରତ୍ୟହ ସାବୁନ ଦେଇ ହାତରେ ଲୁଗା କାଚିବା ଥିଲା ଅଭ୍ୟାସ ଅବ୍ୟାହତ। ମାତ୍ର ମନ୍ତ୍ରୀ ଓ ବାଚସ୍ପତି ଥିବା ସମୟରେ ପିନ୍ଧା ପୋଷାକ ଧୋବାକୁ ଦେଉଥିଲେ।

ରାୟଙ୍କ ଭଳି ଧନ, ଅର୍ଥ ବା ପଦପଦବୀ ପ୍ରତି ମୋହ ନଥିବା ବ୍ୟକ୍ତି ଯେ ଅତ୍ୟନ୍ତ ବିରଳ ତାହା ସ୍ୱୀକାର କରିବାରେ ମୋର ଆଦୌ କୁଣ୍ଠା ନାହିଁ। ଦିଲ୍ଲୀରେ ବହୁବର୍ଷ ପାର୍ଲାମେଣ୍ଟ ମେମ୍ବର ଥିଲେ ମଧ ଶସ୍ତାରେ ସରକାରଙ୍କ ତରଫରୁ ଯୋଗାଇ ଦିଆଯାଉଥିବା ଘର, କମ୍ପ୍ୟୁଟର, ରେଫ୍ରିଜେରେଟର ସେ କେବେହେଲେ କିଣି ନଥିଲେ। ତାଙ୍କ ମତରେ ଅନାବଶ୍ୟକ ଭାବରେ ଦିଲ୍ଲୀରେ ରହିବାର ପ୍ରଶ୍ନ ଉଠେନା। ଏଣୁ ଏ ସବୁ ପଦାର୍ଥର ଆବଶ୍ୟକତା ନାହିଁ। ନିଜର ଗାଡ଼ି କେବେହେଲେ ନଥିଲା। ଆଜି ମଧ ନାହିଁ। ପ୍ରଖ୍ୟାତ ସ୍ତମ୍ଭକାର ବନ୍ଧୁ କୁଳଦୀପ୍ ନାୟାର୍‌ଙ୍କ ଭାଷାରେ "ସରସ୍ୱତୀ ଚାକିରି କରି ନଥିଲେ ରବିକୁ ଭୋକରେ ରହିବାକୁ ପଡ଼ିଥାନ୍ତା।"

ଦୁର୍ନୀତି ବିରୁଦ୍ଧରେ ସାଲିସ ବିହୀନ ଲଢ଼େଇ କରିବା, ଲୋଭ-ଲାଭଠାରୁ ନିଜକୁ ମୁକ୍ତ କରି ରଖିବା, ଶାଳୀନତାର ଲକ୍ଷ୍ମଣରେଖାକୁ ନ ଡେ଼ଇଁ ଦୃଢ଼ତାର ସହ ଅନ୍ୟାୟର ପ୍ରତିବାଦ କରିବାପାଇଁ ଯେଉଁ ପ୍ରାଣଶକ୍ତି ଲୋଡ଼ା, ଯେଉଁ ସାହସର ଆବଶ୍ୟକ ତାହା ତାଙ୍କଠାରେ ଯେ ପ୍ରଚୁର ପରିମାଣରେ ରହିଥିଲା ସେଥିରେ ସନ୍ଦେହ ନାହିଁ। ଜୀବନରେ କୌଣସି ନିଶାଦ୍ରବ୍ୟର ପାଖ ମାଡ଼ି ନଥିବା ରବି ରାୟଙ୍କର ହୃଦ୍‌ରୋଗରେ ଆକ୍ରାନ୍ତ ହେବା ତାଙ୍କ ଚିକିତ୍ସକମାନଙ୍କୁ ଆଶ୍ଚର୍ଯ୍ୟ କରିଥିଲା। ଦେଶ ସେବା ହିଁ ଥିଲା ତାଙ୍କର ଏକମାତ୍ର ନିଶା।

ଜଣେ ଏତେ ଉଦାର, ଦରଦୀ, ନିଷ୍କଳଙ୍କ, ନିରୀହ ମଣିଷଟିର ଘନିଷ୍ଠ ସଂପର୍କରେ ଆସି ମଧ ତାଙ୍କୁ ଆକଳନ କରିବା ମୋ ପକ୍ଷରେ ସମ୍ଭବ ହୋଇପାରି ନାହିଁ।

ସେ ଚେଷ୍ଟା ବି ମୁଁ କେବେହେଲେ କରି ନାହିଁ। ଯାହା କହିବାକୁ ଚାହେଁ ତା'ଠାରୁ ବହୁ କଥା ଅକୁହା ରହିଯାଏ। ଏ ବିଫଳତା ମୁଁ ଅଙ୍ଗେ ନିଭାଇଛି। ଏହି ଅପୂର୍ଣ୍ଣତା ଭିତରେ ହିଁ ବୋଧହୁଏ ପୂର୍ଣ୍ଣତାର ପରିପ୍ରକାଶ ସମ୍ଭବ। ମୋ ଜୀବନ ଲମ୍ବିଯାଇଛି ବହୁଦୂର। ପଛକୁ ଚାହିଁଲେ ସବୁ ଝାପ୍‌ସା ଦିଶେ। ସବୁ କଥାକୁ ଗୋଟାଇ ପାରିବା ସମ୍ଭବ ହୋଇପାରୁ ନାହିଁ।

ଆଉ ଗୋଟିଏ ଛୋଟ ଘଟଣା ଉଦ୍ଧାର ନ କରି ରହି ପାରୁନାହିଁ। ରବି ରାୟ ସେତେବେଳେ କେନ୍ଦ୍ରରେ ସ୍ୱାସ୍ଥ୍ୟମନ୍ତ୍ରୀ। ଓଡ଼ିଶାରେ ଶ୍ରୀଯୁକ୍ତ ପ୍ରଦୀପ୍ତକିଶୋର ଦାସ ଥିଲେ ଶିକ୍ଷା ଏବଂ ସ୍ୱାସ୍ଥ୍ୟମନ୍ତ୍ରୀ। ପ୍ରଦୀପ୍ତବାବୁ ରବି ରାୟଙ୍କଠାରୁ ବୟସରେ ବଡ଼ ହେଲେ ମଧ୍ୟ ଥିଲେ ସହକର୍ମୀ ଏବଂ ସୋସିଆଲିଷ୍ଟ ଦଳର ଜଣେ ଟାଣୁଆ ନେତା। ତାଙ୍କର ଆଦର୍ଶବାଦ, ଅନ୍ୟକୁ ଭଲପାଇବା, ଉଦାରତା ସଂପର୍କରେ ତାଙ୍କର ଶତ୍ରୁ ମଧ୍ୟ ଅଙ୍ଗୁଳି ଉଠାଇ ପାରି ନାହିଁ।

ମୁଁ ସେତେବେଳେ କଟକ ମେଡ଼ିକାଲ କଲେଜରେ ଥିଲି ପ୍ରଫେସର। ମୋର ଏକ ବଡ଼ଧରଣର ଅପରେସନ ହେବାର ଥାଏ। ମୁଁ ଠିକଣା କରିଥିଲି ମୋ ଅପରେସନ ଏଇଠାରେ ଏବଂ ଏହି ଡାକ୍ତରଖାନାରେ ହିଁ ହେବ। ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପତ୍ନୀଙ୍କର କଟକ ମେଡ଼ିକାଲ କଲେଜରେ ଅପରେସନ ନ କରାଇ ସେତେବେଳର ପ୍ରିନ୍ସିପାଲ ଡାକ୍ତର ମଧୁସୂଦନ ଖାଡ଼ଙ୍ଗା ଏବଂ ପ୍ରସୂତି ବିଭାଗର ମୁଖ୍ୟ ଡାକ୍ତର ସୁକୁମାର ମିତ୍ର ମୋତେ ବୁଝାଇବାକୁ ଚାହିଁଲେ, ଏବଂ ଦିଲ୍ଲୀ AIIMSକୁ ଯିବାପାଇଁ ଅନୁରୋଧ କରିଥିଲେ।

ମୋର ସେମାନଙ୍କୁ ଥିଲା ପ୍ରଶ୍ନ "ମୋର ଯଦି ମୋ ମେଡ଼ିକାଲ କଲେଜ, ଯେଉଁଠି ମୁଁ ପାଠ ପଢ଼ିଛି, ପ୍ରଫେସର ହୋଇଛି ସେଠାରେ ଅପରେସନ (ତାହା ଯେତେବଡ଼ ହେଉପଛେ) କରା ନ ଯିବ, ତାହେଲେ ଅନ୍ୟ କିଏ କାହିଁକି ଏଠାକୁ ଆସିବେ ? ରୋଗୀ ମଧ୍ୟରେ ବାଛ ବିଚାର ନ କରିବାପାଇଁ ଆମ୍ଭେମାନେ ଭାଷଣ ଦେଉ କିନ୍ତୁ କାର୍ଯ୍ୟକ୍ଷେତ୍ରରେ ତାହା କରାଯାଏନା। ସେମାନଙ୍କର ଅନୁରୋଧ (?) ମୁଁ ରଖି ନଥିଲି। ମୋର ଦ୍ୱିତୀୟ ଅନୁରୋଧ ଥିଲା ପ୍ରଫେସର ମିତ୍ର ଯିଏ କି ଥିଲେ ବିଭାଗୀୟ ମୁଖ୍ୟ ଏବଂ ଜଣେ ଅତ୍ୟନ୍ତ ଉଚ୍ଚକୋଟୀର ସର୍ଜନ ମୋର ଅପରେସନ କରିବେ ନାହିଁ। ମୋର ଅପରେସନ କରିବେ ବିଭାଗୀୟ ଦ୍ୱିତୀୟ ପ୍ରଫେସର ଡା. ଶଶୀମଣି ପଣ୍ଡା। ପୁଣି ମୁଁ ଡାକ୍ତରଖାନାରେ Cabin ବା Nursing Home ରେ ନ ରହି ଅପରେସନ ପୂର୍ବରୁ ଏବଂ ପରେ ଜେନେରାଲ ୱାର୍ଡରେ ରହିବି, ଅନ୍ୟ ରୋଗୀମାନଙ୍କ ସହ। ତୃତୀୟ ସର୍ତ୍ତ ଥିଲା ମୋ ଅପରେସନ ଖବର ପ୍ରଦୀପ୍ତବାବୁ ବା ରବିରାୟଙ୍କୁ ଜଣାଇ ଦିଆଯିବ ନାହିଁ। କାରଣ ଅଯଥାରେ ସେମାନେ ଆସିବେ କାହିଁକି ?

ମୋ ଅପରେସନ ମୋର ବାନ୍ଧବୀ ଶଶୀମଣି ପଣ୍ଡା କଲେ; ମାତ୍ର ପ୍ରଫେସର ମିତ୍ର ଏବଂ ପ୍ରଫେସର ଖାଡ଼ଙ୍ଗା ସେଠାରେ ଉପସ୍ଥିତ ରହିଥିଲେ ଅପରେସନ ଶେଷ ପର୍ଯ୍ୟନ୍ତ।

ମୋର ବନ୍ଧୁମାନଙ୍କ ମତରେ ମୁଁ ଥିଲି ଅତ୍ୟନ୍ତ ଜିଦ୍‌ଖୋର। ମାତ୍ର ମୋର ଆଦର୍ଶ ସେମାନଙ୍କ ମନକୁ ଛୁଇଁପାରି ନଥିଲା। ଏ ଧରଣର କାର୍ଯ୍ୟ ଏବଂ ମତ ପଛରେ ଯେ ରବି ରାୟଙ୍କ ବିଗ୍ଭର, ଆଦର୍ଶ ଏବଂ ପ୍ରୋତ୍ସାହନ ଥିଲା ସେଥିରେ ସନ୍ଦେହ ନାହିଁ। ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପତ୍ନୀ ଭାବରେ ସ୍ୱତନ୍ତ୍ର ସୁବିଧା ଗ୍ରହଣ କରିଥିଲେ ସେ ଯେ ଦୁଃଖିତ ହୋଇଥାନ୍ତେ ସେଥିରେ ସନ୍ଦେହ ନାହିଁ। ମାତ୍ର ଏ ସଂକ୍ରାନ୍ତରେ କେବେହେଲେ ତାଙ୍କର ମତ ମୋ ପାଖରେ ରଖିଥିବା ମୋର ମନେନାହିଁ।

ମୋର ଦ୍ୱିତୀୟ ସର୍ତ୍ତ ମଧ୍ୟ ରହିଲା – ମୁଁ ସାଧାରଣ ୱାର୍ଡ଼ରେ ଅପରେସନ ପୂର୍ବରୁ ଏବଂ ପରେ ରହିଲି – ମାତ୍ର ମୋ ବନ୍ଧୁମାନେ ରବି ରାୟ ଏବଂ ପ୍ରଦୀପ୍ତବାବୁଙ୍କୁ ମୋ ଅପରେସନ ଖବର ମୋ ଅଜାଣତରେ ଜଣାଇଦେଲେ। ସୁଖର କଥା ଉଭୟେ ସେତେବେଳେ କୌଣସି କାରଣରୁ ବାହାରେ ଥିଲେ ଏବଂ ଅପରେସନର ୩/୪ ଦିନ ପରେ (ବୋଧହୁଏ) କଟକରେ ପହଞ୍ଚିଲେ। ସେ ସମୟରେ ଆଜିଭଳି ମୋବାଇଲ ଫୋନ୍ ବା ଅନ୍ୟ କୌଣସି ତୁରନ୍ତ ଖବର ପହଞ୍ଚିବାର ବ୍ୟବସ୍ଥା ନଥିଲା।

ତାହାପରେ ପ୍ରତ୍ୟହ ପ୍ରଦୀପ୍ତବାବୁ ଆସି ମୋତେ ଦେଖିବାକୁ ଆରମ୍ଭ କଲେ। ଦୁଇ ସ୍ୱାସ୍ଥ୍ୟମନ୍ତ୍ରୀ ପ୍ରତ୍ୟହ ଡାକ୍ତରଖାନା ଆସିବାଦ୍ୱାରା ଡାକ୍ତରଖାନାର କାର୍ଯ୍ୟ ବାଧାପ୍ରାପ୍ତ ହେବା ଥିଲା ଅତ୍ୟନ୍ତ ସ୍ୱାଭାବିକ। ଏହାଦ୍ୱାରା ରବି ରାୟ ଅତ୍ୟନ୍ତ ଅସ୍ୱସ୍ତି ଅନୁଭବ କରୁଥିବା ମୁଁ ଲକ୍ଷ୍ୟ କରିଥିଲି।

ମୋର ଅପରେସନ ପରେ ସିଲାଇ ଖୋଲାବେଳକୁ ଦେଖାଗଲା ଯେ ଅପରେସନ ସ୍ଥଳ ସଂକ୍ରମିତ ହୋଇ ସିଲାଇ ଖୋଲିଯାଇଛି। ପ୍ରଦୀପ୍ତବାବୁ ନିଜେ ଉପସ୍ଥିତ ରହି ଗୋଟିଏ Cabin ର ବ୍ୟବସ୍ଥା କରି ମୋର ସମସ୍ତ ବିରୋଧ ସତ୍ତ୍ୱେ ମୋତେ କ୍ୟାବିନ୍‌କୁ ନେବାର ବ୍ୟବସ୍ଥା କଲେ ଏବଂ ତାଙ୍କର ଜଣେ ଡାକ୍ତର ଭଉଣୀଙ୍କୁ ମୋର Dressing କରି ମୋର ସ୍ୱତନ୍ତ୍ର ଦେଖାଶୁଣା କରିବାପାଇଁ ଦାୟିତ୍ୱ ଦେଲେ। ମୋ ଜୀବନ କାହିଁକି ଏତେ ମୂଲ୍ୟବାନ୍ ହେଲା ମୁଁ ଆଜି ମଧ୍ୟ ବୁଝିନାହିଁ। ମୁଁ ପ୍ରଦୀପ୍ତବାବୁଙ୍କୁ ଥଟ୍ଟାରେ କହିଥିଲି, “ଓଡ଼ିଶାର ସ୍ୱାସ୍ଥ୍ୟ ବିଭାଗକୁ ଆପଣ ୨୦ ବର୍ଷ ପଛକୁ ନେଇଗଲେ।”

ହସି ହସି ତାଙ୍କର ଉତ୍ତର ଥିଲା, "ତୁମେ ଖୁସି ହେବ ଯେ ମୁଁ ୫୦ ବର୍ଷ ତଳକୁ ନେଇ ନାହିଁ।" ଏତେ ଉଚ୍ଚ ପଦବୀର ରହି ତାଙ୍କ ଭଳି ଜଣେ ଦରଦୀ କୌତୁକ କରିପାରୁଥିବା ବ୍ୟକ୍ତି ମୁଁ ଆଦୌ ଦେଖିନାହିଁ।

ଦୁଃଖର କଥା ଆଜି ପ୍ରଫେସର ଖାଡ଼ଙ୍ଗା, ପ୍ରଫେସର ପଣ୍ଡା ଏବଂ ପ୍ରଦୀପ୍ତବାବୁ ଆଉ ଇହଜଗତରେ ନାହାନ୍ତି।

ଆଉ ଏକ ଘଟଣା – AIIMS ରେ ମୋର ଆଖି ଦେଖାଇବା ପାଇଁ କଟକ ମେଡ଼ିକାଲ କଲେଜର ଡାକ୍ତରମାନେ କହିଥିଲେ – ମୋର ଛାତ୍ର ଡାକ୍ତର ବିଜୟ ପଟ୍ଟନାୟକ (ସେ ଆଜି ଆଉ ନାହାନ୍ତି) ମୋତେ ନେଇ ଆଖି ବିଭାଗକୁ ଗଲେ। ପ୍ରଥମେ ଟିକେଟ କରି ଆଣିବାପରେ ମୋତେ ଡାକ୍ତରଙ୍କ ପାଖକୁ ନିଆଗଲା। ବିଜୟ କଥୋପକଥନ ବେଳେ ମୁଁ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପତ୍ନୀ ବୋଲି କହିବାପରେ ସେଠିକାର ପରିବେଶ ହଠାତ୍ ବଦଳିଗଲା। ମୋତେ ଏକ ସ୍ୱତନ୍ତ୍ର କୋଠରିକୁ ନିଆଗଲା ଏବଂ ବିଭାଗୀୟ ମୁଖ୍ୟଙ୍କୁ ଖବର ଦିଆଗଲା। ଏତେ ଡାକ୍ତର ଜମାହେଲେ ଯେ କାହାରି ବସିବାପାଇଁ ବ୍ୟବସ୍ଥା ନଥିଲା। ତା'ପରେ ଏକ Medical Conference ବସି ମୋର ଚିକିତ୍ସା ପ୍ରଣାଳୀ ଠିକଣା କରାଗଲା। ସେଠିକାର ଡାକ୍ତରମାନଙ୍କର ଗୁଞ୍ଜରଣ "ସ୍ୱାସ୍ଥ୍ୟମନ୍ତ୍ରୀ କାହିଁକି ନିଜେ ନ ଆସି ଜଣେ ଜୁନିଅର ଡାକ୍ତର ହାତରେ ତାଙ୍କ ପତ୍ନୀଙ୍କୁ ପଠାଇଲେ। ତାଛଡ଼ା ସେ ଟେଲିଫୋନ୍ ମଧ୍ୟ କରିପାରିଥାନ୍ତେ। ଅତୀତରେ ବହୁ ରୋଗୀଙ୍କ ପାଇଁ ତାଙ୍କର ବ୍ୟକ୍ତିଗତ ସହକାରୀ (PA)ମାନେ ଟେଲିଫୋନ୍ କରିବାର ଉଦାହରଣ ରହିଛି; ମାତ୍ର ଏ କ୍ଷେତ୍ରରେ ଏହାର ବ୍ୟତିକ୍ରମ କାହିଁକି ହେଲା ?"

ମୁଁ ହସିଥିଲି ସେଦିନ। ସୁବିଧା ନେବାର ଏକ ସୀମା ସରହଦ ସର୍ବଦା ରହିବାର ଆବଶ୍ୟକତାକୁ କିଏ ବୁଝାଇବ ?

ଏ ସବୁକୁ ଏଠାରେ ଉଦ୍ଧାର କରିବାର ଉଦ୍ଦେଶ୍ୟ ସେତେବେଳେ ମଧ୍ୟ ଆଦର୍ଶ ଏବଂ କାର୍ଯ୍ୟ ଭିତରେ ତଫାତ୍ ରହି ଯାଉଥିବାରୁ ଡାକ୍ତରଖାନାରେ ମଧ୍ୟ ରୋଗୀ ରୋଗୀ ମଧ୍ୟରେ ବାଛବିଗ୍ଭର ଅମଣିଷ ସ୍ତରକୁ ଗ୍ଭଲିଯାଉଛି। କାହାରି ଛାତି ଭିତରେ ସାମାନ୍ୟତମ କରୁଣାର ଉଦ୍ରେକ ଦେଖିବାକୁ ମିଳୁନାହିଁ। ହିପୋକ୍ରିଟିକ୍ ଶପଥ କେବଳ ନେବାପରେ ହିଁ ଲିଭିଯାଉଛି।

ତେବେ ମୁଁ ରବିରାୟଙ୍କୁ ଧନ୍ୟବାଦ ଦେବି ଯେ ମୋ ମତକୁ ସେ ସର୍ବଦା ସମ୍ମାନ ଦେଖାଇ ଆସିଛନ୍ତି। କୌଣସି ଘଟଣାରେ କେବେହେଲେ ମୋର କୌଣସି କାର୍ଯ୍ୟକୁ

ସେ ବିରୋଧ କରିଥିବା ମୋ ମନେପଡୁ ନାହିଁ। ମୋତେ ସଂପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥିଲା।

ରବି ରାୟଙ୍କର ଏକ ସ୍ୱତନ୍ତ୍ର ଗୁଣ – ସେ ପରିବାରର କାହାରି ପାଇଁ କାହାରିକୁ ଅନୁରୋଧ କରିବାର କେହି ଜାଣି ନାହିଁ। ଏ ସଂକ୍ରାନ୍ତରେ ତାଙ୍କ ପରିବାର ମଧ୍ୟ ଆନନ୍ଦରେ ତାଙ୍କ ସାଥୀ ଦେଇଛନ୍ତି – ମାତ୍ର ରବି ରାୟ ଅନ୍ୟ ବ୍ୟକ୍ତି, ବିଶେଷତଃ ଦରିଦ୍ର ଏବଂ ତଳେ ପଡ଼ିଯାଇଥିବା ବ୍ୟକ୍ତିମାନଙ୍କୁ ସାହାଯ୍ୟ କରିବାପାଇଁ ଯେକୌଣସି ସମୟରେ ଆବଶ୍ୟକ ବ୍ୟକ୍ତିମାନଙ୍କୁ ଅନୁରୋଧ କରିବା ଏବଂ ଚିଠି ଲେଖିଥିବା ଥିଲା ଏକ ସାଧାରଣ କଥା। ସର୍ବଦା ସେମାନଙ୍କ ପାଇଁ ସେ ସାହାଯ୍ୟର ହାତ ବଢ଼ାଇଥାନ୍ତି।

## କିଛି ତିକ୍ତ-ମଧୁର ଅନୁଭୂତି

ଏକ ଅଭାବନୀୟ ଘଟଣା – ରବି ରାୟ ସେତେବେଳେ କେନ୍ଦ୍ରରେ ସ୍ୱାସ୍ଥ୍ୟମନ୍ତ୍ରୀ। ସ୍ୱାସ୍ଥ୍ୟ ବିଭାଗରେ କେଉଁ ଧରଣର କାର୍ଯ୍ୟ ଜନସାଧାରଣଙ୍କ ପାଇଁ ଉପଯୋଗୀ ହୋଇପାରିବ ସେଥିପାଇଁ Community Medicine ବିଭାଗରେ କାର୍ଯ୍ୟ କରୁଥିବା ସବୁ ବିଭାଗୀୟ ମୁଖ୍ୟମାନଙ୍କର ଏକ ସମ୍ମିଳନୀ ଦିଲ୍ଲୀରେ ଡାକିଥିଲେ। ସେମାନଙ୍କଠାରୁ ପରାମର୍ଶ ନେବା ଏବଂ ସେଇ ଅନୁସାରେ ସ୍ୱାସ୍ଥ୍ୟ ଯୋଜନା ପ୍ରସ୍ତୁତ କରିବା ଥିଲା ପ୍ରଥମ ଏବଂ ପ୍ରଧାନ କାର୍ଯ୍ୟ। ମୋର ଯେତେଦୂର ମନେହୁଏ ସେ ସମୟରେ ଭାରତରେ ୧୧୪ଟି ଏବଂ ଓଡ଼ିଶାରେ ଥିଲା ୩ଟି ମେଡ଼ିକାଲ କଲେଜ। ପ୍ରତି ପ୍ରଦେଶର ସ୍ୱାସ୍ଥ୍ୟ ବିଭାଗରୁ ସବୁ ବିଭାଗୀୟ ମୁଖ୍ୟମାନେ ଯାଇଥିଲେ – ଓଡ଼ିଶାରୁ ୩ଟି ମେଡ଼ିକାଲ କଲେଜରୁ ୨ ଜଣ ପ୍ରଫେସର ମଧ୍ୟ ଯାଇଥିଲେ, ଏକମାତ୍ର ମୋତେ ଛାଡ଼ି। ସରକାର ଧରି ନେଇଥିଲେ ଯେ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପତ୍ନୀ ହୋଇଥିବା ଯୋଗୁଁ ମୋର ଅନୁମତି ଲୋଡ଼ା ନାହିଁ, ମୁଁ ଆଦେଶ ନ ପାଇଥିଲେ ମଧ୍ୟ ଛୁଟି ନେଇ ନିଜେ ଯିବି। ମାତ୍ର ତାହା ହେଲା ନାହିଁ। ଭାରତର ଏବଂ ଓଡ଼ିଶାର ସବୁ ମେଡ଼ିକାଲ କଲେଜର ବିଭାଗୀୟ ମୁଖ୍ୟ ମୋ ବ୍ୟତୀତ ଏହି ଅତ୍ୟନ୍ତ ଜରୁରୀ କାର୍ଯ୍ୟଶାଳାକୁ ଯାଇ ପାରିଥିଲେ। କର୍ମଶାଳାରେ ମୋର ଅନୁପସ୍ଥିତି ସମସ୍ତଙ୍କର ଦୃଷ୍ଟିଗୋଚର ହୋଇଥିଲା। ଏ ଘଟଣା ମୋର ବା ରବି ରାୟଙ୍କର କାର୍ଯ୍ୟଧାରାରେ ଆଦୌ ପ୍ରଭାବ ପକାଇ ପାରି ନଥିଲା। ସରକାରୀ କାର୍ଯ୍ୟରେ କେବେହେଲେ ହସ୍ତକ୍ଷେପ କରିବା ବା ପରିବାରର କାହାରିକୁ ଆଗକୁ ନେବା ଥିଲା ରବିରାୟଙ୍କ କଳ୍ପନାର ବାହାରେ। ତାଙ୍କ ସାମାଜିକ ଏବଂ ରାଜନୈତିକ ଜୀବନରେ ଏଭଳି ଉଦାହରଣ ଆଦୌ ଘଟିନାହିଁ। ସେଥିପାଇଁ ରବି ରାୟଙ୍କ ପରିବାର, ଭାଇଭଉଣୀ, ପୁତୁରାଝିଆରୀ ପ୍ରଭୃତି ସମସ୍ତେ

ମଧ ଦାୟୀ। ଭାଇ/ଦାଦା/ମାମୁଁଙ୍କଠାରୁ କେହି କେବେହେଲେ କିଛି ଆଶା କରିଥିବା ମୋର ମନେ ନାହିଁ। ବରଂ ସମସ୍ତଙ୍କର ଲକ୍ଷ୍ୟ ଥିଲା "ଆମପାଇଁ ଦାଦା ବା ମାମୁଁଙ୍କ ଲୁଗାରେ କାଦୁଅଛିଟା ନ ଲାଗୁ।" ଏକ ସାଲିସବିହୀନ କାର୍ଯ୍ୟପନ୍ଥାରେ ସାମାଜିକ ପ୍ରତିବଦ୍ଧତା ଥିଲା ପ୍ରଚୁର।

ରବିରାୟ ବହୁଥର ବିଭିନ୍ନ ସରକାରୀ ଦାୟିତ୍ୱରେ ବିଦେଶ ଯାଇଥାନ୍ତି। କେବେ ହେଲେ ମୁଁ ତାଙ୍କ ସହ ଯାଇନାହିଁ। ଏ ଧରଣର କାର୍ଯ୍ୟକୁ ସେ ଆଦୌ ପ୍ରଶୟ ନଦେବା ଆମେ ଜାଣୁ। ଥରେ ତାଙ୍କ ବ୍ୟକ୍ତିଗତ ସଚିବ, ଡକ୍ଟର ହୃଷିକେଶ ପଣ୍ଡା ମୋତେ ଅନୁରୋଧ କରିଥିଲେ ରାୟଙ୍କ ସହ ବିଦେଶ ଯିବାକୁ। ସେ ନିଜେ ତାଙ୍କର ସହକର୍ମୀ ଭାବରେ ସର୍ବଦା ଯାଇଥାନ୍ତି। ମାତ୍ର ମୋର ଗସ୍ତ ଖର୍ଚ୍ଚ ଦେବାର ଆର୍ଥିକ ସଂଗତି ନଥିଲା। ସରକାରୀ ଖର୍ଚ୍ଚରେ ବିଦେଶ ବୁଲିବାକୁ ଯିବା ଯେ ଦୁର୍ନୀତି ତାହା ସମସ୍ତେ ଜାଣନ୍ତି। ଡକ୍ଟର ପଣ୍ଡା ମୋ ପାଇଁ ନିଜେ ଆର୍ଥିକ ବ୍ୟବସ୍ଥା କରିବାର ପ୍ରତିଶ୍ରୁତି ସତ୍ତ୍ୱେ ମୁଁ ମନା କରିଥିଲି, କାରଣ ମୁଁ ଜାଣେ ଏଥିପାଇଁ ରାୟଙ୍କର ଆଦୌ ସମର୍ଥନ ମିଳିବା ସମ୍ଭବ ନୁହେଁ। ଏ ସଂପର୍କରେ ତାଙ୍କ ବିଭାଗୀୟ ଅନ୍ୟ ସହକର୍ମୀମାନଙ୍କର ମତ ଥିଲା, ଅନ୍ୟ ବାଚସ୍ପତିମାନେ ସେମାନଙ୍କ ପରିବାରସହ ଆସୁଛନ୍ତି। ପ୍ରୋଟୋକଲ ନିୟମ ଦୃଷ୍ଟିରୁ ରବି ରାୟ ମଧ ତାଙ୍କ ପତ୍ନୀଙ୍କୁ ସାଙ୍ଗରେ ନେବା ଆବଶ୍ୟକ। ମାତ୍ର ମୋର କର୍ମଚାରୀମାନଙ୍କୁ ଉତ୍ତର ଥିଲା – "ଯଦି ରାୟ ବିବାହ କରି ନଥାନ୍ତେ ବା ବିବାହ ପରେ ବିପତ୍ନୀକ ହୋଇଥାନ୍ତେ, ତେବେ ପ୍ରୋଟୋକଲ ନିୟମ କିପରି ରକ୍ଷାକରାଯାଇଥାନ୍ତା ?" କିନ୍ତୁ ତାଙ୍କର କର୍ମଚାରୀମାନେ ମୋ ଏ ଉତ୍ତରକୁ ସହଜରେ ଗ୍ରହଣ କରିପାରୁ ନଥିଲେ। ବରଂ, କେହି କେହି ଏହାକୁ ମୋର ଉଦ୍ଧତପଣିଆ ବୋଲି ମତ ଦେଇଥିବା ମୁଁ ପରେ ଶୁଣିଥିଲି। ସୁଖର କଥା ଯେ ରବିରାୟ ମୋର ଏ ଧରଣର ମତକୁ ସଂପୂର୍ଣ୍ଣ ରୂପେ ସମର୍ଥନ କରି ମୋତେ ଧନ୍ୟବାଦ ଦେଇଥିଲେ।

## କାର୍ଯ୍ୟ ପ୍ରଣାଳୀ/ଚର୍ଚ୍ଚାରେ ରବିରାୟ

ଆଉ ଏକ ଅବିଶ୍ୱାସଯୋଗ୍ୟ ଘଟଣା – ରବି ରାୟଙ୍କୁ ଉପରାଷ୍ଟ୍ରପତି କରିବା ପାଇଁ ତାଙ୍କ ବନ୍ଧୁମାନଙ୍କର ଥିଲା ପ୍ରବଳ ଉତ୍ସାହ। ସେତେବେଳକାର ରାଜନୀତି ସ୍ଥିତିକୁ ଅନୁଧାନ କରି ବନ୍ଧୁମାନେ ଚାହୁଁଥିଲେ ରାୟ ଉପରାଷ୍ଟ୍ରପତି ହେବା ନିହାତି ଆବଶ୍ୟକ, କାରଣ ତା'ପରେ ରାଷ୍ଟ୍ରପତି ହେବା ବୋଧହୁଏ ସହଜ ହେବ। ରାୟଙ୍କ ଭଳି ଜଣେ ନିରପେକ୍ଷ, ଦେଶପ୍ରେମୀ, ନିଷ୍ଠାପର, ଉଦାର ବ୍ୟକ୍ତିଙ୍କୁ ସମସ୍ତେ ରାଷ୍ଟ୍ରପତି ଆସନରେ ଦେଖିବାକୁ ଚାହୁଁଥିଲେ। ଦେଶର ଉନ୍ନତି ପାଇଁ ଏହା ଥିଲା ଅତ୍ୟନ୍ତ ଜରୁରୀ। ମୁଁ

ସେତେବେଳେ ଦିଲ୍ଲୀ ଯାଇଥିଲି କୌଣସି ଏକ ଜରୁରୀ କାର୍ଯ୍ୟରେ। ରାୟଙ୍କର ପଦପଦବୀ ପାଇଁ କେବେହେଲେ ମୋହ ତ ଦୂରର କଥା, ଇଚ୍ଛା ପ୍ରକାଶ ପାଇଥିବା ମୁଁ ଲକ୍ଷ୍ୟ କରିନାହିଁ। ପଦପଦବୀ ପାଇଁ 'ଲବି' କରିବା ଏକ ସାଧାରଣ କାର୍ଯ୍ୟ ବୋଲି ଧରାଯାଇଥାଏ। ମାତ୍ର ଏଭଳି ଶବ୍ଦ ଥିଲା ତାଙ୍କର କଳ୍ପନାତୀତ। କେବେହେଲେ କ୍ଷମତା ପଛରେ ଗୋଡ଼ାଇବା ବା କର୍ତ୍ତବ୍ୟର ଲକ୍ଷ୍ମଣରେଖା ଅତିକ୍ରମ କରିଥିବା ମୁଁ ଜାଣିନାହିଁ। ବନ୍ଧୁମାନେ ମୋ ସାହାଯ୍ୟ ଲୋଡ଼ିଥିଲେ। ରବି ରାୟଙ୍କୁ ବୁଝାଇବାପାଇଁ। ସେ କେବଳ ତୀକ୍ଷ୍ଣ ଦୃଷ୍ଟିରେ ମୋତେ ଚାହିଁଥିଲେ – ସେ ଚାହାଁଣୀ ମୋର ଆଜି ବି ମନେ ଅଛି। ଏ ଧରଣର କାର୍ଯ୍ୟକୁ ସେ ଘୃଣା କରୁଥିବା ମୁଁ ଜାଣେ। ତଥାପି ବନ୍ଧୁମାନଙ୍କ ଚାପ ଆଗରେ ମୁଁ ମୁଣ୍ଡ ନୁଆଁଇଥିଲି। ଫଳଶ୍ରୁତି, ରାୟ ଉପରାଷ୍ଟ୍ରପତି ହୋଇପାରିଲେ ନାହିଁ। ଏ ବିଫଳତା ତାଙ୍କ ଚରିତ୍ରରେ କୌଣସି ପ୍ରଭାବ ପକାଇ ପାରି ନଥିଲା। ତାଙ୍କର ଯେଉଁ ବନ୍ଧୁମାନେ କ୍ଷମତାର ଅନ୍ଧଗଳିରେ ଦିଗହରା ସେମାନଙ୍କ ପାଇଁ ତାଙ୍କର ଥିଲା ପ୍ରଚୁର ଦୁଃଖ।

ତାହାପରେ ବହୁ ବନ୍ଧୁ ତାଙ୍କୁ ବିଭିନ୍ନ ପ୍ରଦେଶରେ ରାଜ୍ୟପାଳ ହେବାପାଇଁ ବାଧ କରୁଥିବାର ମୁଁ ଜାଣେ। ବିଶେଷତଃ ଆନ୍ଧ୍ରର ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁଙ୍କ ବହୁ ଅନୁରୋଧ ସେ ନମ୍ରତାର ସହ ପ୍ରତ୍ୟାଖ୍ୟାନ କରିଥିବା ବିଷୟ ସମସ୍ତେ ଜାଣିଛନ୍ତି। ଆଉ ଏକ କୌତୂହଳଜନକ ଘଟଣା ମୋର ମନେଅଛି। ରାୟଙ୍କ ପରେ ଅତୀତରେ ତାଙ୍କର ଉପବାଚସ୍ପତି ଥିବା ଶ୍ରୀଯୁକ୍ତ ଶିବରାଜ ପାଟିଲ ବାଚସ୍ପତି ଆସନ ଗ୍ରହଣ କଲେ। ରାୟ ୨୦ ଆକବର ରୋଡ଼ ତୁରନ୍ତ ଖାଲିକରିବା ପାଇଁ ଆଗେଇ ଆସିଲେ, କାରଣ ସେ କୋଠିଟି କେବଳ ବାଚସ୍ପତିଙ୍କ ପାଇଁ ଉଦ୍ଦିଷ୍ଟ। ମାତ୍ର ପାଟିଲ ସାହେବଙ୍କ ଅନୁରୋଧ ଆପଣ ମୋ କୋଠିକୁ ଆସିବେ – ମୁଁ ସେ ଘରକୁ ଯିବି। ଆପତ୍ତି କରିବାର କିଛି କାରଣ ନଥିଲା। ସାଂସଦ ଭାବରେ ଗୋଟିଏ ଘର ତାଙ୍କୁ ମିଳିବା କଥା।

କିନ୍ତୁ ଶିବରାଜ ପାଟିଲଙ୍କ ଉଦ୍ଦେଶ୍ୟ ଥିଲା ଅଲଗା। ୨୦ ଆକବର ରୋଡ଼ରେ ରବି ରାୟ ରହିଥିବା ଅବସ୍ଥାରେ ଘରର ବହୁ ପରିବର୍ତ୍ତନ ସେ କରାଇଲେ। ସଂପୂର୍ଣ୍ଣ ଭାବରେ ନୂଆ ବାଚସ୍ପତିଙ୍କ ପାଇଁ କୋଠିର ନୂଆ କଳେବର କରାଗଲା। ମରାମତି ବେଳର ଧୂଳି ଧୂସରିତ ଘରେ ରହି ରାୟ ଦିନେ ହେଲେ ଦୁଃଖ ବା ଅଶାନ୍ତି ଅନୁଭବ କରିବା ମୁଁ ଦେଖିନଥିଲି। ବାଚସ୍ପତିଙ୍କର କୋଠି ନୂଆ ଭାବରେ ପ୍ରସ୍ତୁତ ହେବା ପରେ ପାଟିଲ ସାହେବ ସେଠାକୁ ଆସିଲେ ଏବଂ ରାୟ ପାଟିଲ ସାହେବଙ୍କର କୋଠିକୁ (୪ ଜନପଥକୁ) ଗଲେ। ମାତ୍ର ଦୁଃଖର କଥା ବାଚସ୍ପତିଙ୍କ ଘରେ ରହିଥିବାରୁ ରାୟଙ୍କୁ ସେ

ଘରର ବଜାର ଦରରେ ଭଡ଼ା ଦେବାକୁ ପଡ଼ିଥିଲା। ଏଥିପାଇଁ ଆମ୍ଭେମାନଙ୍କ ଆପତ୍ତି, ବିରକ୍ତିକୁ ସେ ଅଗ୍ରାହ୍ୟ କରିଥିଲେ। ବନ୍ଧୁପ୍ରେମର ଏ ଉଦାହରଣ ବିରଳ।

## ଚିଠି ହିଁ ଥିଲା ମାଧ୍ୟମ

ଚିଠି ଥିଲା ମନର କିଛି କଥାକୁ ପ୍ରକାଶ କରିବାର ମାଧ୍ୟମ। ରାୟ କେବେହେଲେ ମୋ ସହ ଏକୁଟିଆ ନିରୋଳାରେ ବସି ସମୟ ବିତାଇବା ମନେ ପଡୁନାହିଁ - ସର୍ବଦା ଲୋକଗହଳି। କିନ୍ତୁ ସେ ତାଙ୍କ ବାରବୁଲା ଜୀବନରେ ଯେଉଁଠିକୁ ଯାଇଛନ୍ତି, ଯାହା ସହ ଆଲୋଚନା ବା ସମୟ ବିତାଇଛନ୍ତି ଚିଠି ମାଧ୍ୟମରେ ତାକୁ ତାଙ୍କ ବ୍ୟସ୍ତ ଜୀବନ ଭିତରେ ଟିକିନିଖି ମୋତେ ଜଣାଇବାକୁ ସର୍ବଦା ଚେଷ୍ଟା କରିଛନ୍ତି। ତାଙ୍କର ବହୁ ଚିଠି ଆଜି ବି ମୋ ପାଖରେ ରହିଛି - ମାତ୍ର ଯାହା ରହିଛି ତା'ଠାରୁ ବହୁ ଅଧିକ ନଷ୍ଟ ହୋଇଯାଇଛି। କେତେକ ସ୍ୱେଚ୍ଛାକୃତ, କେତେକ ଅକସ୍ମାତ୍।

ଚିଠି ମାଧ୍ୟମରେ ମୋ ସହ ସେ ସମୟର ଅନୁଭୂତିକୁ, ଭାବନାକୁ ବାଣ୍ଟିବା ହିଁ ଥିଲା ତାଙ୍କର ପ୍ରଥମ ଏବଂ ପ୍ରଧାନ କାର୍ଯ୍ୟ। ବହୁଘଟଣା ଏପରି ଭାବରେ ସେ ବର୍ଣ୍ଣନା କରି ଚିଠିରେ ଲେଖଥାନ୍ତି ଯେ ସେଠାରେ ଉପସ୍ଥିତ ନଥିଲେ ମଧ୍ୟ ମୋର ମନେହୁଏ ଯେ ସେ ସବୁ ମୋ ଆଖି ଆଗକୁ ସିନେମା ଚିତ୍ର ପରି ଭାସିଆସୁଛନ୍ତି। ଚିଠିଗୁଡ଼ିକରେ ଯାଉଥିବା ଦେଶର ପାରିପାର୍ଶ୍ୱିକ ଅବସ୍ଥା, ରାଜନୈତିକ ଖବର, ସେ ଦେଶଗୁଡ଼ିକର ପ୍ରଗତି, ଐତିହ୍ୟ, ଦେଶପ୍ରେମ, ନାରୀ ଜାଗରଣର କାହାଣୀ, ଐତିହାସିକ ତଥ୍ୟ ଇତ୍ୟାଦି ସଂପର୍କରେ ହିଁ ନିଜକୁ ହଜେଇ ଦେଇ ସେ ବିଷଦ ଭାବରେ ବର୍ଣ୍ଣନା କରିଥାନ୍ତି। ସେଠକାର ଦର୍ଶନୀୟ ସ୍ଥାନର ଶୋଭା, ଅନୁଭୂତି, ଭାବନା, ଆମ ଦେଶର ଅନୁନ୍ନତ ବ୍ୟବସ୍ଥା ପାଇଁ ଦୁଃଖ ଇତ୍ୟାଦିରେ ତାଙ୍କର ମନର କଥା ହିଁ ସେ ପ୍ରକାଶ କରିଥାନ୍ତି, ଯାହା ଆମ ଜୀବନରେ ଦୈନନ୍ଦିନ କାର୍ଯରେ ସମ୍ଭବ ହୋଇ ପାରି ନଥାଏ। ଏ ଚିଠିଗୁଡ଼ିକ ପାଠକଲେ ମନେହେବ ଯେ ଏହା ଭ୍ରମଣ କାହାଣୀ ବା ଜଣେ ବ୍ୟକ୍ତିର ଦୈନିକ ଡାଇରୀ। କୌଣସି ପାରିବାରିକ ପତ୍ର ନୁହେଁ। ଆଜି ଦୁଃଖ ଯେ ସେ ସବୁ ଚିଠି ମୁଁ ସଞ୍ଚୟ କରି ରଖିପାରି ନାହିଁ। ଚିଠିଗୁଡ଼ିକ ସାଧାରଣତଃ ସକାଳ ୫ଟା ବା ୬ଟାରେ ଲେଖାଯାଇଥାଏ। ତା'ପରେ ଆଉ ସମୟ ମିଳିବାର ସମ୍ଭାବନାର ଅଭାବ। ଅମ୍ବାଲା ଜେଲରେ ସେମାନଙ୍କୁ ସପ୍ତାହକୁ ବୋଧହୁଏ ଖଣ୍ଡେ ବା ଦୁଇଖଣ୍ଡ କାଗଜ ଦିଆଯାଏ ଘରକୁ ଚିଠି ଲେଖିବା ପାଇଁ। ତାହା ପୁଣି ଇଂରାଜୀରେ ଲେଖିବା ଆବଶ୍ୟକ। ଚିଠି ପଢ଼ି କର୍ତ୍ତୃପକ୍ଷ ଅନୁମତି ଦେବାପରେ ଚିଠି ଡାକରେ ପକାଯିବ। ଏହି ସ୍ୱଳ୍ପ କାଗଜ ଅନୁଦାନ (ଜେଲ କର୍ତ୍ତୃପକ୍ଷଙ୍କର) ଅଧିକାଂଶ ମୋ ପାଖକୁ ଆସିଥାଏ। ବହୁ କଥା କହି ନପାରି ବା ଲେଖି ନପାରି ରାୟ ଜେଲରେ

ତାଙ୍କ ଅନୁଭବକୁ ଲିପିବଦ୍ଧ କରି ରଖିବାକୁ ଚେଷ୍ଟା କରିଥିଲେ। ମାତ୍ର ତାଙ୍କ ବ୍ୟସ୍ତବହୁଳ ଜୀବନ ଏବଂ ମୋର ଏହାର ମୂଲ୍ୟ ବୁଝିବାର ଅଯୋଗ୍ୟତା ଫଳରେ ଅଧିକାଂଶ ନଷ୍ଟ ହୋଇଯାଇଛି।

ରବିରାୟଙ୍କର ବହୁ ଚିଠି ଜରୁରୀକାଳୀନ ପରିସ୍ଥିତି ସମୟରେ ମୁଁ ନିଜେ ନଷ୍ଟ କରି ଦେଇଥିବା ଯୋଗୁଁ ମୁଁ ଆଜି ନିଜକୁ କ୍ଷମା କରି ପାରୁନାହିଁ। ମାତ୍ର ସେତେବେଳର ନିର୍ଯାତନା, ଭୟ, ଆଶଙ୍କା ଏତେ ଥିଲା ଯେ ତାକୁ ସାଇତିବା ଅପେକ୍ଷା ନିଜକୁ ପୁଲିସ ଅତ୍ୟାଚାରରୁ ରକ୍ଷା କରିବା ଥିଲା ପ୍ରଥମ କାମ। ରବି ରାୟ ପରେ ଏ କଥା ଜାଣିପାରିଥିଲେ। ମୋର ସ୍ପଷ୍ଟ ମନେଅଛି ଯେ ସେ ସର୍ବଦା ତାଙ୍କ ଚିଠିକୁ ସାଇତି ରଖିବାପାଇଁ ମୋତେ ଅନୁରୋଧ କରିଥାନ୍ତି। ଅନୁଭୂତିକୁ ସାଇତି ରଖିବାର ପ୍ରବଳ ଇଚ୍ଛାକୁ ସାର୍ଥକ କରିବାର ଲକ୍ଷ୍ୟ। ମାତ୍ର ତାହା କରିବାପାଇଁ ରାଜନୀତିରେ ବ୍ୟସ୍ତ ରହି ସମ୍ଭବ ହୋଇପାରି ନଥିଲା। ବହୁ ଅନୁଭବ ହଜିଯାଇଛି। ମୁଁ ଆଜି ଶ୍ରୀଯୁକ୍ତ ସମୀର ରାଉତକୁ ଧନ୍ୟବାଦ ଦେବି ଯେ ପରବର୍ତ୍ତୀ ସମୟରେ ଲେଖାଥିବା କେତେକ ଚିଠିକୁ ସାଇତି ରଖିବାର ଆବଶ୍ୟକତା ସେ ଅନୁଭବ କରି ରଖିପାରିଛନ୍ତି।

ବନ୍ଧୁର ପଥ। ଯାତ୍ରା ଅସରନ୍ତି। ଦୀର୍ଘ ଦିନର ଘଟଣାବଳି। ବହୁ ଅନୁଭୂତି ବିସ୍ମୃତି ଗର୍ଭରେ ବିଲୀନ ହେବା ସ୍ୱାଭାବିକ। ଆକାଶରେ ଭସା ମେଘ ଭଳି ଟିକିଏ ଉଙ୍କିମାରି ପୁଣି ଉଭେଇଯା'ନ୍ତି। ଜଣେ ନିରୁତା ରାଜନୀତି କରୁଥିବା ମଣିଷ ସହ ଏତେବାଟ ଆସି ପଛକୁ ଚାହିଁଲେ ତଥାପି କିଛି ପ୍ରୀତିକର ଆଉ ଅପ୍ରୀତିକର ଘଟଣା ଅସଜଡ଼ା ହୋଇ ଆଖି ଆଗକୁ ଆସନ୍ତି। ବୋଧହୁଏ ତାହାହିଁ ପ୍ରକୃତିର ଉଦ୍ଦେଶ୍ୟ। ତେବେ ଗୋଟିଏ କଥା ସ୍ପଷ୍ଟ – ବିବାହିତ ଜୀବନରେ ଆମେ ସର୍ବଦା ପରସ୍ପର ମତକୁ ସମ୍ମାନ ଦେଇ ଆସିଛୁ। ପରସ୍ପରକୁ ବୁଝିବାକୁ ଚେଷ୍ଟା କରିଛୁ। ପରସ୍ପରଙ୍କ କାର୍ଯ୍ୟରେ ସହଯୋଗ କରିବାପାଇଁ ଆପ୍ରାଣ ଚେଷ୍ଟାକରିଛୁ ବହୁସମୟରେ। ମତାନ୍ତର ଘଟିଥାଇପାରେ; ମାତ୍ର ମନାନ୍ତର ହେବା ମନେ ପଡୁନାହିଁ।

ବିବାହିତ ଜୀବନର ଏକ ପ୍ରାଚୁର୍ଯ୍ୟଭରା ପ୍ରାଣ ସତ୍ତାର ଉପଲବ୍ଧି ମୁଁ କରିପାରିଛି – ବନ୍ଧୁ, ସାଥୀ, ପତ୍ନୀ, ସହକର୍ମୀ ଭାବରେ। ଆଜି ବି ଏକ ଅସରନ୍ତି ଅମଡ଼ବାଟର ଅଲୋଡ଼ା ପରିବ୍ରାଜକ ଆମେ ଦୁହେଁ – ଅନ୍ୱେଷଣ ଅବ୍ୟାହତ। ସାଥୀ ରବି ରାୟଙ୍କ ସହଯୋଗ, ଉଦାରତା ଆଉ ମହନୀୟତାକୁ ପାଥେୟ କରି ଏହି ଅଙ୍କାବଙ୍କା, ଖାଲଢିପ, ଆଉ ଗଡ଼ାଣୀଉଠାଣୀ, ରାସ୍ତାରେ ଚାଲିବା ମୋ ଜୀବନର ସବୁଠାରୁ ବଡ଼ ଉପଲବ୍ଧି।

■■■

# ମୋ ଦୃଷ୍ଟିରେ ରବି ରାୟ

ଅଧ୍ୟାପକ ସମୀର କୁମାର ରାଉତ

୨୦୦୦ ମସିହା ହେବ ବୋଧହୁଏ, ରବି ରାୟଙ୍କ କଲ୍ୟାଣୀନଗରସ୍ଥ ବାସଭବନରେ ଚାଲୁଥିବା ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ 'ନିହାର୍ଡ଼'ରେ ମୁଁ ଯୋଗଦିଏ। କାମ ଥିଲା ଅନୁଷ୍ଠାନର ଲାଇବ୍ରେରୀକୁ ସୁବ୍ୟବସ୍ଥିତ କରିବା। ଡାକ୍ତର ସରସ୍ୱତୀ ସ୍ୱାଇଁ (ଶ୍ରୀଯୁକ୍ତ ରାୟଙ୍କ ଧର୍ମପତ୍ନୀ)ଙ୍କ ଦ୍ୱାରା ପରିଚାଳିତ ଉକ୍ତ ଅନୁଷ୍ଠାନଟିକୁ ମୋର କର୍ମକ୍ଷେତ୍ର ରୂପେ ପ୍ରଥମରୁ ବାଛିଥିଲେ ହେଁ ଘଟଣାକ୍ରମରେ ରବି ରାୟଙ୍କ ସହିତ ମୋର ଘନିଷ୍ଠତା ଅଧିକ ବଢ଼ିଯାଇଥିଲା।

ସେଦିନ ମୋର ଠିକ୍ ମନେଅଛି, ଯେଉଁଦିନ ପ୍ରଥମକରି ରବି ରାୟଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ହୋଇଥିଲା। ପ୍ରାୟତଃ ରବି ରାୟ ସେତେବେଳକୁ ଅଧିକାଂଶ ସମୟ ଦିଲ୍ଲୀରେ ରହୁଥାନ୍ତି ଆଉ ଯେଉଁଦିନ ତାଙ୍କର କଟକ ବାସଭବନକୁ ଫେରନ୍ତି, ସେଦିନ ତାଙ୍କ ନିଜ ପରିବାର ସହିତ ଅନୁଷ୍ଠାନର କର୍ମଚାରୀଙ୍କର ମଧ ଆନନ୍ଦର ସୀମା ନଥାଏ। ସମୟ ଅପରାହ୍ନ ୫ଟା। କଟକ ରେଳଷ୍ଟେସନରୁ ଗାଡ଼ି ରବି ରାୟଙ୍କୁ ଧରି ବାସଭବନକୁ ଆସିଲା। ଗାଡ଼ିରୁ ଯେତେବେଳେ ସେ ଓହ୍ଲାଇଲେ ତାଙ୍କୁ ଏତେ ନିକଟରୁ ଦେଖି ମୁଁ ଖୁସିରେ ଗଦ୍ ଗଦ୍ ହୋଇଗଲି। ଏ କ'ଣ ! ଲୋକସଭାର ପ୍ରଥମ ଓଡ଼ିଆ ବାଚସ୍ପତି ପୁଣି ମୋ ସାମ୍ନାରେ ? ମୋର ନମସ୍କାର ଗ୍ରହଣ କରୁ କରୁ ସ୍ୱଭାବସୁଲଭ ଢଙ୍ଗରେ ପଚାରିଲେ ତମ ନାଁ କ'ଣ ? ତମେ କ'ଣ ନୂଆ ଯୋଗ ଦେଇଛ କି ? ମୋ ଉତ୍ତର ପୂର୍ବରୁ ଡାଃ. ସ୍ୱାଇଁ ମୋର ଏକ ସଂକ୍ଷିପ୍ତ ପରିଚୟ କରାଇଦେଲେ ତାଙ୍କ ସହିତ। ଘରର ଉପରମହଲାକୁ ଅନ୍ୟମାନଙ୍କ ସହ ଉଠି ଯାଉ ଯାଉ ମୋତେ କହିଲେ ଆଚ୍ଛା ଆଚ୍ଛା ତମେ ତାହାଲେ ଆମ ଲାଇବ୍ରେରିଆନ୍ ମହାଶୟ ! ସନ୍ଧ୍ୟାବେଳକୁ ତମ ଲାଇବ୍ରେରୀ ଦେଖିବାକୁ ଯିବି – ତାଙ୍କର ସଂକ୍ଷିପ୍ତ ଉତ୍ତର।

ମୋର ଗୋଡ଼ ତଳେ ଲାଗୁ ନଥାଏ ସତେ, ମନରେ କିଛି ଭୟ ଓ ସନ୍ତର୍ପଣର ଭାବ। ଆପାତତଃ ନିଜକୁ ପ୍ରସ୍ତୁତି କରିନେଇଥିଲି ଏକୁଟିଆ ରବି ରାୟଙ୍କୁ ସାମ୍ନା କରିବି ବୋଲି। ପୂର୍ବରୁ ଦେଇଥିବା ସମୟ ଠିକ୍ ୭ଟା ବେଳକୁ ଲାଇବ୍ରେରୀରେ ପହଞ୍ଚିଲେ। ତାଙ୍କୁ ଦେଖି ସୌଜନ୍ୟତା ଦୃଷ୍ଟିରୁ ମୁଁ ବସୁଥିବା ଅପେକ୍ଷାକୃତ ଭଲ

ଚେୟାରଟିକୁ ତାଙ୍କୁ ଛାଡ଼ିଦେଲି କିନ୍ତୁ ସେ ମୋର ଏଭଳି ବ୍ୟବହାର ଦେଖି କହିଲେ, "ଏ କ'ଣ କରୁଛ ? ସେ ସ୍ଥାନଟି ତ ଲାଇବ୍ରେରୀର ଅଧକ୍ଷଙ୍କର, ମୁଁ ତ ଜଣେ ପାଠକ ଭାବରେ ଏଠାକୁ ଆସିଛି, ତେଣୁ ସେ ଆସନରେ ମୁଁ ବସିବା ଆଦୌ ଠିକ୍ ନୁହେଁ।" କୃତଜ୍ଞତାରେ ମନ ଭରିଗଲା, ଭାବିଲି ଏତେବଡ଼ ଆସନର ଅଧିକାରୀ ହୋଇଥିଲେ ବି କେଡ଼େ ନିରହଙ୍କାରୀ ଉଚ୍ଚ ବିଚାରଧାରାର ମଣିଷଟିଏ ସତେ !

କାହିଁକି କେଜାଣି ପ୍ରଥମ ପରିଚୟଠୁ ସେ ମୋତେ ଭଲପାଇବାକୁ ଲାଗିଲେ। ମୋ ବିଷୟରେ ମୋ ପରିବାର ବିଷୟରେ ଜାଣିଲେ। ମୁଁ କିଭଳି ଦୀର୍ଘବର୍ଷ ଧରି ଅବୈତନିକ ଭାବେ ଏକ କଲେଜରେ ଅଧ୍ୟାପନା ବୃତ୍ତି କରୁଛି, ସେ କଥା ମଧ ସେ ଆବିଷ୍କାର କଲେ। ଆଉ ତା'ପରଠୁ ଯେତେବେଳେ ଦେଖାହେଲେ ପଚ୍ଚାରନ୍ତି କ'ଣ ଅଧ୍ୟାପକ ସାହେବ ! ଆପଣଙ୍କ କଥା ଏ ସରକାର କ'ଣ ବୁଝିଲେ ନା ନାହିଁ ? ଆମ ରାଜ୍ୟର ଶିକ୍ଷା ବ୍ୟବସ୍ଥା, ଦରମା ପ୍ରଦାନରେ ପାତରଅନ୍ତର ମନୋବୃତ୍ତିକୁ ଖୁବ୍ କଡ଼ା ଭାଷାରେ ସମାଲୋଚନା କରନ୍ତି ଆଉ କହନ୍ତି ବୁଝିଲ୍, ଆମର ଏଇ ଅଭାଗା ରାଜ୍ୟରେ ହିଁ କେବଳ ଏ କଥା ସମ୍ଭବ। ଶିକ୍ଷାଭଳି ମର୍ଯ୍ୟାଦାଜନକ ବିଷୟବସ୍ତୁ ଉପରେ ସରକାରଙ୍କ ଏଭଳି ଉଦାସୀନତା ରାଜ୍ୟପାଇଁ ଆଦୌ ଶୁଭଙ୍କର ବୋଲି ନୁହେଁ ବୋଲି ମତ ଦିଅନ୍ତି। ବହୁ ସମୟରେ ମୋର ଆର୍ଥିକ ଅସ୍ୱଚ୍ଛଳତା ବିଷୟରେ ଖୁବ୍ ମନଦୁଃଖ କରନ୍ତି, ଆଉ ପ୍ରବୋଧନା ବି ଦିଅନ୍ତି।

ସମସ୍ତଙ୍କ ପ୍ରତି ଦରଦ ଏବଂ ଅନ୍ୟର ମତ ପ୍ରତି ସମ୍ମାନବୋଧ ରୂପକ ଗୁଣ ଦୁଇଟି ମୁଁ ସବୁବେଳେ ତାଙ୍କଠାରେ ଲକ୍ଷ୍ୟ କରିଛି। ବହୁସମୟରେ ତାଙ୍କର କେଉଁ ସଭା ସମିତିରେ ଭାଷଣ ଦେବାକୁ ଥିଲେ ମୋତେ କହନ୍ତି କ'ଣ ଅଧ୍ୟାପକ ସାହେବ ଯଦି ଆପଣଙ୍କୁ ଏ ସଭାପାଇଁ ଡକାଯାଇଥା'ନ୍ତା ତାହାଲେ ଆପଣ କ'ଣ କହିଥା'ନ୍ତେ ? ମୁଁ ହସିଦିଏ, କହେ – ନା ସାର୍ ମୋତେ କ'ଣ ଏ ବିଷୟରେ ଆସିବ ଯେ ସେମାନେ ମୋତେ ଏ ସଭାକୁ ଡାକିବେ ? ତଥାପି, ଏ ବିଷୟରେ ତମର କିଛି ତ ଗୋଟିଏ ମତ ଥିବ, ସେଇଟା କୁହ – ବାଧ କରି କହନ୍ତି କହିବାକୁ। ତାଙ୍କ ଆଗରେ ଡରିଡରି କିଛି ସାମାନ୍ୟ କଥା କହିବାକୁ ଆରମ୍ଭ କଲାମାତ୍ରେ କହିବେ ଆରେ, ତମେ ତ ବଢ଼ିଆ ପଏଣ୍ଟ କହୁଛ ? ଏଇଟା ତ ମୁଁ ଜମାରୁ ଜାଣି ନଥିଲି। ଆନନ୍ଦାଶ୍ରୁ ବହିଯାଏ ତାଙ୍କର ଏହି ସାମାନ୍ୟ ପ୍ରଶଂସାରେ।

ଅତ୍ୟନ୍ତ ନିରାଡ଼ମ୍ବର ଜୀବନଶୈଳୀ। ଖାଦ୍ୟପେୟରେ ରୁଚିଅରୁଚି ନାହିଁ କି ବାଛବିଚ୍ଚାର ନାହିଁ। ଖାଇବାବେଳେ ପାଖରେ ଥିଲେ ପଚ୍ଚାରନ୍ତି ତୁ ଖାଇଛୁଟିରେ ? ସନ୍ଧ୍ୟା ଜଳଖିଆ ଖାଇବାବେଳେ ତାଙ୍କ ଉଦିଷ୍ଟ ଫଳ ଓ ବିସ୍କୁଟ୍‌ରୁ ଯେମିତି ହେଲେ ଖଣ୍ଡେ ଯାଚି

ଧରାଇଦେବେ। ନେବାପାଇଁ ମନାକଲେ କହିବେ, "ତୁ ଖଣ୍ଡେ ନ ନେଲେ ସନ୍ଧ୍ୟା ଆସରଟା କ'ଣ ଜମିବ ?" ଯେମିତି ହେଉ ପ୍ରତିଦିନ ସନ୍ଧ୍ୟାରେ ତାଙ୍କୁ ଦେଖା କରିବାକୁ ପଡ଼ିବ। ଅବହେଳା କଲେ ଅତ୍ୟନ୍ତ ନିଜର ଭଳି ପଚ୍ଚାରିବେ ତୁ କ'ଣ ଆସୁନାହୁଁ କି ? ଅନେକ ଦିନ ହେବ ତ ମୁଁ ତତେ ଦେଖୁନି ? ମୋର ଉପସ୍ଥିତି ଯେ ତାଙ୍କୁ ଆନନ୍ଦ ଦେଉଛି ଏହା ଜାଣି ମୋ ଛାତି କୁଣ୍ଢେମୋଟ ହୋଇଯାଏ।

ମୋ ଜାଣିବାରେ ସେ ସମସ୍ତଙ୍କର ପ୍ରିୟ। ମଳିମୁଣ୍ଡିଆଙ୍କଠାରୁ ଆରମ୍ଭ କରି ହାକିମହୁକୁମାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ମନଖୋଲା କଥାବାର୍ତ୍ତା। ଅତ୍ୟନ୍ତ କପଟଶୂନ୍ୟ ଭାବଭଙ୍ଗୀ। ଘଟଣାଟିଏ ମନେପଡୁଛି। ରବି ରାୟଙ୍କ ଜଣେ ବ୍ୟକ୍ତିଗତ ସେବାକାରୀ ତା'ର ଘର ପ୍ରତିଷ୍ଠା ନିମିତ୍ତ ରବି ରାୟଙ୍କୁ ନିମନ୍ତ୍ରଣ କରିଥାଏ। ଶ୍ରୀଯୁକ୍ତ ରାୟଙ୍କ ସହିତ ତାଙ୍କ ଧର୍ମପତ୍ନୀ, କିଛି ପରିବାର ସଦସ୍ୟ ଏବଂ ମୁଁ ଗୋଟିଏ ଗାଡ଼ିରେ ଯାଉଥାଉ। ବାଟରେ କୌଣସି ଏକ କାର୍ଯ୍ୟବଶତଃ ଏକ ଛକରେ ଗାଡ଼ି ଅଟକିଲା। ରବି ରାୟ ଗାଡ଼ିର ସମ୍ମୁଖ ସିଟ୍‌ରେ ଝରକା ପାଖକୁ ବସିଥାନ୍ତି। ଲକ୍ଷ୍ୟ କଲି ଏକ ଅପରିଷ୍କାର ପୋଷାକ ପରିହିତ, ଅଯତ୍ନ କେଶ ବର୍ଦ୍ଧିତ, ଶ୍ମଶ୍ରୁଧାରୀ ବ୍ୟକ୍ତି ରବି ରାୟଙ୍କ ନିକଟକୁ ଆସି ପ୍ରଣାମ କଲା ଏବଂ ତାଙ୍କର ଜଣେ ଶ୍ରେଷ୍ଠ ଅନୁଗାମୀ ବୋଲି ପରିଚୟ ଦେଇ ତାଙ୍କ ସହିତ ଅନେକ ସମୟ ଧରି ଗପିଚାଲିଲା। ଶ୍ରୀଯୁକ୍ତ ରାୟ ମଧ୍ୟ ନିର୍ବିକାର ଭାବରେ ତାଙ୍କ ସହିତ ଗପିଚାଲିଥାନ୍ତି; ମାତ୍ର ଏସବୁ ଆମ କେତେଜଣଙ୍କୁ ଅତ୍ୟନ୍ତ ଅସହ୍ୟ ଲାଗୁଥାଏ, କାରଣ ଲୋକଟାର ବେଶଭୂଷା ଆଉ ତା'ର ଢଙ୍ଗଢାଙ୍ଗରୁ ତାକୁ ଯେ କେହି ଜଣେ ପାଗଳ ଭାବିବାର ଯଥେଷ୍ଟ କାରଣ ଥିଲା। ଅଗତ୍ୟା ଡ୍ରାଇଭର ଆସିବାରୁ ଗାଡ଼ି ସେ ଛକ ଛାଡ଼ିଲା ଆଉ ଗାଡ଼ି ସାମାନ୍ୟ ଆଗକୁ ଯାଇଛି କି ନାହିଁ ଆମ ଭିତରୁ ତାଙ୍କର ସବୁଠାରୁ ଅନ୍ତରଙ୍ଗ ନିଜକୁ ସମ୍ଭାଳି ନ ପାରି ରବି ରାୟଙ୍କୁ ପଚ୍ଚାରିଲେ ସାର୍ କ'ଣ ଦରକାର ଥିଲା ସେ ଲୋକଟି ସଙ୍ଗେ ଏତେ ସମୟ ଗପିବା ? ଆପଣ କ'ଣ ତା' ବିଷୟରେ ଭଲ କରି ଜାଣିଛନ୍ତି ? ପ୍ରଥମେ ପ୍ରଥମେ ତାଙ୍କ କଥାକୁ ଶ୍ରୀରାୟ ସାଧାରଣ ଭାବେ ସହ୍ୟ କରିଯାଇଥିଲେ ହେଁ ପରମୂହୂର୍ତ୍ତରେ ତାଙ୍କ ଉପରେ ନିଜର ଅସନ୍ତୋଷ ବ୍ୟକ୍ତ କରି ସେ କହିଲେ, "କି ଅବାନ୍ତର କଥା ସବୁ ତମେ କହୁଛ ? ମଣିଷ ହୋଇ ମଣିଷ ସାଙ୍ଗେ କଥା ହେବନି ତ ଆଉ କ'ଣ ଜୀବଜନ୍ତୁଙ୍କୁ ସହ କଥା ହେବ ?" ଶ୍ରୀଯୁକ୍ତ ରାୟଙ୍କ ମନୋଭାବ ଜାଣି ସେ ଅନ୍ତରଙ୍ଗ ଜଣଙ୍କ ସେଦିନ ଏକଦମ୍ ଚୁପ୍ ହୋଇଯାଇଥିଲେ ଆମ ଫେରିବା ପର୍ଯ୍ୟନ୍ତ।

ବେଳେ ବେଳେ ତାଙ୍କ ସହିତ ମୋର ବୌଦ୍ଧିକ ବିତର୍କ ମଧ୍ୟ ଚାଲେ, ସାଧାରଣଜନତାଙ୍କ ସଂପର୍କରେ, ଦେଶ ଓ ଜାତିର ଦୁର୍ଦ୍ଦଶା ସଂପର୍କରେ ସେ କହୁଥିବା

କଥା କେବଳ ତାଙ୍କ ତୁଣ୍ଡର ନା ପ୍ରକୃତ ହୃଦୟର ଏହା ଜାଣିବାପାଇଁ ବେଳେ ବେଳେ ସେ ବିରୋଧ କରୁଥିବା କାର୍ଯ୍ୟ ସପକ୍ଷରେ ମୁଁ ମତ ରଖେ। ଏଇ ଯେମିତି – ପୋସ୍କୋ, ବେଦାନ୍ତ କମ୍ପାନୀମାନେ ଆସିଲେ ଆମର ଦାରିଦ୍ର୍ୟ ଦୂର ହେବ, ରାଜ୍ୟର ଆର୍ଥିକ ସ୍ଥିତିରେ ସୁଧାର ଆସିବ, ବହୁ ଲୋକ ଚାକିରି ପାଇବେ, ଜନସାଧାରଣଙ୍କ ଜୀବନଧାରଣ ମାନ ବୃଦ୍ଧିପାଇବ ଇତ୍ୟାଦି ... ଇତ୍ୟାଦି। ମୁଁ ଏସବୁ ସପକ୍ଷରେ ଯୁକ୍ତି କରୁଥିବା ବେଳେ ସେ କେବଳ ମୋ ମୁହଁକୁ ଚାହିଁରହି ସବୁ ଧୈର୍ଯ୍ୟର ସହ ଶୁଣନ୍ତି ଆଉ ଶେଷକୁ କହନ୍ତି, "କ'ଣ ସବୁ ସରିଲା ନା ଆଉ କିଛି ବାକି ରହିଲା ଅଧ୍ୟାପକ ମହାଶୟ!" ହଠାତ୍ ଭାବଭଙ୍ଗୀରେ ତାଙ୍କର ପରିବର୍ତ୍ତନ ଆସିଯାଏ, ଏକ ସାତ୍ତ୍ୱିକ ରାଗରେ ମୋ ମୁହଁକୁ ଚାହିଁ କହନ୍ତି ହଇରେ ତୁ କହୁଛୁ ଏ କଥା ? ଜଣେ ବୁଦ୍ଧିଜୀବୀ ହୋଇ ଏଭଳି କଥା କହିବାକୁ ତତେ ଟିକିଏ ଲଜ୍ଜା ଲାଗୁନାହିଁ? ଯେଉଁ ବିଦେଶୀ କମ୍ପାନୀ ଆମମାନଙ୍କର ଜୀବନ-ଜୀବିକାକୁ ବିପନ୍ନ କରିବାକୁ ଧାଇଁ ଆସୁଛନ୍ତି ସେମାନଙ୍କ ସଂପର୍କରେ ତମ ଭଳି ବୁଦ୍ଧିଜୀବୀମାନଙ୍କର ମାନସିକତା କ'ଣ ଏଇଆ ? ବହୁ ସମୟ ଯାଏ ଏ କଥାକୁ ନେଇ ତାଙ୍କର ବ୍ୟତିବ୍ୟସ୍ତତା ଲାଗିରହିଥାଏ ଆଉ ତା'ରି ଭିତରେ ମୁଁ ଜାଣିବାକୁ ଚାହୁଁଥିବା ଉତ୍ତରଟି ମଧ୍ୟ ପାଇସାରିଥାଏ। ବିଶ୍ୱାସ କରିହୁଏନି, ବୟସାଧିକ୍ୟ ସତ୍ତ୍ୱେ ବି ଦେଶ ଓ ଜାତି ପ୍ରତି କି ଅକୁଣ୍ଠ ଭଲପାଇବା!

ବହି ପଢ଼ିବାରେ ଅଦ୍ଭୁତ ନିଶା ତାଙ୍କର। ପ୍ରତିଦିନ ସାଂଧ୍ୟଭ୍ରମଣ ପରେ ଲାଇବ୍ରେରୀକୁ ଆସିବା ଏବଂ ଭିନ୍ନ ଭିନ୍ନ ପୁସ୍ତକ ଖେଳାଇବା ତାଙ୍କର ଗୋଟିଏ ସଉକ। ନିଜ ଲାଇବ୍ରେରୀରୁ ନିଜେ ବହି ନେବାବେଳେ ଖାତାରେ ଦସ୍ତଖତ କରିବାକୁ କେବେ ବି ଭୁଲନ୍ତି ନାହିଁ ସେ। ପୁସ୍ତକ ସଂପର୍କରେ ସେ ସବୁବେଳେ କହନ୍ତି – "My never failing friends are they, with whom I converse day by day".

ବାର୍ଦ୍ଧକ୍ୟଜନିତ ଯନ୍ତ୍ରଣାରେ ସେ ଏବେ ଜଡ଼ିତ ସତ, ସ୍ମରଣଶକ୍ତିର ବିଭ୍ରମ ଘଟିଛି ସତ, ତଥାପି ଏବେ ମଧ୍ୟ ତାଙ୍କ ସ୍ମରଣୀୟ ଉକ୍ତିର ପ୍ରଥମ ପଦଟି ମୁଁ ତାଙ୍କ ପାଖରେ ଆବୃତ୍ତି କଲେ ଏକ ଅସ୍ପଷ୍ଟ କଣ୍ଠରେ ତାଙ୍କ କଣ୍ଠରୁ ବାହାରି ଆସୁଛି ତା'ର ପରବର୍ତ୍ତୀ ପଦ – with whom I converse day by day .....। ବାସ୍ତବରେ ତାଙ୍କର ନିରଳସ ଜୀବନାଦର୍ଶ ମୋ ପାଇଁ ସକଳ ପ୍ରେରଣାର ଉତ୍ସ।

▮▮▮

# ଶ୍ରୀ ରବି ରାୟଙ୍କୁ ମୁଁ ଯେପରି ଜାଣେ

ଶ୍ରୀ ସୁରେନ୍ଦ୍ର ପ୍ରଧାନ

୧୯୪୮ ମସିହାରେ ମୁଁ ବଉଦ ହାଇସ୍କୁଲରୁ ମାଟ୍ରିକ୍ ପ୍ରଥମ ଶ୍ରେଣୀରେ ପାସ୍ କଲି ଓ ସାଇନ୍ସ ପଢ଼ିବା ପାଇଁ କଟକ ରେଭେନ୍ସା କଲେଜରେ ଆଇ.ଏସି.ସି.ରେ ନାମ ଲେଖାଇଲି। ରେଭେନ୍ସା କଲେଜର ପଶ୍ଚିମ ଛାତ୍ରାବାସରେ ରହୁଥିଲି। ରେଭେନ୍ସା କଲେଜର ରୁମ୍ ନଂ ୩୭ ପଶ୍ଚିମ ଛାତ୍ରାବାସକୁ ଲାଗିଛି। ହଷ୍ଟେଲ୍‌ରୁ କଲେଜକୁ ଯିବାପାଇଁ ରୁମ୍ ନଂ ୩୭ ପାଖ ଦେଇ ଯିବାକୁ ହୁଏ। ମୁଁ ସେଇ ସମୟରେ ଦିନେ କଲେଜକୁ ଗଲାବେଳେ ରୁମ୍ ନଂ ୩୭ ପାଖରେ ଶ୍ରୀ ରବିରାୟଙ୍କ ସହିତ ଭେଟ ହେଲା। ମୋ ସାଙ୍ଗରେ ମୋର ଜଣେ ସମ୍ପର୍କୀୟ ଭାଇ ଡାକ୍ତର ଗୌରମୋହନ ବିଶ୍ୱାଳ ଥାଆନ୍ତି। ସେ ରବି ରାୟଙ୍କ ସହିତ ମୋର ପରିଚୟ କରାଇଦେଲେ। ସେଇଦିନଠାରୁ ପ୍ରାୟ ପ୍ରତିଦିନ ରବି ରାୟଙ୍କ ସହିତ କଲେଜରେ ଦେଖାହୁଏ।

ସେତେବେଳେ ରବି ରାୟ ବି.ଏ. ପାସ୍ କରି ମଧୁସୂଦନ ଆଇନ କଲେଜରେ ଆଇନ ପଢୁଥା'ନ୍ତି। ମଧୁସୂଦନ ଆଇନ କଲେଜ ଓ ରେଭେନ୍ସା କଲେଜ ସେଇ ଗୋଟିଏ ଜାଗାରେ ଚାଲିଥାଏ। ଜଣେ ପ୍ରିନ୍ସିପାଲଙ୍କ ଅଧୀନରେ ଦୁଇଟିଯାକ କଲେଜ ଚାଲିଥାଏ। ଆଇ କଲେଜର କ୍ଲାସ ସବୁ ସକାଳୁ ହୁଏ। ରବି ରାୟ ସେତେବେଳେ ସମାଜବାଦୀ ଦଳର ଯୁବ-ଛାତ୍ର ସଂଗଠନର ନେତା। ସେ ମତେ କଲେଜରେ ବି.ଏ., ବି.ଏସ୍.ସି. ଆଦି କ୍ଲାସ୍‌ରେ ପଢୁଥିବା ସମାଜବାଦୀ ଛାତ୍ରମାନଙ୍କ ସହିତ ପରିଚୟ କରାଇଦେଲେ। କ୍ରମେ ମୁଁ ମଧ ସମାଜବାଦୀ ଯୁବ ଛାତ୍ର ସଂଗଠନର ଜଣେ ସଦସ୍ୟ ହୋଇଥିଲି। ସମାଜବାଦୀ ଦଳର ପ୍ରଦୀପ୍ତ କିଶୋର ଦାସ, କୁଳମଣି ମହାପାତ୍ର, ଶ୍ରମିକନେତା ଧୂଳେଶ୍ୱର ବସ୍ତିଆ ଆଦିଙ୍କ ସହିତ ମୋର ପୂର୍ବରୁ ପରିଚୟ ଥାଏ। ଛାତ୍ର ଆନ୍ଦୋଳନ ସଂକ୍ରାନ୍ତରେ ସେମାନେ ସବୁ ବଉଦ ଗଲାବେଳେ ସେଇଠାରେ ସେମାନଙ୍କ ସହିତ ମୋର ପରିଚୟ ହୋଇଥାଏ।

ତା'ପରେ ଆସିଲା କଲେଜ ଇଉନିୟନ ନିର୍ବାଚନ। ରବି ରାୟ ରେଭେନ୍ସା କଲେଜ ଇଉନିୟନ୍‌ର ସଭାପତି ପଦ ନିମନ୍ତେ ପ୍ରାର୍ଥୀ ହେଲେ। ଆମେ ସବୁ ସମାଜବାଦୀ

ଛାତ୍ରମାନେ ତାଙ୍କ ପାଇଁ ପ୍ରଚାର କରୁଥାଉ। ଅନୁଗୁଳ ତଳମୂଳର ହୃଦାନନ୍ଦ ତ୍ରିପାଠୀ ମୋର ଉପର ଶ୍ରେଣୀରେ ପଢୁଥାଆନ୍ତି ଓ କଟକ ସୁଇଟ୍ ଷ୍କୁଲ୍ ପଛପଟେ ଥିବା ଅନୁଗୁଳ ମେସ୍‌ରେ ରହୁଥାଆନ୍ତି। ତାଙ୍କ ସହିତ ଏ ଭିତରେ ପରିଚୟ ହୋଇଯାଇଥାଏ। କଲେଜ ଇଉନିୟନ୍ ନିର୍ବାଚନରେ ରବି ରାୟଙ୍କର ବିଜୟ ହେଲା ଓ ସେ ରେଭେନ୍ସା କଲେଜ ଇଉନିୟନ୍‌ର ସଭାପତି ନିର୍ବାଚିତ ହେଲେ। ଆମ ସମସ୍ତଙ୍କର ଖୁସିର ସୀମା ନଥାଏ। ନିର୍ବାଚନ ଜିତିବାର ମୋର ପ୍ରଥମ ଅନୁଭୂତି।

ସନ୍ଧ୍ୟାରେ ମାଡ୍ରାସ୍ ହୋଟେଲରେ ସମାଜବାଦୀ ଛାତ୍ରବନ୍ଧୁମାନଙ୍କ ସହିତ ପ୍ରାୟ ଦେଖାହୁଏ। ରେଭେନ୍ସା କଲେଜ ସାମନାରେ ମାଡ୍ରାସ୍ ହୋଟେଲ। ଶସ୍ତାରେ ପେଟ ପୂରିଲା ଭଳି ଜଳଖିଆ ମିଳେ ବୋଲି ସେଠାରେ ଆମ୍ଭମାନଙ୍କର ଭିଡ଼। ରବି ରାୟ ମଧ୍ୟ ମାଡ୍ରାସ୍ ହୋଟେଲକୁ ଜଳଖିଆ ଖାଇବାପାଇଁ ଯାଆନ୍ତି। ମାଡ୍ରାସ୍ ହୋଟେଲରେ ଜଳଖିଆ ଖାଇସାରିବା ପରେ ଆମେ ସବୁ ଦଳବାନ୍ଧି ରେଳଷ୍ଟେସନରେ ଥିବା ହୁଇଲର୍ ବହିଦୋକାନକୁ ଯାଉ ଓ ସେଠାରେ ବହିପତ୍ର ଦେଖାଦେଖି କରୁ। କିଛି ନୂଆ ବହି ଆସିଥିଲେ ଓ ଦାମ୍ ଅଧିକ ଥିଲେ ଉପସ୍ଥିତ ସମସ୍ତେ ଚାନ୍ଦାକରି ବହିଟିକୁ କିଣି ପକାଉ। ପାଳିକରି ସମସ୍ତେ ବହିଟିକୁ ପଢ଼ିଥାଉ।

ରାଣୀହାଟରେ ଗୌର ପଟ୍ଟନାୟକ ଓ କୁଞ୍ଜ ମହାନ୍ତିଙ୍କର ଗୋଟିଏ ଫଟୋ ଷ୍ଟୁଡ଼ିଓ ଥାଏ। ସେଠାରେ ୨୫/୩୦ ଜଣ ପାଖାପାଖି ବସି ପାରିବାର ସୁବିଧା ଥାଏ। ସପ୍ତାହର ପ୍ରତ୍ୟେକ ରବିବାର ଦିନ ସେଠାରେ ଆମର ପାଠଚକ୍ର ହୋଇଥାଏ। ଆମେ ସବୁ ତକାତକି ହୋଇ ନିର୍ଦ୍ଦିଷ୍ଟ ସମୟରେ ସେଠି ପହଞ୍ଚିଥାଉ। ପାଠଚକ୍ରରେ ଆଦର୍ଶବାଦ ସହିତ ଦେଶର ସାମ୍ପ୍ରତିକ ମହତ୍ତ୍ୱପୂର୍ଣ୍ଣ ଘଟଣାବଳି ଉପରେ ମଧ୍ୟ ଆଲୋଚନା ହୁଏ। ମଝିରେ ମଝିରେ ଆମେ ପଢ଼ିଥିବା ଭଲ ବହିକୁ ନେଇ ମଧ୍ୟ ଆଲୋଚନା ହୁଏ। ବେଳେବେଳେ ଆମେ ସବୁ ପାଠଚକ୍ର ଶେଷକରି ଚାଲି ଚାଲି ଓଡ଼ିଆ ବଜାରସ୍ଥ ପାର୍ଟି ଅଫିସକୁ ଯାଇଥାଉ। ସେଠାରେ ପାର୍ଟିର ବଡ଼ ବଡ଼ ନେତା, ଯଥା - ସୁରେନ୍ଦ୍ର ଦ୍ୱିବେଦୀ, ବିଶ୍ୱନାଥ ପଣ୍ଡିତ, ବାଙ୍କବିହାରୀ ଦାସ ଆଦିଙ୍କ ସହିତ ସାକ୍ଷାତ ହୁଏ। ପାର୍ଟି ଭିତରେ ଚାଲିଥିବା ଗୁରୁତ୍ୱପୂର୍ଣ୍ଣ ଘଟଣାବଳି ସଂକ୍ରାନ୍ତରେ ଆଲୋଚନା, ତର୍କବିତର୍କ ହୁଏ।

ପାଠଚକ୍ର ଏବଂ ଓଡ଼ିଆବଜାର ପାର୍ଟି ଅଫିସରେ ଆଲୋଚନା ଦ୍ୱାରା ମୋର ପାର୍ଟି ତଥା ଦେଶର ରାଜନୀତି ସଂକ୍ରାନ୍ତରେ ଜ୍ଞାନର ପରିସୀମା ବୃଦ୍ଧି ହୁଏ।

ତା'ପରେ ଆସିଲା ୧୯୫୨ର ସାଧାରଣ ନିର୍ବାଚନ। ସମାଜବାଦୀ ଯୁବକମାନଙ୍କ ମଧ୍ୟରୁ ଶ୍ରୀ କୁଳମଣି ମହାପାତ୍ର ବଡ଼ଚଣା ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶାର

ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ବିରୁଦ୍ଧରେ ପ୍ରାର୍ଥୀ ହୋଇଥିଲେ। ଆମେ ସବୁ ବଡ଼ଚଣା ଯାଇ ପ୍ରଚାର କରୁଥିଲୁ। ବିନା ପଇସାରେ ନିର୍ବାଚନ ଲଢ଼ିବାର ଅନୁଭୂତି। ଗାଁଗହଳରେ ବୁଲିଲାବେଳେ ଗାଁମାନଙ୍କୁ ପ୍ରଚାର କରିବାକୁ ଯାଇ ପରିବାର ପିଛା ଜଣେ ଜଣେ ମାଗିକରି ଖାଇ ସେ ନିର୍ବାଚନ ଲଢୁଥିଲୁ। ସେତେବେଳେ ଲୋକେ ମଧ୍ୟ ଆଗ୍ରହର ସହିତ ଆମକୁ ଖାଇବାକୁ ଦେଉଥିଲେ। ମୁଖ୍ୟମନ୍ତ୍ରୀ ବିରୁଦ୍ଧରେ ଲଢ଼ି ଜିତିବାର ସମ୍ଭାବନା ନଥିଲା ଏବଂ ଆମେ ନିର୍ବାଚନରେ ହାରିବା କଥା ଏବଂ ହାରିଲୁ।

ସେଥର ସାଧାରଣ ନିର୍ବାଚନରେ ଆଶାନୁରୂପ ସଂଖ୍ୟାରେ ପ୍ରାର୍ଥୀ ପାର୍ଲାମେଣ୍ଟକୁ ଜିଣି ପାରିଲେ ନାହିଁ। କମ୍ୟୁନିଷ୍ଟ ପାର୍ଟିର ଲୋକସଭାରେ ଅଧିକ ସଂଖ୍ୟାରେ ପ୍ରାର୍ଥୀ ଜିତିଲେ। ପରିଣାମରେ ପାର୍ଟି ମଧ୍ୟରେ ନିରାଶାର ବାତାବରଣ ଖେଳିଗଲା। ସେତିକିବେଳେ ଆଚାର୍ଯ୍ୟ କୃପାଳିନୀଙ୍କ ନେତୃତ୍ୱରେ ଗଢ଼ାଯାଇଥିବା କୃଷକ ମଜଦୁର ପ୍ରଜାପାର୍ଟି ସହିତ ସୋସାଲିଷ୍ଟ ପାର୍ଟିର ମିଶ୍ରଣପାଇଁ ଆଚାର୍ଯ୍ୟ କୃପାଳିନୀଙ୍କର ଆହ୍ୱାନକୁ ଗ୍ରହଣ କରିବାକୁ ଡକ୍ଟର ଲୋହିଆ ପାର୍ଟି ନେତାମାନଙ୍କୁ ପରାମର୍ଶ ଦେଲେ ଏବଂ ନିଜେ ପାରୁପର୍ଯ୍ୟନ୍ତ ଲାଗିପଡ଼ି ଦୁଇପାର୍ଟିର ମିଶ୍ରଣ କରାଇଥିଲେ। ପାର୍ଟିର କଳେବର ବୃଦ୍ଧି ହେବାରୁ କିଛି ପରିମାଣରେ ନେତା ତଥା କର୍ମୀମାନଙ୍କ ମନରୁ ନିରାଶା ଦୂର ହେଲା।

ତ୍ରାଭାଙ୍କୋର କୋଚିନ୍‌ରେ ପ୍ରଥମେ କମ୍ୟୁନିଷ୍ଟ ପାର୍ଟି ନିର୍ବାଚିତ ସରକାର ଗଠନ କରିଥିଲା; କିନ୍ତୁ ନେହେରୁଙ୍କ ଚକ୍ରାନ୍ତରେ ସେ ମନ୍ତ୍ରୀମଣ୍ଡଳକୁ ଭାଙ୍ଗି ଦିଆଗଲା। ତା'ପରେ ପ୍ରଜା ସୋସାଲିଷ୍ଟ ପାର୍ଟିର ପଟ୍ଟମଥାନୁପିଲାଇଙ୍କ ମୁଖ୍ୟମନ୍ତ୍ରୀତ୍ୱରେ କଂଗ୍ରେସ ସହଯୋଗରେ ଏକ ସଂଖ୍ୟାଲଘୁ ସରକାର ଗଢ଼ାହେଲା। ଏହି ସରକାର ଗଢ଼ାହେବାର ଅଳ୍ପ କେତେଦିନ ପରେ ନିରସ୍ତ୍ର ଜନତାଙ୍କ ଉପରେ ଗୁଳିକରି କିଛି ବିକ୍ଷୋଭକାରୀଙ୍କୁ ହତ୍ୟାକଲା। ଡକ୍ଟର ଲୋହିଆ ସେତେବେଳେ ପାର୍ଟିର ସାଧାରଣ ସମ୍ପାଦକ ଏବଂ ଉତ୍ତରପ୍ରଦେଶରେ ଜଳକର ବିରୋଧୀ ଆନ୍ଦୋଳନରେ ନେତୃତ୍ୱ ନେଇ ଗିରଫ ହୋଇ ଜେଲ୍‌ରେ ଥାଆନ୍ତି। ନୈତିକତା ଦୃଷ୍ଟିରୁ ସେ ତ୍ରାଭାଙ୍କୋର କୋଚିନ୍‌ର ମୁଖ୍ୟମନ୍ତ୍ରୀଙ୍କୁ ବିଗ୍ଧର ବିଭାଗୀୟ ତଦନ୍ତ ପାଇଁ ଏବଂ ତା' ସଙ୍ଗେ ସଙ୍ଗେ ନୈତିକ ଦାୟିତ୍ୱ ନିଜ ମୁଣ୍ଡକୁ ନେଇ ଇସ୍ତଫା ଦେବାକୁ ଜେଲ୍‌ରୁ ଟେଲିଗ୍ରାମ ଦ୍ୱାରା ନିର୍ଦ୍ଦେଶ ଦେଲେ। ଏ ନିର୍ଦ୍ଦେଶର ନକଲ ମଧ୍ୟ ତତ୍କାଳୀନ ସଭାପତି ଆଚାର୍ଯ୍ୟ କୃପାଳିନୀଙ୍କୁ ଦେଇ ତୁରନ୍ତ କେନ୍ଦ୍ରୀୟ କାର୍ଯ୍ୟକାରିଣୀର ବୈଠକ ଡାକି ତ୍ରାଭାଙ୍କେର କୋଚିନ୍ ଗୁଳିକାଣ୍ଡ ବିଷୟରେ ଆଲୋଚନା କରି ନିଷ୍ପତ୍ତି ନେବାପାଇଁ ଅନୁରୋଧ କଲେ। କିନ୍ତୁ ତାଙ୍କର କୌଣସି ନିର୍ଦ୍ଦେଶ ପାଳନ ନହେବାରୁ ସେ ନିଜ ପଦରୁ ଇସ୍ତଫା ଦେଲେ। ପାର୍ଟିର କୌଣସି ନେତା ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବାକୁ

ଚାହୁଁନଥିଲେ। ତେଣୁ, ପାର୍ଟିରେ ଏକ ବଡ଼ ସଙ୍କଟ ସୃଷ୍ଟିହେଲା। ସର୍ବଶେଷରେ, ଏଇ ଘଟଣାକୁ ନେଇ ପାର୍ଟି ଦୁଇଭାଗ ହୋଇଗଲା ଏବଂ ଡକ୍ଟର ଲୋହିଆ ଏବଂ ତାଙ୍କର ସହଯୋଗୀ ଭାବରେ ମଧୁଲିମାୟ ଆଦିଙ୍କୁ ବହିଷ୍କାର କରାଗଲା।

ଉପରୋକ୍ତ ସଙ୍କଟର ପଟ୍ଟଭୂମିରେ ପୁରୀରେ ଅଖିଳ ଭାରତ ସମାଜବାଦୀ ଯୁବକ ସଭାର ଜାତୀୟ ସମ୍ମିଳନୀ ହେଲା। ରବି ରାୟଙ୍କ ନେତୃତ୍ୱରେ ଆମେ ସବୁ ପୁରୀରେ ରହି ସମ୍ମିଳନୀର ଆୟୋଜନରେ ଲାଗିପଡ଼ିଲୁ। ଡକ୍ଟର ଲୋହିଆ, ମଧୁଲିମାୟ ଆଦି ବହୁ ସର୍ବଭାରତୀୟ ନେତାଙ୍କୁ ଏ ସମ୍ମିଳନୀରେ ଦେଖିବା ଏବଂ ସେମାନଙ୍କର ଭାଷଣ ଶୁଣିବାର ଅବକାଶ ମିଳିଲା। ପାର୍ଟି ଭିତରେ ସଙ୍କଟ ଲାଗିରହି ଶେଷରେ ମଧୁଲିମାୟ ଏବଂ ଡକ୍ଟର ଲୋହିଆ ଆଦି ପାର୍ଟିର ସଂସ୍ଥାପକମାନଙ୍କର ପାର୍ଟିରୁ ବାହାର କରିଦିଆଯିବାରୁ ୧୯୫୬ ଜାନୁଆରୀ ପହିଲା ଦିନ ହାଇଦ୍ରାବାଦ ସମ୍ମିଳନୀରେ ନୂତନ ସୋସାଲିଷ୍ଟ ପାର୍ଟି ଗଠିତ ହେଲା। ବାକି ଯେଉଁମାନେ ପ୍ରଜାସୋସାଲିଷ୍ଟ ପାର୍ଟିରେ ରହିଲେ ଆସ୍ତେ ଆସ୍ତେ ସେମାନେ କଂଗ୍ରେସର ସମର୍ଥକ ପାଲଟିଲେ କିମ୍ବା କଂଗ୍ରେସରେ ମିଶିଲେ। ଡକ୍ଟର ଲୋହିଆଙ୍କ ନେତୃତ୍ୱରେ ଗଠିତ ସୋସାଲିଷ୍ଟ ପାର୍ଟି ଦେଶରେ ଗୋଟିଏ କଂଗ୍ରେସ ବିରୋଧୀ ନୀତିନିଷ୍ଠ ପାର୍ଟି ଭାବରେ ସର୍ବଭାରତୀୟ ରାଜନୀତିରେ ଆବିର୍ଭାବ ହେଲା।

ମୁଁ ଆଇ.ଏସ୍.ସି. ପାସ୍ କରି ବି.ଏ. ପଢ଼ି ପାସ୍‌କଲି ଓ ତା'ପରେ ଲ' ପଢ଼ି ମଧ ପାଶ୍ କରିଗଲି। ଘରର ପରିସ୍ଥିତି ଦୃଷ୍ଟିରୁ ଓକିଲାତି ନକରି ଚାକିରି କରିବାକୁ ପଡ଼ିଲା। ପାଇକି ସାହି ମାଇନର ସ୍କୁଲ ଏବଂ ଛେଣ୍ଡିପଦା ଓ ବାଗଡିଆ ହାଇସ୍କୁଲ ଆଦିରେ ଚାକିରି କରିସାରିଲା ପରେ ମୁଁ ନିଜ ଚେଷ୍ଟାରେ କିଶୋରନଗରଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରି ସେଇ ସ୍କୁଲରେ ପ୍ରଧାନଶିକ୍ଷକ ହୋଇ ରହିଲି।

୧୯୬୭ ନିର୍ବାଚନରେ ମୁଁ କିଶୋରନଗରରୁ ବିଧାନସଭା ପାଇଁ ପ୍ରାର୍ଥୀ ହୋଇ ବିଜୟଲାଭ କରିଥିଲି। ସେତେବେଳେ ରବି ରାୟ ନିଜେ ପୁରୀ ଲୋକସଭା ଆସନ ପାଇଁ ପ୍ରାର୍ଥୀ ହୋଇଥିବାରୁ ମୋପାଇଁ ପ୍ରଚାର କରିବାକୁ ଆସିପାରି ନଥିଲେ। ତା'ପରେ ମୁଁ ପୁଣି ୧୯୭୧ରେ ବିଧାନ ସଭା ପାଇଁ ପ୍ରାର୍ଥୀ ହେଲାବେଳେ ରବି ରାୟ ଏକାଧିକବାର ମୋର ନିର୍ବାଚନ ମଣ୍ଡଳୀକୁ ଆସି ମୋତେ ଜିତାଇବାରେ ସାହାଯ୍ୟ କରିଥିଲେ।

ମୁଁ ସ୍କୁଲମାନଙ୍କରେ ଚାକିରି କରୁଥିବା ସମୟରେ ଟିକରପଡ଼ା ବନ୍ଧ ବିରୋଧୀ ଆନ୍ଦୋଳନ ହେଲା। ରବି ରାୟ ଅନ୍ୟ ବନ୍ଧୁମାନଙ୍କ ସହିତ ଆସି ଟିକରପଡ଼ା ବନ୍ଧ ବିରୋଧୀ ଆନ୍ଦୋଳନକୁ ସଂଗଠିତ କରୁଥାଆନ୍ତି। ମୁଁ ଚାକିରି କରିଥିବାରୁ ପ୍ରତ୍ୟକ୍ଷ ଭାବରେ

ଆନ୍ଦୋଳନରେ ସାମିଲ ହୋଇପାରି ନଥିଲେ ସୁଦ୍ଧା ବାହାରେ ରହି ମୋର ଶକ୍ତିମତେ ଆନ୍ଦୋଳନକୁ ସାହାଯ୍ୟ କରୁଥିଲି।

ମୁଁ ରବି ରାୟଙ୍କୁ ଜାଣିବା ପରଠାରୁ ତାଙ୍କ ସହିତ ମୋର ସହୃଦୟତା ଓ ସଦିଚ୍ଛାର ବନ୍ଧନ ରହିଆସିଛି। ସେ ମତେ ପ୍ରଥମେ ଜାଣିବା ପରେ ପରେ ମୋ ବିଷୟରେ ସବୁ ଟିକିନିଖି ଖବର ପଚାରି ବୁଝିନେଇଥିଲେ। ମୋର ପରିବାର ସଂପର୍କରେ ମଧ୍ୟ ସବୁ କଥା ମୋଠାରୁ ସଂଗ୍ରହ କରିନେଇଥିଲେ। ଯାହା ସହିତ ତାଙ୍କର ପରିଚୟ ହୁଏ, ସେ ତା' ସଂକ୍ରାନ୍ତରେ ସବୁ କଥା ଟିକିନିଖି ଭାବରେ ଜାଣିନିଅନ୍ତି ଏବଂ ଥରେ ଯାହାକୁ ଦେଖି ପରିଚିତ ହୋଇଥିବେ, ତାକୁ କେବେହେଲେ ଭୁଲନ୍ତିନାହିଁ। ଯେତେଦିନ ପରେ ଦେଖାହେଲେ ବି ସାଙ୍ଗେ ସାଙ୍ଗେ ଚିହ୍ନିପକାନ୍ତି। ଜଣେ ନେତାର ଏହା ଗୋଟିଏ ବଡ଼ ସମ୍ବଳ। ଏ ସମ୍ବଳଟି ରବି ରାୟଙ୍କର ପ୍ରଚୁର ପରିମାଣରେ ଥିଲା ଏବଂ ସଂଗଠନ ପାଇଁ ତାଙ୍କର ଏହା ଗୋଟିଏ ବଡ଼ ସମ୍ବଳ ଥିଲା। କିନ୍ତୁ, ତାଙ୍କର ଗୋଟିଏ ଦୁର୍ବଳତା ଥିଲା ଯେ ପାର୍ଟି ସଂଗଠନ ପାଇଁ ପାଣ୍ଠି ସଂଗ୍ରହ କରିବାରେ ସେ ସଂପୂର୍ଣ୍ଣ ଅପାରଗ। କାହାରିକୁ ମୁହଁ ଖୋଲି ଅର୍ଥ ସାହାଯ୍ୟ ମାଗିପାରନ୍ତି ନାହିଁ। କେବଳ ତାଙ୍କର ସ୍ନେହପୂର୍ଣ୍ଣ ସମ୍ବଳକୁ ବ୍ୟବହାର କରି ସେ ସର୍ବଭାରତୀୟ ରାଜନୀତିରେ ଏତେଦୂର ଯାଇପାରିଲେ। ତା'ସହିତ ଥିଲା ତାଙ୍କର ନୀତିନିଷ୍ଠତା ଓ ସଚ୍ଚୋଟପଣିଆ। ସେ ରବି ରାୟ ବର୍ତ୍ତମାନ ରୋଗଶଯ୍ୟାରେ। ତାଙ୍କର ବର୍ତ୍ତମାନ ଅବସ୍ଥା ଦେଖିଲେ ବିଶ୍ୱାସ କରିହୁଏ ନାହିଁ ଯେ ଏଇ ସେ ରବି ରାୟ।

ମୁଁ ତାଙ୍କର ସୁସ୍ଥ ଓ ଦୀର୍ଘ ଜୀବନ କାମନା କରୁଛି।

■■■

# ସମାଜବାଦର ଥାତି

**ଶ୍ରୀ ସୁରେନ୍ଦ୍ର ମୋହନ**

ଶ୍ରୀ ରବିରାୟ ଗଣତାନ୍ତ୍ରିକ ସମାଜବାଦୀ ଆନ୍ଦୋଳନର ଦ୍ୱିତୀୟ ପୀଢ଼ିର ଜଣେ ପ୍ରମୁଖ ଆଗୁଆ ନେତା। ସେ ନିଜ ପ୍ରତିଭା, କର୍ମଠତା ଓ ନିଃସ୍ୱାର୍ଥ ସେବା ଦ୍ୱାରା ସମାଜବାଦୀ ଆନ୍ଦୋଳନର ସବୁ କ୍ଷେତ୍ରରେ ଗୌରବମୟ ଅବଦାନ ଦେଇସାରିଛନ୍ତି। ସବୁ ସଂଗ୍ରାମରେ ସେ ଆଗରେ। ଓଡ଼ିଶାରେ ବନ୍ୟା ପ୍ରପୀଡ଼ିତଙ୍କ ସାଥୀରେ ସେ ସଦାସର୍ବଦା, ତାଙ୍କର ସଂସଦୀୟ ଜୀବନ ବେଶ୍ ଦୀର୍ଘ ୧୯୬୭ ରୁ ୧୯୭୧, ୧୯୮୯ ରୁ ୧୯୯୬ ଲୋକସଭାର ଓ ମଝିରେ ୧୯୭୪ ରୁ ୧୯୮୦ ଯାଏ ରାଜ୍ୟସଭାର ସେ ସଦସ୍ୟ ଥିଲେ। ୧୯୮୯ ରୁ ୧୯୯୧ ଯାଏ ସେ ଲୋକସଭାର ବାଚସ୍ପତି ଥିଲେ। ମୋରାରାଜୀଙ୍କ ମନ୍ତ୍ରିମଣ୍ଡଳରେ ସଦସ୍ୟ ଥିଲେ। ଏହି ଦିନମାନଙ୍କରେ ସେ ଜନହିତକର ପ୍ରଶ୍ନ ଓ ସମସ୍ୟାମାନ ଉଠାଇ ତା'ର ସମାଧାନ ପାଇଁ ସରକାରଙ୍କ ଉପରେ ଚାପ ପକାଇଛନ୍ତି। ସେ ଚାଷୀ ସମସ୍ୟାକୁ ନେଇ ଅନବରତ ସଂଗ୍ରାମ କରିଛନ୍ତି ସେଥିପାଇଁ ଜେଲ ବି ଯାଇଛନ୍ତି।

ତିବ୍ବତ ମୁକ୍ତି ଆନ୍ଦୋଳନ ପାଇଁ ଶ୍ରୀ ରବିରାୟ ବେଶ୍ ସକ୍ରିୟ। ଲୋକଶକ୍ତି ଆନ୍ଦୋଳନ ମାଧ୍ୟମରେ ସେ ଗଣତନ୍ତ୍ର, ସମାଜବାଦ ଓ ଧର୍ମନିରପେକ୍ଷତା ପାଇଁ ଜନଜାଗରଣ କରୁଛନ୍ତି।

ଶ୍ରୀ ରବିରାୟଙ୍କ ସଚ୍ଚରିତ୍ରତା ଓ ଭଦ୍ରତା ଅନୁଗାମୀଙ୍କୁ ଓ ସହକର୍ମୀଙ୍କୁ ବାରମ୍ବାର ଶିକ୍ଷା ଦେଉଛି - ନିଃସ୍ୱାର୍ଥପର ଲୋକସେବା ସ୍ୱୟଂ ଏକ ଉଚ୍ଚ ଅନୁଭବ। ମୁଁ ଗର୍ବିତ ଯେ ତାଙ୍କ ସହ କାମ କରିବାର ସୁଯୋଗ ମତେ ମିଳିଛି। ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି।

*(ସଂଗୃହୀତ ଲେଖା)*

▮▮▮

# ମହାନ ଜନନେତା – ରବି ରାୟ

**ଶ୍ରୀ ସୁଶାନ୍ତ କୁମାର ଘନ୍ଦ**

ଲୋକସଭାର ପୂର୍ବତନ ବାଚସ୍ପତି ମାନନୀୟ ରବିରାୟ ୧୯୬୭ ମସିହା ଲୋକସଭା ନିର୍ବାଚନରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ପ୍ରାର୍ଥୀ ଭାବେ ପୁରୀ ଲୋକସଭା ନିର୍ବାଚନ ମଣ୍ଡଳରୁ ଜୟଯୁକ୍ତ ହୋଇଥିଲେ ଏବଂ ଲୋକସଭାରେ ଉକ୍ତ ଦଳର ୨୫ ଜଣ ସଦସ୍ୟ ଗ୍ରୁପ୍‌ର ଦଳପତି ରୂପେ ମନୋନୀତ ହୋଇଥିଲେ। ୧୯୬୯ ମସିହାରେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା ଦାବୀରେ ସମଗ୍ର ପ୍ରଦେଶ ବ୍ୟାପୀ ବଡ଼ ଧରଣର ଲଗାତାର ଜନ-ଆନ୍ଦୋଳନ ଚାଲିଥାଏ। ଏଥିରେ ପ୍ରାୟ ସବୁ ରାଜନୈତିକ ଦଳ ତଥା ଛାତ୍ର ଓ ଯୁବକମାନେ ଅଂଶଗ୍ରହଣ କରିଥିଲେ। ଏହି ଆନ୍ଦୋଳନ ପରିପ୍ରେକ୍ଷୀରେ ତତ୍କାଳୀନ ସମାଜବାଦୀ ଯୁବକ ସଭାର ଓଡ଼ିଶା ଶାଖା ତରଫରୁ ପାର୍ଲିଆମେଣ୍ଟ ଭବନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରାଯାଇଥିଲା। ଏଥିରେ ଅଂଶଗ୍ରହଣ କରି ମୁଁ କାରାବରଣ କରିଥିଲି ଏବଂ ଦିଲ୍ଲୀର କେନ୍ଦ୍ରୀୟ ତିହାର ଜେଲରେ ଥିଲି।

କାରାଗାରରୁ ମୁକୁଳିବା ପରେ ମୁଁ ମାନନୀୟ ରବି ରାୟଙ୍କ ସରକାରୀ ବାସଗୃହକୁ ଯାଇ ସେଠାରେ ତାଙ୍କୁ ସାକ୍ଷାତ କରିଥିଲି। ତାହାହିଁ ଥିଲା ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ। ସେହି ପ୍ରଥମ ସାକ୍ଷାତରେ ହିଁ ସେ ମୋତେ ଚିରିକାଳ ପାଇଁ ଆପଣାର କରି ନେଇଥିଲେ। ତାଙ୍କର ମହନୀୟ ବ୍ୟକ୍ତିତ୍ୱ, ଅମାୟିକ ବ୍ୟବହାର ଓ ଉଦାର ହୃଦୟବତ୍ତା ମୋତେ ଅଭିଭୂତ କରିଥିଲା। ୧୯୭୧-୭୨ ମସିହାରେ ଲୋହିଆ ଏକାଡ଼େମୀ ସହ ଯୁକ୍ତ ଥିଲି। ଭୁବନେଶ୍ୱର ୪ ନମ୍ବର ୟୁନିଟ୍‌ର ଏମ୍.ଏଲ୍.ଏ. କଲୋନିରେ ଥିବା ଲୋହିଆ ଏକାଡ଼େମୀର କାର୍ଯ୍ୟାଳୟରେ ପ୍ରାୟ ୪-୫ ବର୍ଷ କାଳ ମାନନୀୟ ରବିବାବୁ ଓ ପୂଜ୍ୟ ସାରଦା ଭାଇଙ୍କ ସହ ମୁଁ ଏକାଠି ରହୁଥିଲି। ଏଣୁ ଏହି ଅବସରରେ ପୂଜ୍ୟ ରବି ରାୟଙ୍କ ସହ ଅନ୍ତରଙ୍ଗ ଭାବେ ମିଶିବା ଏବଂ ତାଙ୍କର ଐକାନ୍ତିକ ସାନ୍ନିଧ୍ୟଲାଭ କରିବା ମୋ ପାଇଁ ସୌଭାଗ୍ୟ ଥିଲା। ତାଙ୍କରି ମାଧ୍ୟମରେ ମୁଁ ଓଡ଼ିଶାର ତଥା ଭାରତବର୍ଷର ବିଶିଷ୍ଟ ରାଜନେତାମାନଙ୍କ ସହ ଘନିଷ୍ଠ ଭାବେ ପରିଚିତ ହେବାର ସୁଯୋଗ ପାଇଥିଲି।

୧୯୭୫ ମସିହା ଜାତୀୟ ଜରୁରୀକାଳୀନ ଅବସ୍ଥାରେ ମାନନୀୟ ରବିବାବୁ ଜାତୀୟ ସ୍ତରର ଅନ୍ୟାନ୍ୟ ବହୁ ବିରୋଧୀ ଦଳର ନେତୃବୃନ୍ଦଙ୍କ ସହିତ ଅମ୍ବାଲା କେନ୍ଦ୍ରୀୟ ଜେଲ୍‌ରେ ବନ୍ଦୀ ହୋଇ ରହିଥିଲେ। ତାଙ୍କ ବଡ଼ଭାଇଙ୍କ ଦେହାନ୍ତ ହୋଇଯିବାରୁ ପାରୋଲରେ ଅନ୍ତରୀଣ ମୁକ୍ତିଲାଭ କରି ସେ ଓଡ଼ିଶା ଆସିଥିଲେ। ଶୁଦ୍ଧିକ୍ରିୟା ଅନ୍ତ୍ୟେଷ୍ଟି କାର୍ଯ୍ୟ ସମାପନ ହେବ ପରେ ସେ ପୁଣି ଅମ୍ବାଲା ପ୍ରତ୍ୟାବର୍ତ୍ତନ କଲେ। ମୁଁ ତାଙ୍କ ସହ ଭୁବନେଶ୍ୱରରୁ ଦିଲ୍ଲୀ ଯାଇଥିଲି। ଦିଲ୍ଲୀରେ ବିହାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଶିଷ୍ଟ ସମାଜବାଦୀ ନେତା ମାନନୀୟ କର୍ପୂରୀ ଠାକୁର ରବିବାବଙ୍କୁ ଛଦ୍ମବେଶରେ ସାକ୍ଷାତ କରିଥିଲେ। କାରଣ ଜରୁରୀକାଳୀନ ଅବସ୍ଥାରେ ଗିରଫଦାରୀ ଏଡ଼ାଇ ସେ ଭୂମିଗତ ହୋଇ ରହିଥିଲେ। ସେମାନଙ୍କର ଏହି ସାକ୍ଷାତ ବେଳେ ମୁଁ ଉପସ୍ଥିତ ଥିଲି ଏବଂ ମୁଁ ଓଡ଼ିଶା ଫେରିବା ସମୟରେ ପୂଜ୍ୟ କର୍ପୂରୀଜୀ ମୋ ସହିତ ଗୋପନରେ କୋଲକାତା ପର୍ଯ୍ୟନ୍ତ ଆସିଥିଲେ। ଏହି ସବୁ ଦୁର୍ଲଭ ସ୍ମୃତି ମୋ ପାଇଁ ଅବିସ୍ମରଣୀୟ ହୋଇରହିଛି ଓ ରହିବ।

ମାନନୀୟ ରବିବାବୁ କେବଳ ମୋର ପରମପୂଜ୍ୟ ରାଜନୈତିକ ନେତା ନଥିଲେ। ସେ ମୋର ସୁଖ-ଦୁଃଖର ସାଥି ଥିଲେ। ତାଙ୍କ ଭଳି ଜଣେ ମହାନ ଉତ୍ତୁଙ୍ଗ ବ୍ୟକ୍ତିଙ୍କୁ ମୁଁ ମୋର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ରୂପେ ପାଇପାରିଥିଲି। ଏହା ମୋର ନରମ ସୌଭାଗ୍ୟ। ମୁଁ ତାଙ୍କ ପରିବାରର ଜଣେ ସଦସ୍ୟ ଥିଲି। ତାଙ୍କର ସହଧର୍ମିଣୀ ଡା. ସରସ୍ୱତୀ ସ୍ୱାଇଁ ମୋତେ ଅତ୍ୟଧିକ ସ୍ନେହ ଶ୍ରଦ୍ଧା କରନ୍ତି। ସେ ବୁର୍ଲା ମେଡ଼ିକାଲ କଲେଜରେ ଅଧ୍ୟାପିକା ଓ ବିଭାଗ ମୁଖ୍ୟ ଥିଲାବେଳେ ମୁଁ ଅସୁସ୍ଥ ହୋଇ ଦୀର୍ଘକାଳ ତାଙ୍କ ସରକାରୀ ବାସଭବନରେ ରହିଥିଲି ଏବଂ ତାଙ୍କର ମାତୃପ୍ରତୀମ ସେବା-ଶୁଶ୍ରୂଷା ଲାଭ କରି କୃତ୍ୟକୃତ୍ୟ ହୋଇଛି। ରବିବାବୁ ଛାତ୍ରାବସ୍ଥାରୁ ଜଣେ ପ୍ରତିଭାବାନ୍, ସଂଗ୍ରାମୀ, ତ୍ୟାଗପୂତ, ଏକନିଷ୍ଠ ଜାତୀୟବାଦୀ ଛାତ୍ରନେତା ଥିଲେ। କୃତିତ୍ୱର ସହିତ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶିକ୍ଷା ସମାପନ କରି ଆଦ୍ୟ ଯୌବନରୁ ସେ ସମାଜବାଦୀ ରାଜନୀତିରେ ଯୋଗ ଦେଇଥିଲେ। ଏଭଳି ସଂକଳ୍ପବଦ୍ଧ ଆଦର୍ଶବାଦୀ ଜନନେତା କ୍ୱଚିତ ଦେଖାଯାଏ। ସେ ତାଙ୍କର ପ୍ରତିଭା ଓ ଏକନିଷ୍ଠ ସାଧନା ବଳରେ ଆଦ୍ୟ ଯୌବନରୁ ହିଁ ଜାତୀୟ ରାଜନୀତିରେ ସୁପ୍ରତିଷ୍ଠିତ ହୋଇପାରିଥିଲେ। କିନ୍ତୁ ତାଙ୍କର ସେହି ସଂଗ୍ରାମୀ ତ୍ୟାଗପୂତ ରାଜନୈତିକ ଜୀବନଧାରା ଜାତୀୟ ରାଜନୀତିର ଉତ୍ତୁଙ୍ଗ ଶିଖରରେ ପହଞ୍ଚିବାରେ ଡା. ସରସ୍ୱତୀ ସ୍ୱାଇଁଙ୍କ ଅବଦାନକୁ ଅଣଦେଖା କରାଯାଇପାରିବ ନାହିଁ। ପୂଜ୍ୟ ରବିବାବୁଙ୍କର ରାଜନୈତିକ ଉତଥାନ-ପତ୍ତନ, ସୁଦିନ-ଦୁର୍ଦ୍ଦିନ, ସୁଖ-ଦୁଃଖରେ ଡା. ସରସ୍ୱତୀ ଦେବୀଙ୍କ ସାହଚର୍ଯ୍ୟ,

ସମର୍ଥନ ଓ ସହଯୋଗ ଭାରତବର୍ଷର ରାଜନୈତିକ ଇତିହାସରେ ଏକ ବିରଳ ନିଦର୍ଶନ। ସରକାରୀ ଚାକିରିରେ ରହି ଜଣେ ଜାତୀୟ ଉତ୍ତୁଙ୍ଗ ସଂଗ୍ରାମୀ ବିରୋଧୀ ଦଳର ନେତାଙ୍କୁ ଏତାଦୃଶ ସାହଚର୍ଯ୍ୟ, ସମର୍ଥନ ଓ ସହଯୋଗ ଦେବା କି ପ୍ରକାର ସାହସ, ତ୍ୟାଗ ଓ ତିତିକ୍ଷାର ଆବଶ୍ୟକ ତାହା ଆକଳନ କରିବା ଅତ୍ୟନ୍ତ ଦୁରୂହ। ବୋଧହୁଏ ପୂଜ୍ୟ ରବିବାବୁଙ୍କ ଆଦର୍ଶ ପ୍ରତି ଡା. ସରସ୍ୱତୀ ଦେବୀଙ୍କର ଏକନିଷ୍ଠ ଅଙ୍ଗୀକାର ଥିବା ଯୋଗୁଁ ଏହା ସମ୍ଭବ ହୋଇପାରିଛି। ଭାରତ ତଥା ଏସିଆ ମହାଦେଶର ତୁଙ୍ଗ ସମାଜବାଦୀ ନେତା ତଥା ଚିନ୍ତାନାୟକ ଡ. ରାମମନୋହର ଲୋହିଆ ବୋଧହୁଏ ସେଥିପାଇଁ ଏହି ଅନନ୍ୟ ଦମ୍ପତିଙ୍କୁ ପ୍ରାଣାଧିକ ସ୍ନେହ କରୁଥିଲେ।

ଡ. ଲୋହିଆଙ୍କ ଅନ୍ତରଙ୍ଗ ସାନ୍ନିଧ୍ୟ ଲାଭ କରିବାପରେ ରବିବାବୁଙ୍କ ଭିତରେ ଥିବା ମହାନ ଆଦର୍ଶବାଦର ସ୍ଫୁଲିଙ୍ଗ ଶତଗୁଣ ତେଜୀୟାନ ଭାବେ ପ୍ରଜ୍ୱଳିତ ହୋଇଉଠିଥିଲା ଏବଂ ତାହା ଭାରତବର୍ଷର ସମାଜବାଦୀ ଆନ୍ଦୋଳନକୁ ଉଦ୍‌ଭାସିତ କରିଥିଲା। ସମଗ୍ର ଭାରବର୍ଷରେ ସମାଜବାଦୀ ଆନ୍ଦୋଳନର ଅନ୍ୟତମ ପୁରୋଭାଗ ତୁଙ୍ଗନେତା ଭାବେ ସେ ପ୍ରତିଷ୍ଠିତ ହୋଇଥିଲେ। ସେ ଯେଉଁଭଳି ନିର୍ଭୀକ, ତେଜସ୍ୱୀ ଓ ଆପୋଷହୀନ ସଂଗ୍ରାମୀ ସେହିଭଳି ସେ ଜଣେ ଉଦାରମନା ଜନ-ଦରଦୀ ଓ ହୃଦୟବାନ୍ ଜନନେତା ଅଟନ୍ତି। ସମଗ୍ର ଭାରତବର୍ଷ ବ୍ୟାପୀ ତାଙ୍କ ହଜାର ହଜାର ସହକର୍ମୀ, ଅନୁଗାମୀ ଓ ଅନ୍ୟମାନେ ଯେଉଁମାନେ ଥରେ ମାତ୍ର ତାଙ୍କର ବ୍ୟକ୍ତିଗତ ସାହଚର୍ଯ୍ୟ ଲାଭ କରିଛନ୍ତି, ସେମାନେ ସମସ୍ତେ ତାଙ୍କର ଉଦାର ହୃଦୟବତ୍ତା ଓ ଐକାନ୍ତିକ ଆତ୍ମୀୟତାକୁ ଅବିସ୍ମରଣୀୟ ସ୍ମୃତି ଭାବେ ସେମାନଙ୍କର ହୃଦୟକନ୍ଦରରେ ସାଇତି ରଖିଛନ୍ତି। ବାସ୍ତବରେ ସେ ହେଉଛନ୍ତି ଧନୀ-ଦରିଦ୍ର, ଉଚ୍ଚ-ନୀଚ, ଯୁବକ-ବୃଦ୍ଧ, ଶିକ୍ଷିତ-ଅଶିକ୍ଷିତ ଦଳମତ ନିର୍ବିଶେଷରେ ଲକ୍ଷଲକ୍ଷ ଆବାଳବୃଦ୍ଧ-ବନିତାଙ୍କ ହୃଦୟ ସାମ୍ରାଜ୍ୟର ମୁକୁଟବିହୀନ ସମ୍ରାଟ। ତାଙ୍କ ଅମାୟିକ ବଚନ, ନିଷ୍କପଟ ଆଚରଣ, ଆନ୍ତରିକତା ଓ ହୃଦୟଖୋଲା ହସ ସମସ୍ତଙ୍କୁ ଚୁମ୍ବକ ସଦୃଶ ଆକର୍ଷଣ କରିଥାଏ। ଯେଉଁ ବ୍ୟକ୍ତି ସହିତ ତାଙ୍କର ଥରେ ମାତ୍ର ସଂଯୋଗ ହୋଇଥାଏ, ସେ ତାଙ୍କର ତିନି ପିଢ଼ିର ସମ୍ପର୍କକୁ ସ୍ମରଣ ରଖିଥାଆନ୍ତି। ଅଦ୍‌ଭୁତ ତାଙ୍କ ସ୍ମରଣ ଶକ୍ତି! ସେଥିପାଇଁ ଅନେକେ ତାଙ୍କୁ ସମ୍ପର୍କର ବିଶ୍ୱକୋଷ (Encyclopedia) ବୋଲି ଅଭିହିତ କରିଥା'ନ୍ତି।

ପୂଜ୍ୟ ରବିବାବୁ ୧୯୭୮ ମସିହାରେ କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ପଦ ମଣ୍ଡନ କରି ଦକ୍ଷତାର ସହ କାର୍ଯ୍ୟନିର୍ବାହ କରିଛନ୍ତି। କିନ୍ତୁ ତାଙ୍କ ରାଜନୈତିକ ଜୀବନର ଶେଷ ପର୍ଯ୍ୟାୟରେ ୧୯୯୦ ମସିହାରେ ଲୋକସଭାର ବାଚସ୍ପତି ଭାବେ ସର୍ବସମ୍ମତି କ୍ରମେ

ନିର୍ବାଚିତ ହୋଇ ସେ ଜାତୀୟ ରାଜନୀତିର ଶିଖର ଦେଶରେ ଉପନୀତ ହେବାର ଗୌରବ ଅର୍ଜନ କରିଛନ୍ତି। ସେହି ପଦ ମର୍ଯ୍ୟାଦାର ଅଧିକାରୀ ହେବାରେ ସେ ହେଉଛନ୍ତି ଓଡ଼ିଶାର ଏକମାତ୍ର ବ୍ୟକ୍ତି। ତାଙ୍କ ବାଚସ୍ପତିତ୍ୱ କାଳରେ ପ୍ରୟାତ ଭି.ପି. ସିଂହ ପ୍ରଧାନମନ୍ତ୍ରୀ ଥିଲେ ଏବଂ ପ୍ରୟାତ ରାଜୀବ ଗାନ୍ଧୀ ଥିଲେ ବିରୋଧୀ ଦଳର ନେତା। ଦଳମତ ନିର୍ବିଶେଷରେ ଲୋକସଭାର ସମସ୍ତ ସଦସ୍ୟମାନଙ୍କର ସେ ଅକଳନୀୟ ଶ୍ରଦ୍ଧା ସମ୍ମାନର ଅଧିକାରୀ ହୋଇପାରିଥିଲେ। ଏତଦ୍‌ବ୍ୟତୀତ ବାଚସ୍ପତି ଭାବେ ତାଙ୍କର କେତେକ ନିଷ୍ପକ୍ଷ ନିଷ୍ପତ୍ତିମୂଳକ ରାୟ (Ruling) ଐତିହାସିକ ଗୁରୁତ୍ୱ ବହନ କରିଛି ଏବଂ ବିଶେଷ କରି ଦଳବଦଳ ଅଧିନିୟମ ଉପରେ ତାଙ୍କର ରୁଲିଂ ଯୁଗାନ୍ତକାରୀ ସିଦ୍ଧାନ୍ତ ହୋଇରହିଛି ଓ ରହିବ।

ପରିଶେଷରେ ଏତିକି କହିବି ଯେ – ଚନ୍ଦ୍ରରେ କଳଙ୍କ ଥାଇପାରେ, କିନ୍ତୁ ନିଜ ନାମକୁ ସାର୍ଥକ କରି ପୂଜ୍ୟ ରବି ରାୟ ଜଣେ ନିଷ୍କଳଙ୍କ ରାଜନେତା ଭାବେ ଭାରତୀୟ ରାଜନୈତିକ ଗଗନରେ ମଧ୍ୟାହ୍ନର ରବିସମ ଜାଜ୍ୱଲ୍ୟମାନ ହୋଇ ପ୍ରତିଭାତ ହେଉଛନ୍ତି – ଏହା ସର୍ବଜନ ସ୍ୱୀକୃତ। ଏହି ପ୍ରଥିତଯଶା, କୃତବିଦ୍ୟ, ଖ୍ୟାତିସମ୍ପନ୍ନ, କୀର୍ତ୍ତିମାନ, ଯଶସ୍ୱୀ, ଜନପ୍ରିୟ, ଜନଦରଦୀ, ଦେଶପ୍ରାଣ ତଥା ଦେଦୀପ୍ୟମାନ ସଂଗ୍ରାମୀ, ନିଷ୍କଳଙ୍କ, ତ୍ୟାଗବୀର ରାଜନେତାଙ୍କ ଶ୍ରୀଚରଣରେ ମୋର ଭକ୍ତିପୂତ ପ୍ରଣତି ଜଣାଇବା ସଙ୍ଗେ ସଙ୍ଗେ ତାଙ୍କର ଅବଶିଷ୍ଟ ଜୀବନ ସୁଖ-ଶାନ୍ତିରେ ଅତିବାହିତ ହେଉ – ଏହାହିଁ ବିଭୁ ପାଦପଦ୍ମରେ ମୋର ଐକାନ୍ତିକ ପ୍ରାର୍ଥନା।

■■■

# ମୋ ଜେଜେବାପା

ସୁଲଗ୍ନା ଭାରତୀ

ଝିଅ, ତୁ ସୀତାଙ୍କ ଭଳି ହେବୁ ନା ଦ୍ରୌପଦୀଙ୍କ ପରି ହେବୁ ? ମୁଁ ଯେବେ ୧୨/୧୩ ବର୍ଷର ହୋଇଥିଲି, ଥରେ ମୋ ଜେଜେବାପା ମୋତେ ପଚାରିଥିଲେ । ମୁଁ ମୋର ଜେଜେବାପାଙ୍କୁ ଜେଜେ ଡାକେ । ଜେଜେ ହେଉଛନ୍ତି ମୋ ଛୋଟବେଳର ସବୁଠାରୁ ପ୍ରିୟ ବ୍ୟକ୍ତି ଏବଂ ମୋ ଜୀବନର ମାର୍ଗଦର୍ଶକ । ଜେଜେ ଯେବେ ଦିଲ୍ଲୀ କିମ୍ବା କଟକରୁ ଆସନ୍ତି କିଛିଦିନ ଭୁବନେଶ୍ୱରରେ ରୁହନ୍ତି ଏବଂ ମୁଁ ଜେଜେଙ୍କର ଛାଇ ହୋଇ ବୁଲୁଥାଏ ।

ମୁଁ ଛୋଟବେଳେ ବହୁତ ସାଧାରଣ ପାଠ ପଢୁଥିବା, କମ୍ କଥା କହୁଥିବା ଝିଅ ଥିଲି । ଜେଜେ ଜାଣିଥିଲେ ଆମର ପୁରୁଷପ୍ରଧାନ ସମାଜରେ ମୋ'ପରି ଝିଅମାନେ ବହୁତ ସମାଜରେ ହଜିଯାଆନ୍ତି । ଜେଜେ ମୋତେ ସବୁବେଳେ ଉତ୍ସାହିତ କରନ୍ତି ନିର୍ଭୟ ହୋଇ ନିଜର ମତ ପ୍ରକାଶ କରିବାପାଇଁ । ବୋଧହୁଏ ସେଥିପାଇଁ ମୋତେ ସେ ପଚାରିଥିଲେ ସୀତା ଏବଂ ଦ୍ରୌପଦୀଙ୍କର ପ୍ରଶ୍ନ । ମୁଁ ଯେବେ କିଛି ସମୟ ଚୁପ୍ ରହିଥିଲି, ଜେଜେ ଆଉଥରେ ପଚାରିଲେ, "ଝିଅ, ତୁ ସୀତାଙ୍କ ପରି ନିଜ ଉପରେ ହୋଇଥିବା ଅତ୍ୟାଚାର/ସମସ୍ୟା ସହିଯିବୁ ନା ଦ୍ରୌପଦୀଙ୍କ ପରି ନିଜର ସ୍ୱରଉତ୍ତୋଳନ କରିବୁ ?"

ଖାଲି ଯେ ନିଜର ସମସ୍ୟା ନେଇ ସ୍ୱରଉତ୍ତୋଳନ କରିବା କଥା ସେଇଆ ନୁହେଁ । ଅନ୍ୟମାନଙ୍କ ବିଷୟରେ ଭାବିବା, ଅନ୍ୟମାନଙ୍କ ସମସ୍ୟା, ଅନ୍ୟମାନଙ୍କର ଅବସ୍ଥା ବିଷୟରେ ଭାବିବା ଏବଂ ସେମାନଙ୍କ ପାଇଁ ନିର୍ଭୟ ହୋଇ ସ୍ୱରଉତ୍ତୋଳନ କରିବା ଯେ ବହୁ ଜରୁରୀ, ତାହା ମୋତେ ମୋ ଜେଜେବାପା କହୁଥିଲେ ।

ମୋ ଜେଜେ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ଭାରତ ଏବଂ ଓଡ଼ିଶା ରାଜନୀତିର ଜଣେ ବରିଷ୍ଠ ସଦସ୍ୟ ଅଛନ୍ତି । ତିବ୍ବତରେ ଚୀନ୍‌ର କବଜା ସମସ୍ୟା ଏବଂ ତିବ୍ବତ-ଭାରତ ସଂପର୍କ ସହ ଜଡ଼ିତ ଅଛନ୍ତି । କାଶୀପୁରରେ ଷ୍ଟିଲପ୍ଲାଣ୍ଟ (Steel Plant) ଯୋଗୁଁ କାଶୀପୁର ବାସିନ୍ଦାଙ୍କର ବିସ୍ଥାପନ ସମସ୍ୟା ସହ ଜଡ଼ିତ ଅଛନ୍ତି । ନିଜପାଇଁ ଜେଜେ କେବେ କିଛି ଚିନ୍ତା କରିବାର ମୁଁ ଦେଖିନାହିଁ । ତାଙ୍କର ନିଜ ବିଷୟରେ କେବେ କିଛି ଅଭିଯୋଗ ନାହିଁ । ମାତ୍ର ଅନ୍ୟମାନଙ୍କର ଛୋଟ ବଡ଼ ସମସ୍ୟା ବହୁତ ଧୈର୍ଯ୍ୟର ସହ ଶୁଣନ୍ତି ଏବଂ ସମାଧାନ କରିବାର ଚେଷ୍ଟା କରନ୍ତି । ମୁଁ ଭାବେ ବୋଧହୁଏ ଏହି ମାନସିକତା ଜେଜେଙ୍କୁ ଅନ୍ୟମାନଙ୍କଠାରୁ ଅଲଗା କରେ । ଆମ୍ଭେମାନେ ଯେତେବେଳେ ନିଜର ଛୋଟ ବଡ଼ ସମସ୍ୟା ଭିତରେ ହଜିଯାଉ, ଏବଂ ତା' ଉପରେ ଥିବା ବଡ଼ ପୃଥିବୀକୁ ଭୁଲିଯାଉ, ଜେଜେ ସେତେବଳେ ବଡ଼ ସମସ୍ୟା ଏବଂ ତା'ର ସମାଧାନ ବିଷୟରେ ଭାବନ୍ତି । ▮▮▮

# ବହି ପଛର କାହାଣୀ

ଡ. ସୁଲୋଚନା ଦାସ

ଦିନେ ଆକୁମାରୀ ହିମାଚଳ ଗୋଟିଏ ମନ୍ତ୍ରରେ ଅଭିମନ୍ତ୍ରିତ ହୋଇଥିଲେ, ତାହା ଥିଲା ସ୍ୱଦେଶାନୁରାଗ। ପରାଧୀନ ଭାରତକୁ ସ୍ୱାଧୀନ କରିବା ପାଇଁ ଗୋଟେ ଜାତି ଉନ୍ମାଦିତ ହୋଇ ଉଠିଥିଲା। ଦେଶ ସ୍ୱାଧୀନ ହେଲା, ହେଲେ ଏ ମୁକ୍ତି ହେଲା କେବଳ ବିଦେଶୀ ରାଷ୍ଟ୍ରୀୟ ବ୍ୟବସ୍ଥାରୁ ଶାସନଗତ ମୁକ୍ତି। ସ୍ୱାଧୀନ ଭାରତ ଆଜି ଯାବତୀୟ ଭ୍ରଷ୍ଟାଚାର, କ୍ଷୁଦ୍ରତା, ନୀଚତା, ଦୁର୍ନୀତି, ଅନ୍ୟାୟ, ଅନୀତି, ଶୋଷଣ, ଅଶିକ୍ଷା, କୁସଂସ୍କାର, ଅନ୍ଧବିଶ୍ୱାସ, ସ୍ୱାର୍ଥଲିପ୍ସା, ଧର୍ମାନ୍ଧତା, ହିଂସା, ଅରାଜକତା, କପଟାଚାର, ବିଚ୍ଛିନ୍ନତାବାଦ ପ୍ରଭୃତି ଅମାନବୀୟ ପ୍ରବୃତ୍ତିରୁ ମୁକ୍ତିଲାଭ କରିଛି କି ? ସ୍ୱଦେଶପ୍ରେମ, ଭାରତୀୟ, ମାନବିକତା ପ୍ରଭୃତି ଚିନ୍ତା ଓ ଚେତନା ସ୍ତରରେ ଯାହା ଭାରତବର୍ଷର ଆତ୍ମାପୁରୁଷର ଐଶ୍ୱର୍ଯ୍ୟ ରୂପେ ବିବେଚିତ ହେଉଥିଲା ତାହା ସ୍ୱାଧୀନ ଭାରତରେ ସୁରକ୍ଷିତ କି ? ଏପରି ପ୍ରଶ୍ନ ଆନ୍ଦୋଳିତ କରିଥାଏ ଚିନ୍ତାଶୀଳ ବ୍ୟକ୍ତିମାନଙ୍କୁ। ଯେଉଁମାନଙ୍କର ନିଜ ଦେଶ ପାଇଁ କିଛିଟା ଆବେଗ ଓ ଅନୁରକ୍ତି ରହିଛି ସେମାନଙ୍କ ହୃଦୟର ହାହାକାର କେବଳ ଦୀର୍ଘଶ୍ୱାସ ରୂପରେ ମହାଶୂନ୍ୟରେ ମିଳାଇଯାଉଛି। ଏ ସମୟର ଯୁବକ ଯୁବତୀମାନେ ଖୁବ୍ କମ୍ ଜାଣନ୍ତି ଗୋଟେ ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ବ୍ୟାପୀ ମହାସଂଗ୍ରାମର କଥା।

କୌଣସି ଏକ ଗଣମାଧ୍ୟମରେ ପ୍ରସାରିତ କୁଇଜ୍ କାର୍ଯ୍ୟକ୍ରମରେ ଜଣେ ପ୍ରତିଯୋଗୀ ସୁଭାଷ ବୋଷ କିଏ ପ୍ରଶ୍ନର ଉତ୍ତରରେ କହିଥିଲେ, ସେ ଦିଲ୍ଲୀରେ କ୍ୟାବିନେଟ୍ ମନ୍ତ୍ରୀ ଥିଲେ। ଭାଗ୍ୟ ଭଲ ତାଙ୍କୁ ଜଣେ ସନ୍ତ୍ରାସବାଦୀ କି କ୍ରିକେଟ୍ ତାରକା କହିନାହାନ୍ତି। ଏଇ ହେଉଛି ଆମ ସମୟର ପିଲାମାନଙ୍କର ସ୍ୱାଧୀନତା ସଂଗ୍ରାମ ସଂପର୍କରେ ଜ୍ଞାନ। କ'ଣ ଗୋଟାଏ ହେଉଛି, ହେଉଥାଏ। କ୍ରିକେଟ୍ ଓ ସିନେମାର ଜଗତରେ ସେମାନେ ଆତଯାତ ହେଉଥାନ୍ତି। ସେମାନଙ୍କ ବିଶେଷଜ୍ଞାନ କହିଲେ ଏହି ତାରକାମାନଙ୍କ ସଂପର୍କିତ ଜ୍ଞାନ। ଏଭଳି ନେଇ ସାରାଜୀବନ ବଞ୍ଚିଥିବା ବ୍ୟକ୍ତିଙ୍କ ସଂପର୍କରେ ଆଲୋଚନା କରିବା ବିଡ଼ମ୍ବନା ମାତ୍ର। ଏହାସତ୍ତ୍ୱେ ଶତକଡ଼ା ପାଞ୍ଚଭାଗ ଉତ୍ତରପିଢ଼ି ଜ୍ଞାନବିଜ୍ଞାନ, ଇତିହାସ, ଭୂଗୋଳ, ରାଜନୀତି ଦର୍ଶନ, ସବୁକ୍ଷେତ୍ରରେ ସେମାନଙ୍କ ପ୍ରଜ୍ଞା ଓ ଧୀମତ୍ତାର ପରିଚୟ

ଦେଉଛନ୍ତି। କେବଳ ଦେଶ ଭିତରେ ନୁହେଁ ଆନ୍ତର୍ଜାତୀୟ ସ୍ତରରେ ମଧ୍ୟ ସେମାନଙ୍କ ସୁନାମ ଓ ପ୍ରତିଷ୍ଠା। ସେଇମାନେ ହିଁ ଏ ଜାତିର ଆଶା ଓ ଆଶ୍ୱସନା। ଏ ଦେଶର ବିହନ ସେମାନେ। ଏ ରାଷ୍ଟ୍ରର ଭବିଷ୍ୟତ, ସ୍ୱପ୍ନ ଓ ସମ୍ଭାବନା।

ଏଇ ପରିପ୍ରେକ୍ଷୀରେ ମନେପଡ଼ନ୍ତି ବହୁ ଜନନେତା, ଯେଉଁମାନେ ମୁକ୍ତି ଆନ୍ଦୋଳନରେ ଝାସ ଦେଇଥିଲେ ଯୁବସୁଲଭ ଉଦ୍ଦାମତାରେ। ମୃତ୍ୟୁ ପାଇଁ ଭୟ ନଥିଲା। ଶାରୀରିକ, ମାନସିକ, ପୀଡ଼ା ଦେଉଥିବା ବ୍ରିଟିଶ୍ ସରକାରଙ୍କ ନାଲିଆଖିକୁ, ବନ୍ଧୁକ ମୁନକୁ ବି ଭୟ ନଥିଲା। ଏକମାତ୍ର ଧ୍ୟାନ ଥିଲା ଦେଶ କିପରି ସ୍ୱାଧୀନ ହେବ। ଏହି ତପଶ୍ଚରଣର ଏକମାତ୍ର ମନ୍ତ୍ରପାଠ ଥିଲା ପରାଧୀନତାରୁ ମୁକ୍ତି। ମାତୃଭୂମି ପାଇଁ ଆତ୍ମ ବଳିଦାନ ଥିଲା ଏହାର ଏହି ସାଧନର ପ୍ରକ୍ରିୟା। ସେହି ବିରଳ ବ୍ୟକ୍ତିମାନଙ୍କ ମହିମା ଓ ଗାରିମାରେ ଦିନେ ଭାରତବର୍ଷର ମୁଖ ଉଜ୍ଜ୍ୱଳ ହୋଇଥିଲା। ସେପରି ସଂଗ୍ରାମୀମାନେ କ୍ରମଶଃ ସମୟର କାନଭାସରେ ନିଷ୍ପ୍ରଭ, ମଳିନ ଦେଖାଗଲେଣି। ନିଷ୍କ୍ରମଣ ପ୍ରକ୍ରିୟାରେ ହଜି ହଜି ଯାଉଛନ୍ତି ଜଣକ ପରେ ଜଣେ।

ଏପରି ଏକ ବିଡ଼ମ୍ବିତ ମୁହୂର୍ତ୍ତରେ ଜଣେ ଆଜୀବନ ସଂଗ୍ରାମୀ, ସାଧୁ, ସ୍ନେହୀ, ଦରଦୀ, ରାଷ୍ଟ୍ରନାୟକ ରବି ରାୟଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ଓ ଅନୁଭୂତିକୁ ନେଇ ଗର୍ବିତ। କାଲିପରି ମନେହେଉଛି ମୁଁ ଓ ମୋ ସ୍ୱାମୀ ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି ଆମେ ଯାଇଥାଉ ରାଜତରଙ୍ଗିଣୀ ସିନେମା ହଲ୍‌ରେ ବିଶିଷ୍ଟ ଜନନେତା ତଥା ସମାଜ ଖବରକାଗଜର ଭୂତପୂର୍ବ ସମ୍ପାଦକ ରାଧାନାଥ ରଥଙ୍କ ଉପରେ ହୋଇଥିବା ଏକ ପ୍ରାମାଣିକ ଚଳଚ୍ଚିତ୍ର ଦେଖିବାକୁ। ଦେଖିସାରି ଆସିଲାବେଳକୁ ଦେଖାହେଲେ ସ୍ୱନାମଧନ୍ୟ ପ୍ରକାଶନ ସଂସ୍ଥା ବିଦ୍ୟାପୁରୀର ପ୍ରକାଶକ ଶ୍ରୀ ପୀତାମ୍ବର ମିଶ୍ର। ଠିକ୍ ସେତିକିବେଳେ ପହଞ୍ଚିଲେ ଶ୍ରୀଯୁକ୍ତ ରବି ରାୟ ଓ ତାଙ୍କ ପତ୍ନୀ ଡକ୍ଟର ସରସ୍ୱତୀ ସ୍ୱାଇଁ। ପୀତାମ୍ବରବାବୁ ରବି ମଉସାଙ୍କୁ ଦେଖି ଦେଖି କହିଲେ – "ଆଜ୍ଞା, ଆପଣଙ୍କ ଆତ୍ମଜୀବନୀ ଲେଖୁନାହାନ୍ତି, ମୁଁ ପ୍ରକାଶ କରନ୍ତି।"

ମଉସା ମୋ ଆଡ଼େ ଟିକେ ଚାହିଁଲେ। କହିଲେ, "ସିଲା, ତୁ ଲେଖିବୁ ମୋ ଜୀବନୀ?" କହ, କ'ଣ କହୁଛୁ?

ମୁଁ ଅଗତ୍ୟା ହଁ କହିଲି। ପୀତାମ୍ବରବାବୁ ଖୁସି ହୋଇ କହିଲେ, "ଆପଣ ଲେଖିଦିଅନ୍ତୁ, ଛପାଇବା ଦାୟିତ୍ୱ ମୋର।"

ମଉସା ଖୁସି ହୋଇଗଲେ। ଆମେ ଘରକୁ ଫେରିଲୁ। କଥାଟା ସେତିକିରେ ରହିଲା। ମଉସା ଦିଲ୍ଲୀ ଚାଲିଗଲେ। ଯା ଭିତରେ ବର୍ଷେ ଚାଲିଗଲା। ତାଙ୍କର ମୋର

ଦେଖାସାକ୍ଷାତ ହେଲେ ସିନା ସେ ତାଙ୍କ କଥା କହିବେ, ଆଉ ମୁଁ ଲେଖିବି। ପୀତାମ୍ବରବାବୁ କିନ୍ତୁ ଦେଖାହେବା ମାତ୍ରେ ମଝିରେ ମଝିରେ କହନ୍ତି, "କ'ଣ କେତେଦୂର ଗଲା ଜୀବନୀ ଲେଖା।"

ସେ ମୋର ପ୍ରାୟ ଛଅସାତ ଖଣ୍ଡ ବହିର ପ୍ରକାଶକ। ତାଙ୍କୁ କ'ଣ କହିବି। ହସିଦେଇ କହେ, "ବାଉଳା ହେଲେ ଆପଣ! ମଉସା ଦିଲ୍ଲୀରେ, ମୁଁ ଏଠି, ଲେଖିବା କ'ଣ ସମ୍ଭବ! ସେ ତ ନାନା କାମରେ ବ୍ୟସ୍ତ। କେତେବେଳେ ସେ ସମୟ ଦେବେ, ଆଉ ମୁଁ ଲେଖିବି।"

ମଉସା ଦେଖାହେଲେ ମୁଁ ତାଙ୍କୁ ସ୍ମରଣ କରେଇ ଦେଉଥିଲି ଜୀବନୀ ଲେଖା ସଂପର୍କରେ ମୋ ଉପରେ ସେ ଆସିଲେ ଆମ ଘରକୁ। ପ୍ରଥମେ ଯୋଜନା ପ୍ରସ୍ତୁତ ହେଲା କାହାକୁ କାହାକୁ ଦେଖା କରିବାକୁ ହେବ। କେଉଁଠିକି ଯିବାକୁ ହେବ। ସାରାଦେଶରେ ତାଙ୍କ ସହିତ ଯେଉଁମାନେ କାମ କରିଛନ୍ତି, ସେମାନଙ୍କୁ ଚିଠି ଲେଖିବାକୁ ହେବ।

ତାପରେ କାମ ଆରମ୍ଭ କଲି। ପ୍ରାୟ ଦୁଇବର୍ଷ କାଳ। ବହୁ ନେତା, ପ୍ରଶାସକ, ସଂପର୍କୀୟଙ୍କୁ ଭେଟିଲି। ତାଙ୍କ ଗାଁ ଉଅଁରାଗଡ଼ ଗଲି। ତାଙ୍କ ପାରିବାରିକ ଐତିହ୍ୟ, ପରମ୍ପରା ସଂପର୍କରେ ତଥ୍ୟ ସଂଗ୍ରହ କଲି। ଜାତୀୟସ୍ତରର ବହୁ ନେତାଙ୍କୁ ଚିଠି ଲେଖିଲି। କିଏ ସାହାଯ୍ୟ କଲା। କିଏ ନୀରବ ରହିଲା। କାମ କିନ୍ତୁ ଆଗେଇ ଚାଲିଲା। ବହୁଲୋକ ନିଜ ନିଜ ମତାମତ ଦେଲେ। ଅଧିକାଂଶଙ୍କର ଗୋଟିଏ ସ୍ପଷ୍ଟ ମତ ଥିଲା – ରବି ରାୟ ଜଣେ ସାଧୁ, ସଚ୍ଚୋଟ, ସ୍ପଷ୍ଟବାଦୀ, ସ୍ନେହୀ, ମାନବବାଦୀ ନେତା। ସେ ଜାତୀୟସ୍ତରରେ ଅଧିକ ସକ୍ରିୟ ଓ ପରିଚିତ। କିନ୍ତୁ ରାଜ୍ୟ ପାଇଁ ସେପରି କିଛି ଉଲ୍ଲେଖଯୋଗ୍ୟ କାମ କରିନାହାନ୍ତି।

ମଉସା କଟକ ଆସିଲେ ଘଣ୍ଟା ଘଣ୍ଟା ଆମର ଆଲୋଚନା ହୁଏ। ମୁଁ ସେ ସବୁ ଖାତାରେ ଟିପି ରଖେ। ତାକୁ ମୋ ନିଜ ଶୈଳୀରେ ଲେଖେ। ଲେଖା ସରିଲା। ମଉସା ମାଉସୀ ପଢ଼ିଲେ। ମଉସା ତିନୋଟି ଗୁରୁତ୍ୱପୂର୍ଣ୍ଣ ପରିଚ୍ଛେଦ ବାଦ୍ ଦେଲେ ସେ ବହିରୁ। କହିଲେ, "ସିଲା, ଏ ତିନୋଟି ପରିଚ୍ଛେଦ ରହିଲେ, ସେମାନେ ଯଦି କେଶ୍ କରନ୍ତି, ତୁ ହଇରାଣ ହୋଇଯିବୁ। ଦିଲ୍ଲୀରେ କେଶ୍ କଲେ ତ ଆହୁରି ଅସୁବିଧା। ତୁ ସେ କେଶ୍ ଲଢ଼ିବା କଷ୍ଟକର ହେବ। କାରଣ ସେମାନେ ବହୁତ କ୍ଷମତାଶାଳୀ ଲୋକ। ମୁଁ ଯଦି ନିଜେ ଆତ୍ମଜୀବନୀ ଲେଖିଥାନ୍ତି, ତେବେ ସେ ସବୁକୁ ସାମ୍ନା କରିଥାନ୍ତି। ତୁ ତ ଏ ଜୀବନୀର ଲେଖିକା। ମିଛଟାରେ ମୋ ପାଇଁ କାହିଁକି ହଇରାଣ ହେବୁ।"

ସେ ତିନୋଟି ପରିଚ୍ଛେଦକୁ କାଟି ଦିଆଗଲା। ଏତେକଷ୍ଟ କରି ଲେଖିଥିଲି, ମନଦୁଃଖ ହେଲା। କିନ୍ତୁ ମୋର କିଛି କହିବାର ନଥିଲା। କଥାଟା ଯଥାର୍ଥ। ଶେଷରେ ପୀତାମ୍ବରବାବୁଙ୍କୁ ଦିଆଗଲା ପାଣ୍ଡୁଲିପି ଓ କେତୋଟି ଫଟୋ। ଦୀର୍ଘ ଦୁଇବର୍ଷ ପଡ଼ିରହିଲା। ବହୁ ଅନୁରୋଧ ପରେ ବହିଟି ଆତ୍ମପ୍ରକାଶ କଲା। ସୌଭାଗ୍ୟର କଥା ମାତ୍ର ଚାରିମାସ ଭିତରେ ପ୍ରଥମ ସଂସ୍କରଣ ବହି ସରିଗଲା। ସେ ନିଜେ ଆଗ୍ରହରେ ଦ୍ୱିତୀୟ ସଂସ୍କରଣ ଛପାଇଲେ।

ଏ ବହି ପାଇଁ ବହୁ ପାଠକ ମୋତେ ପ୍ରଶଂସାରେ ପୋତି ପକେଇଛନ୍ତି। ଦିନକର କଥା। ରାତି ପ୍ରାୟ ଏଗାରଟା ହେବ। ଫୋନ୍ ରିଂ ହେଲା। ଏଗାରଟା ବେଳକୁ ମୁଁ ପ୍ରାୟ ଶୋଇପଡ଼ିଥାଏ। ଫୋନ୍ ଧରିଲି। ଅଚିହ୍ନା ଲୋକଙ୍କର ସ୍ୱର। ନିଜର ପରିଚୟ ଦେଇ ସେ କହିଲେ, "ମୁଁ କ୍ୟାପଟେନ୍ ମିଶ୍ର କହୁଛି, ଆପଣ ମୋତେ ଚିହ୍ନନ୍ତି ନାହିଁ।"

ଆଶ୍ଚର୍ଯ୍ୟ ହେଲି ଏତେ ରାତିରେ କେଉଁ କ୍ୟାପଟେନ୍ ମିଶ୍ର ମୋତେ କାହିଁକି ଫୋନ୍ କଲେ! ସେ କହିଲେ, "ଆପଣ ଆଶ୍ଚର୍ଯ୍ୟ ହେଉଥିବେ ନିଶ୍ଚୟ। ଛୁଟିରେ ଘରକୁ ଆସିଥିଲି। ଭୁବନେଶ୍ୱର ବୁକ୍‌ଫେୟାରୁ କେତେକ ବହି କିଣିଲି। 'ମାଟିରୁ ଆକାଶ' ବି କିଣିଲି। ଭଲ ବହି ପଢ଼ିବା ମୋର ଗୋଟେ ନିଶା। ତେଣୁ ଓଡ଼ିଶାରୁ ଫେରିଲାବେଳେ କିଛି ବହି ବାଛି ବାଛି କିଣିନିଏ। ମୋର ମାନସିକ ଖାଦ୍ୟ। ଏବେ କିଛି ସମୟ ଆଗରୁ ମାଟିରୁ ଆକାଶ ପଢ଼ି ଶେଷକଲି। ଆପଣଙ୍କ ଫୋନ୍ ନମ୍ବର ପାଇବା ପାଇଁ ପ୍ରାୟ ଦଶପନ୍ଦରଟା ଫୋନ୍ କରିବାକୁ ପଡ଼ିଲା। ଆପଣଙ୍କ ବହିରେ ଫୋନ୍ ନମ୍ବର ଲେଖିନାହାନ୍ତି କାହିଁକି ?" କ୍ୟାପଟେନ୍ ଲୋକ ତ, ସହଜରେ ହାରିଯିବାକୁ ଚାହିଁବିନି। ନମ୍ବର ପାଇ ଫୋନ୍ କରୁଛି। ଏତେ ରାତିରେ ଫୋନ୍ କରୁଛି ବୋଲି ରାଗୁନାହାନ୍ତି ତ ?

ତା'ପରେ ସେ ଯାହା କହିଲେ, ଲେଖିଲେ ତାହା ଆତ୍ମପ୍ରଶସ୍ତି ହେବ। ଆଖିରୁ ନିଦ ହଜିଗଲା, କେତେ ଖୁସି ଲାଗିଲା, ତାହା ବର୍ଣ୍ଣନାତୀତ। ଆଉ ଦିନକର ଘଟଣା। ଶ୍ରୀ ଧରଣୀଧର ନାଥ (ଓ.ଏ.ଏସ୍) ଓ ଜଣେ ବିଶିଷ୍ଟ ସାହିତ୍ୟିକ। ଗୋଟେ ସଭାକୁ ଯାଇଥିଲୁ ଅତିଥି ହୋଇ। ମତେ ପ୍ରଶଂସା କରିବା ଅବସରରେ ସେ ମାଟିରୁ ଆକାଶ ବହିର କେତୋଟି ଧାଡ଼ି କହିଲେ। ପ୍ରଥମେ ମୁଁ ବୁଝିପାରିଲିନି। ଜାଣି ଭାରି ଖୁସି ଲାଗିଲା। ତାଙ୍କ ସ୍ମରଣଶକ୍ତିକୁ ପ୍ରଶଂସା ନକରି ରହିପାରିଲି ନାହିଁ।

ରବି ରାୟଙ୍କର ବହୁ ପ୍ରଶଂସକ। ସେମାନେ ବହି କିଣି ପଢ଼ିଛନ୍ତି। ଫୋନ୍ କରି ପ୍ରଶଂସା କରିଛନ୍ତି। ମୋ ଶ୍ରମ ଯେ ସାର୍ଥକ ହୋଇ ଏ କଥା ଆଜି ସ୍ୱୀକାର କରୁଛି। କେବଳ ଜଣେ ରାଜନେତା ମୋତେ ସମାଲୋଚନା କରି କହିଲେ, ଆପଣ ରବି ରାୟ ଓ ବିଜୁବାବୁଙ୍କ ସଂପର୍କକୁ ଠିକ୍ ନ୍ୟାୟ ଦେଇନାହାନ୍ତି।

ମୁଁ କହିଲି, "ରାଜନୀତିର ଛକାପଞ୍ଝାରେ କିଏ କେତେବେଳେ କେଉଁ ଭୂମିକାରେ ଅବତୀର୍ଣ୍ଣ ହୁଏ, ତାହା ମୋ ପରି ସାଧାରଣ ଲୋକ ବୁଝିବା ନିଶ୍ଚୟ କଠିନ। ତଥାପି ସେ ବହିରେ ରବି ରାୟଙ୍କର ବିଜୁବାବୁଙ୍କ ସହିତ ସଂପର୍କ କେତେ ଘନିଷ୍ଠ ଥିଲା ତାହା ମୁଁ ଦେଖେଇଛି। ଅବଶ୍ୟ ପାଠକମାନଙ୍କର ସ୍ୱାଧୀନ ମତ ବ୍ୟକ୍ତ କରିବାର ଅଧିକାର ଅଛି। କାରଣ ବହିଟେ ପ୍ରକାଶିତ ହୋଇଯିବା ପରେ ତାହା ଜନସାଧାରଣଙ୍କ ସମ୍ପତ୍ତି ହୋଇଯାଏ।

ଆଉ ଗୋଟିଏ ଘଟଣା ନ କହି ମୁଁ ରହିପାରୁ ନାହିଁ। ଥରେ ହାଇକୋର୍ଟ ପାଖ ଷ୍ଟେଟ୍‌ବ୍ୟାଙ୍କରୁ କାମ ସାରି ବାହାରି ଆସୁଛି। ଗୋଟିଏ କାଉଣ୍ଟରରେ ବସିଥିବା ଜଣେ କର୍ମଚାରୀ ଖୁବ୍ ବଡ଼ପାଟିରେ ଡାକିଲେ – ସୁଲୋଚନା ମ୍ୟାଡ଼ାମ୍, ସୁଲୋଚନା ମ୍ୟାଡ଼ାମ୍। ଫେରି ଚାହିଁଲି। ପ୍ରଥମେ ଭାବିଲି ବୋଧହୁଏ ଆଉ କାହାକୁ ଡାକୁଛନ୍ତି। ମୁଁ ତ ସେ କାଉଣ୍ଟରକୁ ଯାଇନି। ମୋତେ କାହିଁକି ଡାକିବେ। ତାଙ୍କ ପାଟି ଶୁଣି ବହୁଲୋକ ତାଙ୍କୁ ଚାହିଁଲେ। ଦେଖିଲି ସେ କାଚ ଆରପଟେ ଠିଆହୋଇ ମୋତେ ଚାହିଁ ଡାକୁଛନ୍ତି। ସତେ ଯେମିତି ସେ କାଉଣ୍ଟରରୁ ଭୁଲ୍‌ରେ ମୁଁ କିଛି ନେଇଯାଇଛି। ଫେରିଲି। ଗଲି ତାଙ୍କ ପାଖକୁ। ପଚାରିଲି, କ'ଣ ପାଇଁ ମୋତେ ଡାକୁଥିଲେ, ନା ଆଉ କାହାକୁ ? ସେ ଦୁଇହାତ ଯୋଡ଼ି ନମସ୍କାର କଲେ। କହିଲେ, "କେତେଦିନ ହେଲାଣି ଆପଣଙ୍କୁ ମନେ ମନେ ଖୋଜୁଥିଲି, ଆଜି ପାଇଲି। ଆପଣଙ୍କର ମୁଁ ଜଣେ ମୁଗ୍ଧ ପାଠକ।"

ଓହୋ ! ଆଶ୍ୱସ୍ତ ହେଲି। କେହି ମୋତେ ଚୋରଫୋର ଭାବିନାହାନ୍ତି ତ। ଚାରିଆଡ଼କୁ ଟିକେ ଚାହିଁଲି। ସେ ଭଦ୍ରଲୋକ ମତେ ପ୍ରଶଂସାରେ ପୋତି ପକେଇଲେ। 'ମାଟିରୁ ଆକାଶ' ବହି କଥା କହିଲେ। ତାଙ୍କ ଭାଷାରେ, "ବିଶ୍ୱାସ କରନ୍ତୁ ମ୍ୟାଡ଼ାମ୍, ସେ ବହି ମୋତେ ଜୀବନୀ ପରି ଲାଗିଲାନି ବରଂ ଗୋଟେ ଉପନ୍ୟାସ ପରି ଲାଗିଲା। ଆପଣ ଉପନ୍ୟାସ ଲେଖନ୍ତି ବୋଲି ବହି ଶୈଳୀ ପୂରାପୂରି ଉପନ୍ୟାସ ଭଳି ହୋଇଛି।

ମୁଁ ଟିକେ ଲାଜରା ହୋଇଗଲି ଏମିତି ଖୋଲାଖୋଲି ପ୍ରଶଂସା ଶୁଣି। ଆପଣ ଏତେ ଲୋକଗହଳି ଭିତରେ ଚିହ୍ନଲେ କେମିତି ? ମୋର ତ ଆପଣଙ୍କ ସାଙ୍ଗରେ ଆଗରୁ ପରିଚୟ ନାହିଁ। ସବୁ ବହିରେ ପରା ଆପଣଙ୍କର ଗୋଟେ ଫଟୋ ଥାଏ ପଛରେ। ତା' ଛଡ଼ା ଟି.ଭି.ରେ ବି ଅନେକଥର ଦେଖିଛି। ତେଣୁ ଚିହ୍ନିବାରେ ଅସୁବିଧା ହେଲାନି। ଅସଲକଥା ମୁଁ କହିନି। ସତରେ ଆପଣ ରବି ରାୟଙ୍କ ଜୀବନୀ ଲେଖି ଗୋଟେ ଜାତୀୟ କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି। ସେଥିପାଇଁ ଧନ୍ୟବାଦ।

ଗୋଟିଏ ପ୍ରସିଦ୍ଧ କବିତା ପଂକ୍ତି ମନେପଡ଼ିଲା – "ଗ୍ରାହକତା ସିନା କବି ସ୍ୱର୍ଗସୁଖ ଆନମୂଲେ କବି କିଣଇ କିଏ।" ମତେ ଲାଗିଲା ଯେମିତି ଆଞ୍ଜୁଳାଏ ଖୁସି ମୋ ଅଣ୍ଟିରେ

କିଏ ଅଜାଡ଼ି ଦେଲା। ମୋ ନିଜର ବଡ଼ପଣ କି ଅହଙ୍କାର ଦେଖାଇବାକୁ ଏ କଥା କହୁନି। କହିବାକୁ ଚାହୁଁଛି ରବି ରାୟଙ୍କୁ ନିଃସ୍ୱାର୍ଥପର ଭାବରେ ଭଲପାଉଥିବା ବହୁଲୋକ ଅଛନ୍ତି। ରବି ରାୟଙ୍କ ସହିତ ମୋର ପାରିବାରିକ ସଂପର୍କ ବହୁଦିନର। ତାଙ୍କ ନିରୋଳା ଭଲପାଇବା ସଂସ୍ପର୍ଶରେ ଯିଏ ଆସିଛି ସେ ନିଶ୍ଚୟ ସ୍ୱୀକାର କରିବ ଯେ ତାଙ୍କ ପରି ସ୍ନେହୀ ମଣିଷ ବିରଳ।

କୈଶୋରରୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ। ଅନୁପ୍ରାଣିତ ହୋଇଥିଲେ ମହାତ୍ମା ଗାନ୍ଧି, ଜୟପ୍ରକାଶ ନାରାୟଣ, ଡକ୍ଟର ରାମମନୋହର ଲୋହିଆଙ୍କ ପରି ବହୁ ବଡ଼ ବଡ଼ ନେତାଙ୍କ ଆଦର୍ଶରେ। ସାରାଜୀବନ ବିତାଇଥିଲେ ରାଜନୈତିକକ ବାତାବରଣ ମଧ୍ୟରେ। ସାଂସଦ, କେନ୍ଦ୍ର କ୍ୟାବିନେଟ୍ ମନ୍ତ୍ରୀ, ଲୋକସଭାର ବାଚସ୍ପତି ଆସନ ପରି ବହୁ ମର୍ଯ୍ୟାଦାବନ୍ତ ପଦପଦବୀର ଅଧିକାରୀ ହୋଇ ବି ଆଦର୍ଶ ପଥରୁ ବିଚ୍ୟୁତ ହୋଇନାହାନ୍ତି। ନିରହଙ୍କାର ବ୍ୟକ୍ତିତ୍ୱ, ମାନବବାଦୀ ଚିନ୍ତାଧାରା, ପ୍ରସାରିତ ଦୃଷ୍ଟିଭଙ୍ଗୀ। ସବୁରି ପାଇଁ ଅକୁଣ୍ଠ ମମତା। ଜଣେ ଜାତୀୟସ୍ତରର ଏତେବଡ଼ ନେତା ହୋଇ ବି ସେ ଥିଲେ ଶିଶୁପରି ସରଳ ଓ ଅମାୟିକ। ବଡ଼ସାନ, ଉଚ୍ଚନୀଚ, ବାଛବିଚାର ନଥାଏ। ଅତି ଛୋଟ ଛୋଟ ପିଲାଙ୍କୁ ବି ସେ ବନ୍ଧୁଭଳି ବ୍ୟବହାର କରନ୍ତି। ତାଙ୍କର ସବୁଠୁ ଉଲ୍ଲେଖଯୋଗ୍ୟ ଗୁଣ ହେଉଛି ଅଦ୍ଭୁତ ସ୍ମରଣ ଶକ୍ତି। ସେ ଥରେ ଯାହାକୁ ଚିହ୍ନୁଥିଲେ ତା ନାଁ, ଗାଁ, ତା ବାପା ଅଜାଙ୍କ ନାଁ ଗାଁ ପଚାରି ବୁଝୁଥିଲେ ଓ ତାଙ୍କୁ ଚିହ୍ନୁଥିଲେ ମନେରଖୁଥିଲେ। ବର୍ଷ ବର୍ଷ ପରେ ଦେଖାହେଲେ ବି ସେ ଲୋକକୁ ଚିହ୍ନି ପାରୁଥିଲେ ଓ ସଠିକ ଭାବରେ ତା ନାଁ ଗାଁ କହିପାରୁଥିଲେ।

ଏଠାରେ ଗୋଟେ ଘଟଣା ବର୍ଣ୍ଣନା କରୁଛି, ମୋ ତିନିପୁଅ ଦିଲ୍ଲୀରେ ପଢୁଥାନ୍ତି। ମଝିରେ ମଝିରେ ସେମାନେ ଆସନ୍ତି ତାଙ୍କ ପାଖକୁ। ମଉସା ବାଚସ୍ପତି ଥିବାବେଳେ ଥରେ ମୁଁ ଦିଲ୍ଲୀ ଯାଇଥାଏ। ମୋ ପିଲାମାନେ ତାଙ୍କୁ ଅଜା ଡାକନ୍ତି। ସେ ବି ପିଲାମାନଙ୍କୁ ଭାରି ଶ୍ରଦ୍ଧା କରନ୍ତି। ଆମେ ସେଦିନ ପହଞ୍ଚିଲା ବେଳକୁ ମଉସା ଜଳଖିଆ ଖାଇ ନଥାନ୍ତି। କେତେଜଣ ଜାତୀୟସ୍ତରର ନେତା ବି ଉପସ୍ଥିତ ଥାନ୍ତି। କ'ଣ ଗୋଟେ କଥା ପଡ଼ିଲା। ମୋ ସାଙ୍ଗରେ ମୋ ସାନପୁଅ ଯାଇଥାଏ। ତା' ବୟସ ସତର ଅଠର ହେବ। ସେ ମଉସାଙ୍କ ସାଙ୍ଗରେ ଯୁକ୍ତିକରିବା ଆରମ୍ଭ କରିଦେଲା। ମଉସା ଛାଡୁ ନଥାନ୍ତି କି ସେ ଓହରି ଆସୁନଥାଏ। ଅନ୍ୟମାନେ ହସି ମଜା ଦେଖୁଥାନ୍ତି। ଅପରିପକ୍ୱ ଚିନ୍ତା, ଅଭିଜ୍ଞତାଶୂନ୍ୟ ବିଚାର ସତ୍ତ୍ୱେ ଦୀପୁର ପିଲାଳିଆମୀକୁ ମଉସା ଉତ୍ସାହିତ କରୁଥାନ୍ତି। ମୁଁ ଆକଟ କରି ଦୀପୁକୁ ମନାକରିବାରୁ ମଉସା କହିଲେ - ରହ, ତୁ କାହିଁକି ଆମ ଭିତରେ କଥା କହୁଛୁ, ଦେଖିବା ନାତିଟୋକା ମତେ ହରେଇ ଦେଇ ପାରୁଛି କି ନାହିଁ। ମୁଁ ଆଜି ହେଲେ ସେ ପରା ଆସନ୍ତାକାଲି।

ଜଳଖିଆ ବଢ଼ା ହୋଇ ଥଣ୍ଡା ହେଲା। ତଥାପି ମଉସା ଉଠୁନଥାନ୍ତି। ବାରମ୍ବାର ଡାକରା ସତ୍ତ୍ୱେ ସେ କହୁଥାନ୍ତି – ରହ, ଯାଉଛି। ପ୍ରାୟ ଘଣ୍ଟାଏ ପରେ ମୁଁ ଦେଖିଲି ମଉସା ଉପାସ ରହିବେ ସିନା ଉଠିବେନି। ବାଧ ହୋଇ ମୁଁ କହିଲି, "ଆମେ ଯିବୁ ମଉସା। କାଲି ଓଡ଼ିଶା ଫେରିଯିବି। ମୋର ଟିକେ କାମ ଅଛି। ପୁଅକୁ କହିଲି – ତୁ ରହ। ମୁଁ ଏକା ଯାଉଛି।"

ସେଇଠି ତର୍କସଭା ବନ୍ଦ ହେଲା। ଆମେ ବାହାରିଲୁ। ମଉସା କହିଲେ, "ଆରେ, ଜଳଖିଆ ନ ଖାଇ ଯିବ କୁଆଡ଼େ?" ଅନ୍ୟମାନଙ୍କୁ ଚର୍ଚ୍ଚା କରାଯାଇ ସାରିଥିଲା। ଜଳଖିଆ ଖାଇ ଆମେ ଫେରିଲୁ। ମୁଁ ଦୀପୁକୁ ଗାଳିଦେଲି। ସେ କହିଲା – ସେ ତ ଆମ ଅଜା। ସବୁବେଳେ ଆମ ସାଙ୍ଗରେ ସାଙ୍ଗ ଭଳି କଥାବାର୍ତ୍ତା କରନ୍ତି। ଆଉ ତୁ କହୁଛୁ ସେ ଏତେବଡ଼ ଲୋକ। ସେ ଯେତେ ବଡ଼ ହୁଅନ୍ତୁ ସେ କିନ୍ତୁ ଆମ ଫ୍ରେଣ୍ଡ।"

ଏଇ ଗୋଟିଏ ଘଟଣାରୁ ବୁଝିହେବ ସେ କେମିତି ମଣିଷ। ସମାଜ, ରାଜନୀତି, ଶାସନବ୍ୟବସ୍ଥା, କଳା, ସାହିତ୍ୟ, ସଂସ୍କୃତି, ସବୁକ୍ଷେତ୍ରରେ ମାନବିକତାର ଉଲ୍ଲଙ୍ଘନ ହିଁ ହେଉଛି ବଡ଼ ସମସ୍ୟା। ରବି ରାୟଙ୍କ ପରି ମାନବବାଦୀ, ଦେଶପ୍ରେମୀ, ନିଃସ୍ୱାର୍ଥପର ଜନନେତାଙ୍କ ଆଦର୍ଶ ଓ ପ୍ରେରଣା ଉତ୍ତରପିଢ଼ି ପାଇଁ ଏକାନ୍ତ ଆବଶ୍ୟକ। ରାଜନୀତିର ପଙ୍କିଳ ପରିବେଶରେ ଥାଇ ମଧ ଜଣେ ପଦ୍ମପରି ସୂର୍ଯ୍ୟକାମୀ ହୋଇପାରେ। ସତ୍ୟ, ଅହିଂସାକୁ ଜୀବନର ଆଧାରଶିଳା ଭାବରେ ଗ୍ରହଣ କରିପାରେ – ଏକଥା ଯୁବମାନସ ଶିକ୍ଷା କରିବା ଦରକାର। ଆଜି ରାଜନୀତି କହିଲେ କେବଳ ଅର୍ଥବଳ ଓ ବାହୁବଳକୁ ବୁଝାଉଛି। କିନ୍ତୁ ଏପରି ବିପରୀତ ଗତି ଦେଶକୁ ବିପର୍ଯ୍ୟୟ ପଥରେ ଆଗେଇ ନେବ। ସଂପ୍ରତି ଜ୍ଞାନ ବିଜ୍ଞାନର ପ୍ରସାର ଯୋଗୁଁ ବିଶ୍ୱ ଯଥାର୍ଥରେ କ୍ଷୁଦ୍ର ହୋଇଯାଇଛି। ଦେଶ ବିଶ୍ୱ ପରିପ୍ରେକ୍ଷୀରେ ଆଜି ପ୍ରତିଯୋଗିତାରେ ଅବତୀର୍ଣ୍ଣ। ଦେଶପ୍ରେମର ଅଭାବ, ଜାତୀୟ ଚରିତ୍ରର ସ୍ଖଳନ, ନୈତିକତାର ଅବକ୍ଷୟ ଘଟିଲେ ଦେଶ ଅନ୍ୟମାନଙ୍କ ତୁଳନାରେ ପଛରେ ପଡ଼ିଯିବ – ଏ କଥା ଚିନ୍ତାନାୟକମାନେ ବିଗ୍ଭର କରୁଛନ୍ତି। ସତ୍ ଉପାୟରେ ଦେଶକୁ ପ୍ରବଳ ପ୍ରତାପୀ ବ୍ରିଟିଶ୍‌ରାଜ କବଳରୁ ମୁକ୍ତି କରିଥିବା ସଂଗ୍ରାମୀମାନେ ଏ ଜାତିର ପୂଜନୀୟ। ପୂଜ୍ୟପୂଜାର ବିଲୋପ ଘଟିଲେ ମାନବବାଦର ବିଲୋପ ହେବ।

ରବି ରାୟଙ୍କ ପରି ଭଲ ମଣିଷଙ୍କ ଶୁଭନିଃଶ୍ୱାସ ଏ ପୃଥିବୀର ସବୁ ଆପତାପକୁ ନିଃଶେଷି ନେଇଥାଏ। ସେମାନଙ୍କ ସତ୍‌କର୍ମ ଓ ସତ୍‌ଚିନ୍ତା ପୃଥିବୀକୁ ଆୟୁଷ୍ମାନ୍ କରିଥାଏ। ଶ୍ରୀଜଗନ୍ନାଥ ତାଙ୍କୁ ସୁସ୍ଥ, ନିରାମୟ ଓ ଦୀର୍ଘାୟୁ କରନ୍ତୁ – ଏତିକି ପ୍ରାର୍ଥନା।

■■■

# ପୂଜ୍ୟ ରବିବାବୁ

ଶ୍ରୀ ହିମାଂଶୁ ଶେଖର କୁଅଁର

ପୂଜ୍ୟ ରବିବାବୁଙ୍କ ସହ ମୋର ପରିଚୟ ହୁଏ ୧୯୭୪ ମସିହାରେ। ସେତେବେଳେ ଓଡ଼ିଶାରେ କଂଗ୍ରେସର ପ୍ରମୁଖ ବିରୋଧୀ ଦଳମାନଙ୍କୁ ଏକତ୍ରୀତ କରି ଗଢ଼ା ହୋଇଥାଏ "ଓଡ଼ିଶା ପ୍ରଗତି ବିଧାୟକ ଦଳ" ଏବଂ ଓଡ଼ିଶାରୁ ରବିବାବୁଙ୍କୁ ପ୍ରାର୍ଥୀ କରାଯାଇଥାଏ ରାଜ୍ୟସଭା ନିର୍ବାଚନ ପାଇଁ। ରବିବାବୁଙ୍କ ବିଜୟ ସୁନିଶ୍ଚିତ କରିବାପାଇଁ ମୋ ବାପା ଶ୍ରୀ ମୁରଲୀଧର କୁଅଁର ଆପ୍ରାଣ ଉଦ୍ୟମ ଚଳାଇଥାନ୍ତି ଏବଂ ପ୍ରଗତି ଦଳ ବିଧାୟକମାନଙ୍କ ଭୋଟ ଯେପରି ବିଭାଜିତ ନହୁଏ ସେଥିପାଇଁ ସବୁପ୍ରକାର ଉଦ୍ୟମ ଜାରି ରହିଥାଏ। ଅବଶ୍ୟ ସେତେବେଳେ ଆଜିକାଲିର ବିଧାୟକମାନଙ୍କର ଭୋଟ ପ୍ରଲୋଭିତ କଲାଭଳି କୌଣସି କୌଶଳ ପ୍ରୟୋଗ କରାଯାଉ ନଥାଏ। ଭାରତର ସମାଜବାଦୀ ଆନ୍ଦୋଳନର ଏହି ପ୍ରମୁଖ ସେନାନୀଙ୍କୁ ରାଜ୍ୟସଭାକୁ ପଠାଇ ଏକ ଦକ୍ଷ ପାର୍ଲାମେଣ୍ଟରିଆନ୍‌ଙ୍କୁ ଓଡ଼ିଶାର ପ୍ରତିନିଧିତ୍ୱ କରିବାର ସୁଯୋଗ ଦେବାପାଇଁ ବିଧାୟକମାନଙ୍କ ମଧରେ ପ୍ରବଳ ଉତ୍ସାହ ଦେଖାଦେଇଥିଲା ବିଜୁବାବୁ, ଡକ୍ଟର ମହତାବ ଏବଂ ରାଜେନ୍ଦ୍ର ନାରାୟଣ ସିଂହଦେଓ ରବିବାବୁଙ୍କ ବିଜୟ ପାଇଁ ସମସ୍ତଙ୍କୁ ନିବେଦନ କରିଥାନ୍ତି। ସେହି ସମୟରେ ରବିବାବୁ ୬ ନମ୍ବର ୟୁନିଟ୍‌ସ୍ଥିତ ଆମ ଘରକୁ ଆସିଥିବାର ମୁଁ ଦେଖିଛି। ରବିବାବୁଙ୍କ ସହ ମୋର ପରିଚୟ କରାଇଦେଇଥିଲେ ସ୍ୱର୍ଗତ ହରିଶ୍ଚନ୍ଦ୍ର ବକ୍ସିପାତ୍ର। ମୁଁ ସେତେବେଳେ କେନ୍ଦୁଝର କଲେଜର ଆଇ.ଏ. ଶ୍ରେଣୀର ଛାତ୍ର ଥାଏ ଏବଂ ନିଖିଳ ଉତ୍କଳ ଛାତ୍ର ୟୁନିୟନର କାର୍ଯ୍ୟକର୍ତ୍ତା ଥାଏ। ରାଜନୀତି ପ୍ରତି ମୋର ଆଗ୍ରହ ଦେଖି ରବିବାବୁ ମୋତେ ଗାନ୍ଧି, ଲୋହିଆ ଏବଂ ଗୌତମବୁଦ୍ଧଙ୍କ ବିଷୟରେ କେତେକ ପୁସ୍ତକ ପଢ଼ିବାପାଇଁ ଉପଦେଶ ଦେଲେ। ମୁଁ ସେତେବେଳେ ବିଭିନ୍ନ ରାଜ୍ୟସ୍ତରୀୟ ତର୍କ ପ୍ରତିଯୋଗିତାରେ ସ୍ଥାନ ଅଧିକାର କରିଥିବା କଥା ରବିବାବୁ ଶୁଣିଲେ। ଏହି ସମୟରେ ମୋ ବାପା କହିଥିଲେ ଯେ ମୁଁ ତାକୁ ଆଇ.ଏ.ଏସ୍.ରେ ଯୋଗ ଦେବାକୁ ପ୍ରସ୍ତୁତ ହେବାପାଇଁ ଚାହୁଁଛି। ତତ୍‌କ୍ଷଣାତ୍ ରବିବାବୁ କହିଲେ, "ମୁରଲୀବାବୁ ତା'ର ଯେଉଁଥିରେ ଆଗ୍ରହ ଅଛି ତାକୁ ସେହି ରାସ୍ତାରେ ଯିବାକୁ ଦିଅନ୍ତୁ।" ସେ ଭଲଭାବରେ

ଶିକ୍ଷା ସମାପ୍ତ କରି ତା'ର ଯେଉଁ ରାସ୍ତାରେ ଯିବାକୁ ଇଚ୍ଛା ଅଛି ସେହି ରାସ୍ତାରେ ଯାଉ। ପିଲାମାନଙ୍କ ପାଇଁ ଆଜି ଆକାଶ ପରିସୀମା। ଆମେ ତାଙ୍କୁ ସୀମିତ କରିବା କାହିଁକି? ସେଦିନ ରବିବାବୁଙ୍କର ସେହି କେତେ ପଦ କଥା ମୋତେ ବହୁ ପ୍ରଭାବିତ କରିଥିଲା। ଅବଶ୍ୟ ଏହା ମୋ ଭାଗ୍ୟର ବିଡ଼ମ୍ବନା ଯେ ମୋ ସମସ୍ତ ଯୋଗ୍ୟତା ଥାଇ ନାଁ ମୁଁ ଆଇ.ଏ.ଏସ୍. ହୋଇପାରିଲି ନା ସକ୍ରିୟ ରାଜନୀତିରେ ରହିପାରିଲି। ସେ ରାଜ୍ୟସଭା ନିର୍ବାଚନରେ ରବିବାବ ବିଜୟୀ ହେଲେ ଏବଂ ତା' ପରେ ପରେ ସର୍ବଭାରତୀୟ ସ୍ତରରେ ବିରୋଧୀ ଦଳମାନଙ୍କୁ ଏକାଠି କରି କଂଗ୍ରେସର ବିଶ୍ୱାସଯୋଗ୍ୟ ବିକଳ୍ପ ତିଆରି କରିବାର ପ୍ରକ୍ରିୟାରେ ବିଜୁବାବୁ ଏବଂ ସେ ସକ୍ରିୟ ରହିଥିଲେ। ଏ କଥା ସତ୍ୟ ଯେ ଏକ ପ୍ରଗତିଶୀଳ ଏବଂ ଗୁଣାତ୍ମକ ବିରୋଧୀଦଳ ଗଠନ କରିବା ପ୍ରକ୍ରିୟା ଓଡ଼ିଶାରୁ ହିଁ ଆରମ୍ଭ ହୋଇଥିଲା।

ତା'ପରେ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ଏକଛତ୍ରବାଦ ଏବଂ ଭ୍ରଷ୍ଟାଚାର ବିରୋଧୀ ଯୁବଛାତ୍ର ଆନ୍ଦୋଳନରେ ଭାଗନେବା ସମୟରେ ମୁଁ ରବିବାବୁଙ୍କ ନିକଟତର ହେବାର ସୁଯୋଗ ପାଇଲି। ସେ ଆନ୍ଦୋଳନକୁ ଏ ନିର୍ଦ୍ଦିଷ୍ଟ ରୂପେରେଖ ଦେବାରେ ସ୍ୱର୍ଗତ ମଧୁଲିମାୟେ, ଜର୍ଜ ଫର୍ଣ୍ଣାଡିସ୍, ରାଜନାରାୟଣ, କର୍ପୁରୀ ଠାକୁରଙ୍କ ସହ ରବିବାବୁ ସକ୍ରିୟ ଭାବରେ କାମ କରୁଥାନ୍ତି। ୧୯୭୫ ମସିହା ଜୁନ୍ ୨୪ ଏବଂ ୨୫ ତାରିଖ ଦିନ ନୂଆଦିଲ୍ଲୀରେ ସର୍ବଭାରତୀୟ ଯୁବଛାତ୍ର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା, ଯେଉଁଥିରେ ସ୍ୱର୍ଗତ ଜୟପ୍ରକାଶ ନାରାୟଣ ଯୋଗଦେଇ ଯୁବଛାତ୍ରମାନଙ୍କ ପାଇଁ ସଂପୂର୍ଣ୍ଣ କ୍ରାନ୍ତିର ଆହ୍ୱାନ ଦେଇଥିଲେ। ତା' ପରେ ପରେ ଜୁନ୍ ୨୬ ତାରିଖ ରାତ୍ରିରେ ରବିବାବୁଙ୍କ ସମେତ ବିରୋଧୀ ଦଳର ସମସ୍ତ ତୁଙ୍ଗନେତାଙ୍କୁ ଗିରଫ କରି ନିଆଗଲା। ଆମେ ଦିଲ୍ଲୀରେ ଥିଲେ ମଧ ସେଦିନ ରାତ୍ରିରେ ଏ କଥା ଜାଣିପାରି ନଥିଲୁ। ମୁଁ ମୋର ଜଣେ ବନ୍ଧୁଙ୍କ ସହ ତା' ପରଦିନ ସକାଳେ ରବିବାବୁଙ୍କ ଘରକୁ ଯିବା ସମୟରେ ସେ ଗିରଫ ହୋଇଥିବା ଖବର ଜାଣିଲୁ ଏବଂ ପୋଲିସ ମଧ ଆମକୁ ସେଠାରେ ପଚରଉଚରା କରିଥିଲା। ରବିବାବୁ କାରାବାସରେ ଥିଲା ସମୟରେ ମୁଁ ତାଙ୍କୁ ଭେଟିବାର ସୁଯୋଗ ପାଇନଥିଲି। ସେ କାରାମୁକ୍ତ ହୋଇ ବିଜୁବାବୁଙ୍କ ସହ ଓଡ଼ିଶା ଆସିବା ସମୟରେ ଆମେ ତାଙ୍କୁ ବିମାନବନ୍ଦରରେ ସମ୍ବର୍ଦ୍ଧନା ଜଣାଇଥିଲୁ। ତା'ପରେ ୧୯୭୭ ମସିହା ନିର୍ବାଚନରେ ପ୍ରାର୍ଥୀ ନ ହୋଇ ଜନତାଦଳର ସାଧାରଣ ସମ୍ପାଦକ ଭାବେ ନିର୍ବାଚନ ପରିଚ୍ଳନାରେ ଅଧିକ ସକ୍ରିୟ ଥିଲେ।

ମୋରାରଜୀ ଦେଶାଈଙ୍କ ନେତୃତ୍ୱରେ ଗଠିତ ହୋଇଥିବା ପ୍ରଥମ ଅଣକଂଗ୍ରେସ ସରକାରରେ ଯୋଗଦେବାକୁ ଯଦିଓ ରବିବାବୁଙ୍କୁ ସୁଯୋଗ ମିଳିଥିଲା ସେ ମନ୍ତ୍ରୀତ୍ୱ ଅପେକ୍ଷା

ଦଳର ସାଂଗଠନିକ ଦାୟିତ୍ୱ ବହନ କରିବାକୁ ଅଧିକ ପସନ୍ଦ କଲେ। ବହୁଦଳକୁ ନେଇ ଗଠନ କରାଯାଇଥିବା ଜନତା ଦଳକୁ ଏକାଠି କରି ରଖିବା ଏବଂ ଦଳର ସାଂଗଠନିକ ଦାୟିତ୍ୱକୁ ସୂଚାରୁରୂପେ ତୁଲାଇବାରେ ରବିବାବୁ ବହୁତ ସମୟ ଅତିବାହିତ କରୁଥିଲେ।

୧୯୭୮ ମସିହାରେ ମୁଁ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଯୋଗ ଦେବାପରେ ରବିବାବୁଙ୍କର ନିକଟତର ହେବାର ସୌଭାଗ୍ୟ ପାଇଲି ଏବଂ ତାଙ୍କୁ ଅତି ନିକଟରୁ ଦେଖି ତାଙ୍କ ବ୍ୟକ୍ତିତ୍ୱକୁ ଆକଳନ କରିବାର ସୁଯୋଗ ପାଇଲି। ତାଙ୍କର ସରଳ, ନିଷ୍କପଟ ଜୀବନ ଯାପନ ପ୍ରଚଣ୍ଡ କର୍ମନିଷ୍ଠା ଆଦର୍ଶପ୍ରତି ଏକାନ୍ତ ଅନୁରକ୍ତି ଓ ଚରମ ସାଧୁତା ମୋତେ ଅଭିଭୂତ କରିଥିଲା। ମୋର ଅଙ୍ଗେ ନିଭେଇଥିବା କେତୋଟି ଘଟଣା ଏଠାରେ ଅବତାରଣା କରୁଛି।

ରବିବାବୁ ଜନତାଦଳର ସାଧାରଣ ସମ୍ପାଦକ ଥିଲାବେଳେ ସ୍ୱର୍ଗତ ଦେବୀଲାଲ୍‌ଙ୍କ ପୁତ୍ର ଚୌତାଲା ଏବଂ ଅନ୍ୟ କେତେକ ହରିୟାଣାର ନେତା ରବିବାବୁଙ୍କୁ ସାକ୍ଷାତ କରିବାପାଇଁ ଆସିଥାନ୍ତି। ଖରାଦିନ ଥାଏ, ଆଗନ୍ତୁକମାନଙ୍କୁ ଦିଆଯାଇଥିବା ପିଇବା ପାଣି ସେତେ ଥଣ୍ଡା ନଥିଲା। ଚୌତାଲା ସାହେବ ପଚ୍ଚରିଦେଲେ ପାଣି ଥଣ୍ଡା ନାହିଁ କାହିଁକି? ରବିରାୟଜୀଙ୍କ ଘରେ କ'ଣ ଫ୍ରିଜ୍ ନାହିଁ? ବାସ୍ତବରେ ରବିବାବୁଙ୍କ ଘରେ ଫ୍ରିଜ୍ ନଥିଲା ଏବଂ ସେ କେନ୍ଦ୍ରମନ୍ତ୍ରୀ ହେଲାପରେ ମଧ୍ୟ ତାଙ୍କ ଶୟନକକ୍ଷରେ Air Conditioner ଲାଗିନଥିଲା। ତାଙ୍କର ତ ବ୍ୟକ୍ତିଗତ ଗାଡ଼ି ନଥିଲା ଏବଂ ଅନେକ ସମୟରେ ସେ ଅଟୋରେ ଯିବାକୁ ମଧ୍ୟ କୁଣ୍ଠାବୋଧ କରୁନଥିଲେ। ରାତ୍ରି ଭୋଜନ ସମୟରେ ସେ ଘରକୁ ଆସିଥିବା ସମସ୍ତ ବ୍ୟକ୍ତିଙ୍କୁ ସାଙ୍ଗରେ ଖାଇବାପାଇଁ ଡାକନ୍ତି ଏବଂ ସେହି ସମୟରେ ସମସ୍ତଙ୍କର ବ୍ୟକ୍ତିଗତ ଭଲମନ୍ଦ କଥା ପଚ୍ଚରିବୁଝନ୍ତି। ଖାଇବା ସାଧାରଣତଃ ନିରାମିଷ ଥାଏ ଏବଂ ଓଡ଼ିଆ ପ୍ରଣାଳୀରେ ରନ୍ଧା ହୋଇଥାଏ। ବେଳେବେଳେ ଆମିଷ ରନ୍ଧା ହୋଇଥିଲେ ରବିବାବୁ ଖୁସି ହୋଇ ପଚ୍ଚରନ୍ତି ଆଜି କ'ଣ କିଛି ବିଶେଷ ବ୍ୟବସ୍ଥା ଅଛି କି? ଏସବୁ ଘଟଣା ତାଙ୍କ ସରଳ ଜୀବନଯାପନର ଉଦାହରଣ ମାତ୍ର।

ରବିବାବୁ କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ଥିବାବେଳେ କେତେକ ବିଦେଶରୁ ଔଷଧ ଆମଦାନୀ କରୁଥିବା କମ୍ପାନୀ ସରକାରଙ୍କର ଅନୁମତି ପାଇ ଆବେଦନ କରିଥାନ୍ତି। ସେହି ସମୟରେ ସେମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ମୁଁ ସେମାନଙ୍କୁ ଅନୁମତି ଦେବାକୁ ରବିବାବୁଙ୍କୁ ଅନୁରୋଧ କରିଥିଲି। ମୋ କଥା ଶୁଣି ରବିବାବୁ ହଠାତ୍ ରାଗିଯାଇଥିଲେ ଏବଂ ମୋ ଚିନ୍ତାରେ ଏପରି ସ୍ଖଳନ କାହିଁକି ହେଲା ବୋଲି ପଚ୍ଚରିଲେ ଏବଂ ମୋତେ କହିଲେ ବିକଶିତ ଦେଶମାନଙ୍କରେ ବ୍ୟବହାର ଉପଯୋଗୀ ହୋଇ ନଥିବା ଔଷଧକୁ

ଆଣି ଏମାନେ ଆମଭଳି ଅନୁନ୍ନତ ଦେଶମାନଙ୍କରେ ଚଢ଼ା ଦରରେ ବିକ୍ରି କରନ୍ତି। ତେଣୁ ଏ ପାପର ଭାଗୀ ମୁଁ ହୋଇପାରିବି ନାହିଁ। ମୁଁ ଜାଣେ ଅତୀତର ସ୍ୱାସ୍ଥ୍ୟମନ୍ତ୍ରୀମାନେ ଏ କାମ କରିଛନ୍ତି। ହୁଏତ ଭବିଷ୍ୟତର ମନ୍ତ୍ରୀମାନେ ମଧ କରିପାରନ୍ତି। କିନ୍ତୁ ରବି ରାୟ ଏ କାମକୁ ପ୍ରଶୟ ଦେବନାହିଁ। ମୁଁ ଜାଣେ ଅତୀତର ସ୍ୱାସ୍ଥ୍ୟମନ୍ତ୍ରୀମାନେ ଏ କାମ କରିଛନ୍ତି। ହୁଏତ ଭବିଷ୍ୟତର ମନ୍ତ୍ରୀମାନେ ମଧ କରିପାରନ୍ତି। କିନ୍ତୁ ରବିରାୟ ଏ କାମକୁ ପ୍ରଶୟ ଦେବନାହିଁ। ମୋର ଏ ଭୁଲ୍ ଚିନ୍ତା ପାଇଁ ଏବଂ ମୋତେ ଭବିଷ୍ୟତରେ ଏଭଳି ପ୍ରରୋଚନାର ବଶବର୍ତ୍ତୀ ନ ହେବାପାଇଁ ଉପଦେଶ ଦେଇ ସେଦିନ ରାତିରେ ସେ ରାତ୍ରିଭୋଜନ ଗ୍ରହଣ କରିନଥିଲେ। ଏହି ଘଟଣା ମୋ ଉପରେ ପ୍ରଚଣ୍ଡ ପ୍ରଭାବ ପକାଇଥିଲା। ଆଉ ଗୋଟିଏ କଥା, ସେ ମନ୍ତ୍ରୀ ଥିବାବେଳେ "ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥାନ"ରେ Housemanship କରିବାପାଇଁ ସୁପାରିଶ କରିବାକୁ ତାଙ୍କର ଜଣେ ସମ୍ପର୍କୀୟ ଭଣଜା ତାଙ୍କ ପାଖକୁ ଆସିଥିଲେ। ରବିବାବୁ ଏ ଅନୁରୋଧ ଶୁଣିବାମାତ୍ରେ କ୍ରୋଧାନ୍ୱିତ ହୋଇ କହିଥିଲେ "ମୋ ଭଣଜା ପାଇଁ ମୁଁ ସୁପାରିଶ କରିବି ?" ଏ କଥା ତୁ ଭାବିପାରିଲୁ କେମିତି ? ସାକ୍ଷାତକାରରେ ଯୋଗଦିଅ ଏବଂ ନିଜର ଯୋଗ୍ୟତା ଅନୁସାରେ ଯାହା ହେବାର କଥା ହେବ। ହୁଏତ ଅନ୍ୟ କେହି ଓଡ଼ିଆ ପିଲା ମୋତେ ଏ କଥା କହିଥିଲେ ମୁଁ ତା'ପାଇଁ ଚିନ୍ତା କରିଥାନ୍ତି।" ସେଦିନ ମୁଁ ତାଙ୍କୁ ବୁଝାଇ କ୍ରୋଧ ଶାନ୍ତ କରାଇଥିଲି। ସେ ସ୍ୱାସ୍ଥ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କର ପତ୍ନୀ ଡାକ୍ତର ସରସ୍ୱତୀ ସ୍ୱାଇଁ ଯେ କି ଜଣେ ସ୍ୱନାମଧନ୍ୟା ଅଧ୍ୟାପିକା ଥିଲେ ତାଙ୍କୁ ବିଦେଶ ଯିବାପାଇଁ କେତେକ ବିଦେଶୀ ଅନୁଷ୍ଠାନ ନିମନ୍ତ୍ରଣ କରିଥାଆନ୍ତି, ମାତ୍ର ରବିବାବୁ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାରୁ ଡକ୍ଟର ସ୍ୱାଇଁ ନମ୍ରତାର ସହିତ କେତେକ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିବା କଥା ମୁଁ ଜାଣେ। ରବିବାବୁ ଏବଂ ଡାକ୍ତର ସ୍ୱାଇଁ ଉଭୟ ଉଭୟଙ୍କର ପରିପୂରକ। ସମାଜ ଓ ଦେଶପାଇଁ ଆତ୍ମୋତ୍ସର୍ଗ କରିଛନ୍ତି। ପ୍ରକାରାନ୍ତରେ କଷ୍ଟ ମଧ ପାଇଛନ୍ତି।

ଦ୍ୱୈତ ସଭ୍ୟପଦକୁ ନେଇ ଆଦର୍ଶଗତ କାରଣରୁ ଜନତା ଦଳର ବିଭାଜନ ହେଲା। ରବିବାବୁ ସିଧାସଳଖ ଯାଇ ତତ୍କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ମୋରାର୍ଜୀ ଦେଶାଇଙ୍କ ହାତରେ ଇସ୍ତଫାପତ୍ର ଧରାଇଦେଲେ ଏବଂ ସ୍ପଷ୍ଟ ଭାବରେ କହିଥିଲେ ଯେ ଏହା ହିଁ ଇତିହାସର ବିଡ଼ମ୍ବନା।

ଆଉ ଏକ କଥା ଅବତାରଣା କରିବାକୁ ଚାହେଁ। ଦିଲ୍ଲୀରେ ଥିବାବେଳେ ବିଜୁବାବୁ ଏବଂ ରବିବାବୁଙ୍କ ମଧରେ ଖୁବ୍ ଆତ୍ମୀୟତା ବଢ଼ିଯାଇଥିଲା। ବିଜୁବାବୁ ଏବଂ ତାଙ୍କ ପତ୍ନୀ ଜ୍ଞାନଦେବୀ ରବିବାବୁଙ୍କୁ ସାନଭାଇ ଭଳି ଶ୍ରଦ୍ଧା କରୁଥିଲେ। ମାତ୍ର ଓଡ଼ିଶାର

କେତେକ ସ୍ୱାର୍ଥନ୍ୱେଷୀ ନେତା ଚକ୍ରାନ୍ତମୂଳକ ଭାବରେ ଏ ସମ୍ପର୍କରେ ବାଧା ସୃଷ୍ଟି କରିଥିଲେ। ନହେଲେ ହୁଏତ ବିଜୁବାବୁଙ୍କ ଅନ୍ତେ ଓଡ଼ିଶାରେ ନେତୃତ୍ୱ ସଂକଟ ଦେଖାଦେଇନଥାନ୍ତା।

ରବିବାବୁଙ୍କ ସହିତ ମୋ ସମ୍ପର୍କ ଏବଂ ତାଙ୍କ ଅନ୍ତରଙ୍ଗ ଥିଲାବେଳେ ଅନେକ ଘଟଣାବଳୀ ବିଷୟରେ ଉଲ୍ଲେଖ କଲେ ଲେଖାଟି ବହୁତ ଲମ୍ବା ହୋଇଯିବ। ମୁଁ ରବିବାବୁଙ୍କ ତଥା ତାଙ୍କ ପତ୍ନୀ ମାନନୀୟ ଡାକ୍ତର ସ୍ୱାଇଁଙ୍କ ପାଖରୁ ପୁତ୍ରବତ୍ ସ୍ନେହଶ୍ରଦ୍ଧା ପାଇଛି ଏବଂ ରବିବାବୁ ଜଣେ ଗୁରୁଭାବରେ ମୋତେ ମାର୍ଗଦର୍ଶନ ଦେଇଛନ୍ତି। ଏଭଳି ଜଣେ ପ୍ରଚଣ୍ଡ, ପ୍ରତିଭାବାନ୍, ନିଷ୍ଠାପର ଦେଶସେବୀଙ୍କ ଏବଂ ଅସାଧାରଣ ମାନବବାଦୀଙ୍କ ସମ୍ପର୍କରେ ଆସିଥିବାରୁ ମୁଁ ନିଜକୁ ଧନ୍ୟ ମନେକରୁଛି।

■■■

# ଲୋକସଭା ବାଚସ୍ପତି

ଡ. ହୃଷିକେଶ ପଣ୍ଡା

## (୧)

ରବିରାୟ ୧୯୯୦ରେ ଲୋକସଭାର ବାଚସ୍ପତି ହେଲେ। ଜୀବନରେ ସାଧୁତାକୁ ମୂଳମନ୍ତ୍ର କରିଥିବା ରବିରାୟ ବାଚସ୍ପତି ହେବା ସମୟରେ ଏହାକୁ ଅନେକ କ୍ଷେତ୍ରରେ କାର୍ଯ୍ୟକାରୀ କରିଥିଲେ।

ଲୋକସଭାର ସେକେଟେରୀ ଜେନେରାଲ ବା ମହାସଚିବ ଭାରତ ସରକାରଙ୍କ କ୍ୟାବିନେଟ୍ ସେକ୍ରେଟେରୀର ଦରମା ପାଆନ୍ତି। କ୍ୟାବିନେଟ୍ ସେକ୍ରେଟେରୀ ଭାରତର ସରକାରୀ କର୍ମଚାରୀଙ୍କ ଭିତରେ ସବୁଠୁ ଉଚ୍ଚପଦବୀ। କିନ୍ତୁ ଲୋକସଭାର ମହାସଚିବ ସାଧାରଣତଃ ଦ୍ୱିତୀୟ ଶ୍ରେଣୀରେ ଲୋକସଭାର ଚାକିରିରେ ଯୋଗଦେଇ କ୍ରମେ ଉପରକୁ ଉଠିଥାନ୍ତି। ଲୋକସଭାର ସଚିବାଳୟ କାମରେ ବାହାରର ଲୋକେ ହସ୍ତକ୍ଷେପ କରନ୍ତି ନାହିଁ। ସଚିବାଳୟର ବଜେଟ୍ ଅର୍ଥବିଭାଗ ଦେଖନ୍ତି ନାହିଁ। ଏହାର ଖର୍ଚ୍ଚ ବାକି ଅଡିଟ୍ ହୁଏ ନାହିଁ। ଏହାର ପଦବୀ ଓ ଦରମାର ହାର ଅନୁମୋଦନ ପାଇଁ ଅର୍ଥ ବିଭାଗକୁ ଆସେ ନାହିଁ। ବାଚସ୍ପତି କିଛି ଲୋକସଭା ସାଂସଦ କମିଟି ମାଧ୍ୟରେ ଏହି ସବୁ ନିର୍ଦ୍ଧାରଣ କରନ୍ତି। ସେହି ଲୋକସଭା ସଦସ୍ୟମାନେ କର୍ମଚାରୀଙ୍କ ଉପରେ ନିର୍ଭର କରୁଥିବାରୁ (ଦରମା, ଭତ୍ତା, ପେନ୍‌ସନ୍, ଟିକେଟ୍, ଘର ଇତ୍ୟାଦି ପାଇଁ) ସଦସ୍ୟମାନେ କର୍ମଚାରୀଙ୍କୁ ଖୁସି ରଖିବାକୁ. ଚାହୁଁଥାନ୍ତି। ଫଳରେ, କର୍ମଚାରୀମାନେ ଯାହା ଚାହାନ୍ତି, ତାହା କମିଟି କରାଇନିଅନ୍ତି। ଫଳରେ ଜଣେ ଲୋକ ସର୍ବଭାରତୀୟ ପରୀକ୍ଷାରେ ପାସ୍ କରି ଧରନ୍ତୁ ଆଇ.ଏ.ଏସ୍. ଚାକିରିରେ ଯୋଗଦାନ କରିବାର ଅଠର ବର୍ଷ ପରେ କମିଶନର ପଦବୀକୁ ଆସୁଥିବାବେଳେ ଲୋକସଭାରେ ଜଣେ କିରାଣୀ ପଦବୀରେ ଯୋଗଦେଇ ଏହାଠୁ କମ୍ ସମୟରେ କମିଶନରର ସ୍ତରରେ ପହଞ୍ଚିପାରେ। ଲୋକସଭାର ସ୍ୱାଧୀନତା ଆଳରେ ଏହା କରାଯାଏ। ଅତ୍ୟଧିକ ସ୍ୱାଧୀନତା ଓ ନିରଙ୍କୁଶ କ୍ଷମତା ସବୁବେଳେ ଦୁର୍ନୀତି ଆଡ଼କୁ ବାଟ କଢ଼େଇ ନିଏ। ଏହିପରି ଜଣେ ଲାଇବ୍ରେରିଆନ୍ ପଦବୀରୁ ଉଠି ଦୀର୍ଘକାଳ ମହାସଚିବ ରହିଥିଲେ ସୁଭାଷ ଚନ୍ଦ୍ର କାଶ୍ୟପ।

ରବିରାୟଙ୍କ ପୂର୍ବରୁ ଯେଉଁ ବାଚସ୍ପତିମାନେ ଥିଲେ ସେମାନେ ମହାସଚିବଙ୍କ କ୍ଷମତା ବଢ଼ାଇବାରେ ଲାଗିଲେ। ପୁଣି ସେମାନଙ୍କର ଅବସର ବୟସ ସୀମା ଅନ୍ୟମାନଙ୍କ ପାଇଁ ୫୮ ବର୍ଷ ହୋଇଥିବାବେଳେ ଏହାକୁ ବାଷଠି ବର୍ଷ କରାଇନେଇଥିଲେ। ଏପରିକି ଲୋକସଭାର କର୍ମଚାରୀମାନଙ୍କ ବିଷୟରେ ଥିବା ସମସ୍ତ କ୍ଷମତା - ନିଯୁକ୍ତିଠାରୁ ଆରମ୍ଭ କରି ବହିଷ୍କାର ପର୍ଯ୍ୟନ୍ତ - ବାଚସ୍ପତିଙ୍କଠୁ କାଢ଼ିନେଇ ମହାସଚିବଙ୍କୁ ଦିଆଗଲା।  ଲୋକସଭାରେ କାଶ୍ୟପ ମହାଶୟ ଅନେକ ଦିନ ମହାସଚିବ ରହିଲେ। ଏପରିକି ରବିରାୟ ତାଙ୍କୁ ୬୨ ବର୍ଷ ପରେ ଆଉ ଏକ ବର୍ଷ ପାଇଁ ଚାକିରି କାଳ ବଢ଼େଇଦେଲେ। ରବିରାୟ ସରଳବିଶ୍ୱାସୀ ଲୋକ। ସେ ବି କାଶ୍ୟପଙ୍କର ବହୁତଗୁଡ଼ିଏ ବହି ପ୍ରକାଶିତ ହେବାର ଦେଖି ତାଙ୍କୁ ବଡ଼ ଜ୍ଞାନୀଲୋକ ଭାବିଥିଲେ।

ସେପ୍ଟେମ୍ବର ୧୯୯୦ରେ ବାଚସ୍ପତିଙ୍କ ସଚିବ ଭାବେ ହୃଷୀକେଶ ପଣ୍ଡା ଯୋଗଦେଲେ। ଏହାପରେ ସେ ବାଚସ୍ପତିଙ୍କ ଦୃଷ୍ଟିକୁ କେତୋଟି ଦୁର୍ନୀତିର ଦୃଷ୍ଟାନ୍ତ ଆଣିଦେଲେ। ପ୍ରଥମ ଦୃଷ୍ଟାନ୍ତ ଥିଲା କାଶ୍ୟପ ବାବୁଙ୍କର ତଥାକଥିତ ପାଣ୍ଡିତ୍ୟ। ଯେଉଁସବୁ ବହି କାଶ୍ୟପ ବାବୁ ଲେଖିଥିଲେ ବୋଲି ଦେଖାଇଥିଲେ, ସେ ସବୁ ପ୍ରକୃତରେ ଲୋକସଭାର ବିରାଟ ପୁସ୍ତକାଗାରର କର୍ମଚାରୀମାନେ ଲେଖୁଥିଲେ। ଏହାକୁ ହୁଏତ ଲୋକସଭା ନିଜେ ଛାପୁଥିଲା, ନଚେତ୍ କୌଣସି ବଜାରର ପ୍ରକାଶକଙ୍କ ଦ୍ୱାରା ଛପା ଯାଉଥିଲା। ବାହାରର ପ୍ରକାଶକଙ୍କ ଦ୍ୱାରା ଛପା ଯାଉଥିବା ବହିରୁ ଅଧିକାଂଶ ବହି ଲୋକସଭା ଦ୍ୱାରା କିଣାଯାଉଥିଲା, ତେଣୁ ପ୍ରକାଶକମାନେ ଆନନ୍ଦରେ ଏ ବହି ଛାପୁଥିଲେ। କିନ୍ତୁ ସବୁ ବହିରେ କାଶ୍ୟପ ବାବୁଙ୍କ ନାଁ ଲେଖା ହିସାବରେ ରହିଥିଲା। ଏଥିରୁ ସେ ରୟାଲଟି ମଧ ପାଉଥିଲେ।

ଏପରି ବହିରୁ ସବୁଠୁ ଗୁରୁତ୍ୱପୂର୍ଣ୍ଣ ବହି ହେଲା ପ୍ରାକ୍‌ଟିସ ଏଣ୍ଡ ପ୍ରୋସିଜିଓର ଅଫ୍ ପାର୍ଲାମେଣ୍ଟ। ଲୋକସଭା, ରାଜ୍ୟସଭା ଓ ବିଧାନସଭାର କାର୍ଯ୍ୟପଦ୍ଧତିରେ ବେଦ ବୋଲି ଧରାଯାଏ। ଏହାକୁ ପ୍ରଥମେ ଏମ୍.ଏନ୍. କଲ୍ ଓ ଏସ୍.ଏଲ୍. ସକଧର ଲେଖିଥିଲେ। ସେମାନେ ମଧ ଲୋକସଭାର ପୁସ୍ତକାଗାରର ଲୋକଙ୍କ ଦ୍ୱାରା ଏ ବହିର ଅନେକାଂଶ ଲେଖାଇଥିଲେ। କିନ୍ତୁ ଏହାକୁ ଲୋକସଭାର ସଚିବାଳୟ ପକ୍ଷରୁ ପ୍ରକାଶିତ କରାଯାଇଥିଲା। ଫଳରେ ଏହା ଲୋକସଭାର ପ୍ରକାଶନ ବୋଲି ଗଣାଯାଉଥିଲା। କିନ୍ତୁ କାଶ୍ୟପ ବାବୁ ଏହି ବହିରେ କିଛି ସଂଶୋଧନ କରି ନିଜ ନାମରେ ବାହାର ପ୍ରକାଶକଙ୍କ ଦ୍ୱାରା ଏହି ବହି ଛପାଇବାକୁ ପଦକ୍ଷେପ ନେଇଥିଲେ।

ମାଙ୍ଗେରାମ ନାମକ ଜଣେ ସ୍ୱଳ୍ପ ବେତନ ଭୋଗୀ କର୍ମଚାରୀଙ୍କୁ ବିକ୍ଷୋଭ କରିବା ଅଭିଯୋଗରେ କାଶ୍ୟପ ବାବୁ ବହିଷ୍କାର କରିଥିଲେ। ସେ କାଶ୍ୟପ ବାବୁଙ୍କର ଦୁର୍ନୀତି ବିରୁଦ୍ଧରେ ଅନେକ ଅଭିଯୋଗ ଆଣିଥିଲେ। ମାଙ୍ଗେରାମ ଦିଲ୍ଲୀ ହାଇକୋର୍ଟର ଦ୍ୱାରସ୍ଥ ହେଲା। ସେ ସମୟରେ ରବିରାୟ କାଶ୍ୟପ ବାବୁଙ୍କୁ କହିଲେ ମାଙ୍ଗେରାମକୁ ଚାକିରିରେ ଥଇଥାନ କର। କାଶ୍ୟପ ବାବୁ ଗୋଟିଏ ନଥି ଆଣିଲେ ଓ କହିଲେ ଆମେ ହାଇକୋଟରେ ସେଇଆ କହିବା ଓ ନଥିଟି ଦସ୍ତଖତ କରାଇନେଲେ। ବାଚସ୍ପତି ଦଶଟା ବେଳେ ନିଜ କାର୍ଯ୍ୟାଳୟକୁ ଯାଆନ୍ତି। ଏଗାରଟା ବେଳେ ଲୋକସଭା ଆରମ୍ଭ ହୁଏ। ଦଶଟାରୁ ଏଗାରଟା ଭିତରେ ବିଭିନ୍ନ ସାଂସଦ ଆସି ଭିଡ଼ଭାଡ଼ କରନ୍ତି। ଏହି ସମୟ ଭିତରେ କାଶ୍ୟପ ବାବୁ ନଥିରେ ରବିରାୟଙ୍କ ଦସ୍ତଖତ କରାଇ ନିଅନ୍ତି। ରବିରାୟ ଏତେ ସରଳବିଶ୍ୱାସୀ, ଏଣୁ କାଶ୍ୟପ ବାବୁଙ୍କୁ ବିଦ୍ୱାନ ଭାବି ତାଙ୍କ ଉପରେ ପ୍ରଗାଢ଼ ଭରସା। କାଶ୍ୟପ ବାବୁ ଯାହା କରନ୍ତି ତାକୁ ବିଶ୍ୱାସ କରି ନଥିରେ ଦସ୍ତଖତ କରାଇନିଅନ୍ତି।

ଯେବେ ହାଇକୋର୍ଟରେ ଆଫିଡ଼େଭିଟ୍ ଦିଆଗଲା, ଦେଖାଗଲା ଯେ, ମାଙ୍ଗେରାମଙ୍କୁ ଚାକିରିରୁ ବହିଷ୍କାର କରିବାର ଆଦେଶ ବଳବତ୍ତର ରହୁ ବୋଲି ଆଫିଡ଼େଭିଟ୍ ଦିଆଯାଇଛି। ଅର୍ଥାତ୍ କାଶ୍ୟପ ବାବୁ ଯାହା କହିଲେ, ତା'ର ଓଲଟା ନଥିରେ ଲେଖେଇ ଆଣିଥିଲେ ଏବଂ ବାଚସ୍ପତିଙ୍କୁ ଦସ୍ତଖତ କରାଇ ନେଇଥିଲେ।

କାଶ୍ୟପ ବାବୁଙ୍କ ବିରୁଦ୍ଧରେ ଅନ୍ୟାନ୍ୟ ଦୁର୍ନୀତି ଅଭିଯୋଗ ଭିତରେ ଥିଲା ଘର ଆବଣ୍ଟନରେ ଦୁର୍ନୀତି, ଆର୍ଥିକ ବିଶୃଙ୍ଖଳା ଓ କ୍ଷମତାର ଅପବ୍ୟବହାର। ଏ ସବୁ ଦୁର୍ନୀତିର ସମ୍ୟକ୍ ପ୍ରମାଣ ପାଇବା ପରେ ରବିରାୟ ସୁଭାଷ ଚନ୍ଦ୍ର କାଶ୍ୟଙ୍କୁ ଚାକିରିରୁ ବାହାର କରିଦେଲେ।

ଲୋକସଭାର ଇତିହାସରେ ଏହା ପ୍ରଥମ ଥିଲା। କାଶ୍ୟପ ବାବୁଙ୍କୁ ବାହାର କରିବା କିଛି ସାନ କଥା ନଥିଲା। ପୁଣି ଲୋକସଭା ଗୋଟିଏ ପଞ୍ଚାୟତ ପରି। ଏଠି ସମସ୍ତଙ୍କୁ ଧରି କାମ କରିବାକୁ ପଡ଼େ। ତେଣୁ କାଶ୍ୟପ ବାବୁଙ୍କୁ ବାହାର କରିବା ପୂର୍ବରୁ ରବିରାୟ ରାଜୀବ ଗାନ୍ଧି, ଲାଲକୃଷ୍ଣ ଆଡ଼ଭାନୀ, ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହ, ସୋମନାଥ ଚାଟାର୍ଜୀ ଓ ଇନ୍ଦ୍ରଜିତ୍ ରାୟ ପ୍ରଭୃତିଙ୍କ ପରାମର୍ଶ ନେଇଥିଲେ।

ଯେଉଁଦିନ ସୁଭାଷ ଚନ୍ଦ୍ର କାଶ୍ୟପଙ୍କୁ ବହିଷ୍କାର ଆଦେଶ ଦିଆଗଲା ସେଦିନ କାଳେ ସେ ଉଚ୍ଚ ନ୍ୟାୟାଳରୁ ରହିତାଦେଶ ଆଣି ଦେବେ ସେଥିପାଇଁ ରବିରାୟ ବମ୍ବେ ଚାଲିଗଲେ। ସୁଭାଷ କାଶ୍ୟପ ଗଲାବେଳେ ଦୁଇ ତିନୋଟି ଟ୍ରକ୍ ଭର୍ତ୍ତି କରି କାଗଜପତ୍ର ନେଇଗଲେ। ଏ ପ୍ରତ୍ୟେକଟି ବହି ପୁସ୍ତକାଗାରର କର୍ମଚାରୀମାନେ ଲେଖିଥିଲେ।

ବହିଷ୍କୃତ ହେବା ପରେ କାଶ୍ୟପ ବାବୁ ଖବରକାଗଜରେ ରବିରାୟଙ୍କ ବିରୁଦ୍ଧରେ ଅନେକ କଥା ଲେଖୁଥିଲେ। ଅନ୍ୟ ଦଳର ଲୋକେ, ଯେଉଁମାନେ କାଶ୍ୟପ ବାବୁଙ୍କ ବହିଷ୍କାରକୁ ସମର୍ଥନ କରିଥିଲେ, ସେମାନେ ମଧ୍ୟ ଏଥିରେ ପରିବର୍ତ୍ତନ ମାଗିଲେ। ସେମାନେ କହିଲେ ଯେ କାଶ୍ୟପ ବାବୁଙ୍କୁ ବହିଷ୍କାର ନକରି ସ୍ୱତପ୍ରବୃତ୍ତ ଇସ୍ତଫା ଦେବାକୁ ଅନୁମତି ଦିଆଯାଉ। ରବିରାୟଙ୍କର କାଶ୍ୟପ ବାବୁଙ୍କ ବିରୁଦ୍ଧରେ କିଛି ବ୍ୟକ୍ତିଗତ ଅକ୍ରୋଶ ନଥିଲା। ସେ ଏଥିରେ ସମ୍ମତ ହେଲେ। କାଶ୍ୟପ ବାବୁଙ୍କୁ ମଧ୍ୟ ଡକାଇ ଭେଟିଲେ। କାହାରି ସମ୍ମାନ ହାନି କରିବାର ଉଦ୍ଦେଶ୍ୟ ରବିରାୟଙ୍କର ନଥିଲା। ତେଣୁ ସସମ୍ମାନେ କାଶ୍ୟପ ବାବୁଙ୍କୁ ସ୍ୱତଃପ୍ରବୃତ୍ତ ଇସ୍ତଫା ଦେବାର ଆଦେଶ ଦେଲେ।

(୨)

ଏହି ଘଟଣା ପରେ ରବିରାୟଙ୍କୁ ସାର୍ବଜନୀନ ସାଧୁତା ଓ ସ୍ଥିର ସିଦ୍ଧାନ୍ତ ନେବାର ଦକ୍ଷତା ଲୋକସଭାରେ ଓ ବାହାରେ ପ୍ରଚାରିତ ହେଲା। ଅବଶ୍ୟ କିଛିଦିନ ଖବରକାଗଜରେ କାଶ୍ୟପ ବାବୁ ଅନ୍ୟମାନଙ୍କ ଦ୍ୱାରା ବିଷୋଦ୍‌ଗାର କରିବାରେ ଲାଗିଥିଲେ।

ଲୋକସଭାର ଶୂନ୍ୟକାଳରେ ଖୁବ୍ ଗଣ୍ଡଗୋଳ ହୁଏ, କାରଣ ବହୁତ ଲୋକ ଉଠି ବହୁତ କଥା କହିବାକୁ ଚାହାନ୍ତି। କୌଣସି କଥା କେହି କହି ପାରନ୍ତି ନାହିଁ। ଶୂନ୍ୟକାଳରେ ସମୟକୁ ଫଳପ୍ରଦ କରିବାପାଇଁ ରବିରାୟ ଏକ ନୂତନ ପଦକ୍ଷେପ ନେଲେ। ଶୂନ୍ୟକାଳ ସମୟରେ ସ୍ଥାନୀୟ ଲୋକଙ୍କର ଜରୁରୀ ସମସ୍ୟା ସାଂସଦମାନେ ଆଣିଥାନ୍ତି, ତାହେଲେ ସରକାର କିଛି କରିବେ। ହେଲେ ଶୃଙ୍ଖଳାର ଅଭାବ ହେତୁ, ଏହା ହୋଇପାରେ ନାହିଁ। ରବିରାୟ ବ୍ୟକ୍ତିଗତ ସ୍ତରରେ ଖୁବ୍ ଦୁଃଖିତ ହୁଅନ୍ତି। "ଏତେ ବଡ଼ ଦେଶ, ଏତେ ସମସ୍ୟା, କେମିତି ସେମାନଙ୍କର ଦୁଃଖ ଶୁଣାଯାଇପାରିବ ?" କିନ୍ତୁ ହୁଏ ନାହିଁ। ବାଚସ୍ପତି ହିସାବରେ ଶୃଙ୍ଖଳା ଜାରି କରିବାକୁ ଯାଇ ବିଫଳ ହୁଅନ୍ତି। ତେଣୁ ସେ ଗୋଟିଏ ନିୟମ କଲେ ଯେ, ଶୂନ୍ୟକାଳରେ ଯେଉଁ ସାଂସଦ କହିବାକୁ ଚାହିଁବେ ସେ ସକାଳ ଦଶଟାବେଳେ ବାଚସ୍ପତି ଜଣାଇବେ। ତଦନୁଯାୟୀ ତାଲିକା ତିଆରି ହେଲା। ତାଲିକା ଅନୁଯାୟୀ ସାଂସଦମାନଙ୍କୁ କହିବା ପାଇଁ ସୁଯୋଗ ଦିଆଗଲା। ସେମାନେ ନିର୍ଦ୍ଦିଷ୍ଟ ବକ୍ତବ୍ୟ କହିବାର ସୁଯୋଗ ପାଇଲେ ଓ ସରକାରଙ୍କ ଦୃଷ୍ଟିକୁ ଆଣିପାରିଲେ।

ବାଚସ୍ପତି ହିସାବରେ ଆଉ ଗୋଟିଏ ସାଧୁତା ତାଙ୍କୁ ଲୋକସଭାର କାମ ସହଜ କରିବାର ସୁଯୋଗ ଦେଇଥିଲା। ତାଙ୍କର କୌଣସି ବ୍ୟକ୍ତିଗତ ବିଦ୍ୱେଷ ନଥିଲା। ସେ

ସବୁ ସାଂସଦମାନଙ୍କ ନାଁ ଜାଣିଥିଲେ। ନିୟମାନୁଯାୟୀ ବିଭିନ୍ନ ଦଳଗୁ ଦିଆଯାଇଥିବା ସାଂସଦମାନେ ସୀମିତ ସମୟ ଭିତରେ ଆଲୋଚନା ସାରୁଥିଲେ। ଓଡ଼ିଶା ବିଧାନସଭାରେ ଯେପରି ଯିଏ ଯେତେବେଳେ ଚାହିଁବେ, ଯାହା ପାରେ ତାହା କହିଯିବ। ସେସବୁ ସେ ସୁଯୋଗ ଦେଉନଥିଲେ। ଫଳରେ ଲୋକସଭା ଶୃଙ୍ଖଳିତ ହେଉଥିଲା। ବ୍ୟକ୍ତିଗତ ସାଧୁତା, ନିୟମାବଳୀର ଆଚରଣ ଓ ଚିତ୍ତବୃତ୍ତିଗତ ସ୍ୱଚ୍ଛତା ତାଙ୍କର ବାଚସ୍ପତି ଭୂମିକାକୁ ସମ୍ମାନନୀୟ ଓ ସହଜ କରିଥିଲା।

## (୩)

ବିଶ୍ୱନାଥ ପ୍ରତାପ ସିଂହଙ୍କ ମନ୍ତ୍ରିମଣ୍ଡଳର ପତନ ପରେ କଂଗ୍ରେସ ସମର୍ଥନରେ ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ହେଲେ। ଜନତା ଦଳ ଭାଙ୍ଗିଲା। କିଛି ଲୋକ ଜନତାଦଳ ଛାଡ଼ି ଚନ୍ଦ୍ରଶେଖରଙ୍କ ଦଳରେ ମିଶିଲେ। ଚନ୍ଦ୍ରଶେଖରଙ୍କର ଅଳ୍ପ କିଛି ସମର୍ଥକ ଥିଲେ। ଦଳବଦଳ ଆଇନ ଲାଗୁ କରିବାପାଇଁ ପ୍ରାର୍ଥନା ହେଲା।

ଦଳବଦଳ ଆଇନ ସମ୍ବିଧାନରେ ଅଛି। ଏହାକୁ ରାଜୀବ ଗାନ୍ଧି ସରକାର ସମୟରେ ପ୍ରଣୟନ କରାଯାଇଥିଲା। ଏହା ପୂର୍ବରୁ ଦଳବଦଳ ଆଇନରେ କେବଳ ଦୁଇଟି ଛୋଟ ଦୃଷ୍ଟାନ୍ତ ଥିଲା। ଏହି ଦୁଇଟି ବିଷୟରେ କୌଣସି ସିଦ୍ଧାନ୍ତ ନିଆ ନଯାଇ ଲୋକସଭାର କମିଟିକୁ ପଠାଇ ଦିଆଯାଇଥିଲା। କମିଟିରେ କୌଣସି ସିଦ୍ଧାନ୍ତ ହେଲା ନାହିଁ। ଲୋକସଭା ଭାଙ୍ଗିଗଲା। ଦଳବଦଳ ଆଇନ ଯଥାର୍ଥତଃ, ଆଗରୁ କାର୍ଯ୍ୟକାରୀ ହୋଇ ନଥିଲା। ହେଲେ ଏହି ଦଳବଦଳରେ ସବୁଠୁ ବଡ଼ କଥା ହେଲା ଯେ, ଏହା ପୂର୍ବରୁ ଯେଉଁ ଦୁଇଟି ଘଟଣା ଘଟିଥିଲା, ତାହା ଜଣେ ଦୁଇଜଣ ସଭ୍ୟଙ୍କ ବିଷୟରେ ଥିଲା। କିନ୍ତୁ ଏଥର ସମୁଦାୟ ସରକାରର ଭବିଷ୍ୟତ ଏହି ସିଦ୍ଧାନ୍ତ ଉପରେ ନିର୍ଭର କରୁଥିଲା।

ଏହି ସିଦ୍ଧାନ୍ତ ନେବାର ଦାୟିତ୍ୱ ବାଚସ୍ପତିଙ୍କର। ସେ ଏଠାରେ ଜଣେ ବିଗ୍ଭରକ ହିସାବରେ କାମ କରନ୍ତି। ଏଣେ ଲୋକସଭା ଗୋଟିଏ ପଞ୍ଚାୟତ ହୋଇଥିବାରୁ ପାଞ୍ଚଜଣଙ୍କ କଥା ଶୁଣିବାକୁ ପଡ଼େ। ଉଭୟ ବିଶ୍ୱନାଥ ପ୍ରତାପ ସିଂହ ଓ ଚନ୍ଦ୍ରଶେଖର ରବି ରାୟଙ୍କୁ ବ୍ୟକ୍ତିଗତ ବନ୍ଧୁ। ତେଣୁ ନିଷ୍ପତ୍ତି ବିଚାର କରିବାର କଷ୍ଟ ବହୁତ ବେଶି।

କଂଗ୍ରେସ ଦଳର ଆଭିମୁଖ୍ୟ ଦୁଇପ୍ରକାରର ଥିଲା। କିଛି ଚାହୁଁଥିଲେ ଏ ସମର୍ଥନ ଦେବାଟା ଭୁଲ୍, ତେଣୁ ସମସ୍ତଙ୍କୁ ଅସିଦ୍ଧ ଘୋଷଣା କରିଦେଲେ ସରକାରଟା ଭାଙ୍ଗିଯିବ। ଏହି ମତବାଦୀଙ୍କ ଭିତରେ ସ୍ୱର୍ଗତ ପି.ଆର୍. କୁମାରମଙ୍ଗଳମ୍ ଥିଲେ। ଆଉ କିଛି

ଚାହୁଁଥିଲେ ରବିରାୟ କିଛି ସିଦ୍ଧାନ୍ତ ନ ନିଅନ୍ତୁ, ତା'ହେଲେ କଂଗ୍ରେସ ତା' ଇଚ୍ଛା ଅନୁସାରେ ସମର୍ଥନ ପ୍ରତ୍ୟାହାର କରିନେବ ଓ ସରକାର ଭାଙ୍ଗିଯିବ। ଏମାନଙ୍କ ଭିତରେ ଚିଦାମ୍ବରମ୍ ଓ କମଳ ନାଥ ଥିଲେ। ରାଜୀବ ଗାନ୍ଧିଙ୍କ ମତାମତ ସ୍ପଷ୍ଟ ନଥିଲା।

ବିଶ୍ୱନାଥ ପ୍ରତାପ ସିଂହ ଏ ବିଷୟରେ କିଛି କହୁ ନଥିଲେ। ତେବେ ଭାଜପାର କିଛି ଲୋକ କହୁଥିଲେ, ସମସ୍ତ ଦଳବଦଳ କରିଥିବା ସାଂସଦ ଅଯୋଗ୍ୟ ହୋଇଯାଆନ୍ତୁ, ତା'ହେଲେ ସରକାର ଭାଙ୍ଗିଯିବ।

ଲୋକସଭା ସଚିବାଳୟ କିରାଣୀ-ସୁଲଭ ମତାମତ ଦେଲା; ଏ ସମସ୍ତ ବିଚାର କମିଟିକୁ ପଠାଇ ଦିଆଯାଉ। ରବିରାୟ କାହାରି କଥା ଶୁଣିଲେ ନାହିଁ। ସମସ୍ତ ବାଦୀ-ପ୍ରତିବାଦୀଙ୍କ କଥା ଧୈର୍ଯ୍ୟର ସହ ଶୁଣିଲେ। କେବଳ ତାଙ୍କ ସଚିବ ହୃଷିକେଶ ପଣ୍ଡାଙ୍କୁ ବିଶ୍ୱାସକୁ ନେଲେ

ଲୋକସଭା ଅଧିବେଶନର ଶେଷ ଦିନରେ ରବିରାୟ ତାଙ୍କ ରାୟ ପଢ଼ିଲେ। ପ୍ରାୟ ୩୫ ପୃଷ୍ଠାର ରାୟରେ ତନ୍ନତନ୍ନ ବିଶ୍ଳେଷଣ ଥିଲା ପ୍ରତ୍ୟେକ ସାଂସଦ ବିଷୟରେ। ଆଠଜଣ ସଭ୍ୟଙ୍କୁ ଦଳବଦଳ ଆଇନର ବିରୁଦ୍ଧାଚରଣ କରିଥିବାର ଅସଭ୍ୟ ଘୋଷିତ କରାଗଲା।

ତା' ପରଦିନ ପ୍ରତ୍ୟେକ ସମ୍ବାଦପତ୍ରରେ ଏହାକୁ ସ୍ୱାଗତ କରାଗଲା। ଇଣ୍ଡିଆନ୍ ଏକ୍ସପ୍ରେସ୍ ପ୍ରଥମ ପୃଷ୍ଠାର ସମ୍ପାଦକୀୟ ଏହାକୁ ଭୂରିଭୂରି ପ୍ରଶଂସା କଲା। ଏହି ମକଦ୍ଦମା ହାଇକୋର୍ଟକୁ ଗଲା ଓ ରବିରାୟଙ୍କ ଆଦେଶ କାଏମ ରହିଲା।

କହିବା ବାହୁଲ୍ୟ, ଏହାପରେ ଜଣେ ବାଚସ୍ପତି ଦଳବଦଳ ଆଇନରେ ଗୋଟିଏ ଆଦେଶ ଦେଇଥିଲେ, ଯାହାକୁ ହାଇକୋର୍ଟ ଓ ସୁପ୍ରିମ୍‌କୋଟ ଖାରଜ କରିଦେଇଥିଲେ।

## (୪)

ସ୍ୱାଧୀନ ଭାରତରେ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟର ବିଚାରପତିଙ୍କ ସଂପର୍କରେ ଦୁର୍ନୀତି ଅଭିଯୋଗ ଆସିଲେ ତାଙ୍କୁ ବହିଷ୍କାର କରିବା ନିମନ୍ତେ ଯେଉଁ ଆଇନ ଅଛି, ତାହା ଏହିପରି। ଦୁର୍ନୀତି ଅଭିଯୋଗ ଆଣିବା ନିମନ୍ତେ ଅନ୍ତତଃ ଶହେଜଣ ସଦସ୍ୟ ଗୋଟିଏ ପ୍ରସ୍ତାବ ଆଣିବା ଦରକାର। ଏ ପ୍ରସ୍ତାବକୁ ବାଚସ୍ପତି ବିଚାର କରିବା ପରେ ଜଣେ ଅବସରପ୍ରାପ୍ତ ବିଚାରପତି ଓ ଦୁଇଜଣ ବିଚାରପତିଙ୍କୁ ନେଇ ଏକ ଅନୁସନ୍ଧାନ କମିଟି ଗଢ଼ାଯାଏ। କମିଟି ଏହାକୁ ବିଚାର କରିବା ପରେ ଯଦି ବିଚାରପତିଙ୍କୁ ବହିଷ୍କାର କରିବାପାଇଁ ସୁପାରିସ କରନ୍ତି, ତେବେ ଏହାକୁ ପାର୍ଲାମେଣ୍ଟର ଉଭୟ ଗୃହରେ ଅନୁମୋଦନ ହେବା ଆବଶ୍ୟକ।

ସ୍ୱାଧୀନତା ପରେ ଏପରି ଦୁଇଥର ଅଭିଯୋଗ ଆସିଥିଲା । ଗୋଟିଏ ରବିରାୟ ବାଚସ୍ପତି ଥିବା ସମୟରେ ଓ ଅନ୍ୟଟି ପୂର୍ବରୁ । ପୂର୍ବ ଥର ଯେଉଁ ଅଭିଯୋଗ ଆସିଥିଲା, ସେଥିରେ ବାଚସ୍ପତି କୌଣସି ସିଦ୍ଧାନ୍ତ ନ ନେଇ ଲୋକସଭାର କମିଟିକୁ ପଠାଇଦେଇଥିଲେ । କମିଟି କୋଣସି ସିଦ୍ଧାନ୍ତ ନେଇନଥିଲା । ଲୋକସଭାର ନିୟମାବଳୀ ଅନୁଯାୟୀ ସେହି ଲୋକସଭାର ସମୟସୀମା ଶେଷ ହେବା ପରେ ପ୍ରସ୍ତାବଟି ଆପେ ଆପେ ରଦ୍ଦ ହୋଇଗଲା ।

ବିଚାରପତିମାନଙ୍କର ସାମ୍ବିଧାନିକ ସୁରକ୍ଷା ନିମନ୍ତେ ଓ ସେମାନେ ଯେପରି କ୍ଷମତାସୀନ ରାଜନୀତି ଦଳର ଶରବ୍ୟ ନ ହୁଅନ୍ତି, ସେଥିପାଇଁ ଏପରି ନିୟମାବଳୀ ପ୍ରସ୍ତୁତ କରାଯାଇଅଛି । ସେଥିପାଇଁ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟର ବିଚାରପତିଙ୍କ ଦ୍ୱାରା ଗଠିତ କମିଟି ହିଁ ଅନୁସନ୍ଧାନ କରିବାର ଦାୟିତ୍ୱ ନେଇଥାଏ । ଏହାପରେ ଦୁଇ-ତୃତୀୟାଂଶ ସାଂସଦଙ୍କ ସମର୍ଥନ ଲାଭ କରିବା ଆବଶ୍ୟକ । ଅଭିଯୋଗ ଆଣିବା ପୂର୍ବରୁ ଅନ୍ତତଃ ଶହେ ଜଣ ସାଂସଦ ପ୍ରସ୍ତାବ ଦେବା ଦରକାର । ଏ ସବୁ ପରେ ରାଷ୍ଟ୍ରପତିଙ୍କର ସ୍ୱାଧୀନ ବିଚାରର ଅବକାଶ ମଧ୍ୟ ରହୁଅଛି ।

ସ୍ୱାଧୀନତା ପୂର୍ବରୁ ଏପରି ଆଇନ ନଥିଲା । ସେତେବେଳେ ପ୍ରିଭି କାଉନ୍‌ସିଲ୍ ଉଚ୍ଚ ନ୍ୟାୟାଳୟର ବିଚାରପତିଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରୁଥିଲେ । ଥରେ ଜଣେ ହାଇକୋର୍ଟର ବିଚାରପତିଙ୍କୁ ପ୍ରିଭି କାଉନ୍‌ସିଲ୍ ବହିଷ୍କାର କରିଥିଲେ ।

ରବିରାୟ ବାଚସ୍ପତି ଥିବା ସମୟରେ ଯେବେ ସୁପ୍ରିମ୍‌କୋର୍ଟର ଜଣେ ବିଚାରପତିଙ୍କ ବିରୁଦ୍ଧରେ ମହାଭିଯୋଗ ପ୍ରସ୍ତାବ ଆସିଲା, ସେ ପ୍ରଥମେ ତନ୍ନତନ୍ନ କରି ଅଭିଯୋଗଗୁଡ଼ିକ ଅନୁଧ୍ୟାନ କଲେ । ସମସ୍ତ ସାଂସଦଙ୍କ ଦସ୍ତଖତ ଯାଞ୍ଚ କଲେ । ଏହି ପ୍ରସ୍ତାବକୁ ସେ ଲୋକସଭାର ସଚିବାଳୟକୁ ପଠାଇଦେଲେ । ସଚିବାଳୟ ପୂର୍ବ ନଜିର ଦେଖାଇ କହିଲା ଯେ, ଏହାକୁ ଏକ ସଂସଦୀୟ କମିଟିକୁ ପଠାଇଦିଆଯାଉ ।

ଆଗରୁ କୁହାଯାଇଛି ଯେ ସଂସଦୀୟ ସ୍ୱାଧୀନତା ଦୃଷ୍ଟିରୁ ସଂସଦର ସଚିବାଳୟର କର୍ମଚାରୀମାନେ ମଧ୍ୟ ସରକାରୀ ନିୟମାବଳୀର ଊର୍ଦ୍ଧ୍ୱରେ । ତେଣୁ ଆଶା କରିବା କଥା ଯେ, ସଂସଦୀୟ କର୍ମଚାରୀମାନେ, ଅଧିକ ସ୍ୱାଧୀନ ହେବେ ଓ ନିରପେକ୍ଷ ମତାମତ ଦେବେ । ତେବେ ରବିରାୟ ଦେଖିଲେ ଯେ, ତତ୍କାଳୀନ ଲୋକସଭାର ମହାସଚିବ ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେଉନାହାନ୍ତି । ସେତେବେଳେ ଚନ୍ଦ୍ରଶେଖରଙ୍କ ପ୍ରଧାନମନ୍ତ୍ରୀତ୍ୱରେ ସରକାର । ସରକାର ଯେ କୌଣସି ଦିନ ଭାଙ୍ଗିଯିବ, ସେ କଥା ଲୋକସଭାର

କର୍ମଚାରୀମାନେ ଜାଣିଥିଲେ। ଲୋକସଭାରେ କୌଣସି ଦଳର ସଂଖ୍ୟାଗରିଷ୍ଠତା ନଥିଲା। କଂଗ୍ରେସ ଦଳର ସବୁଠୁ ବେଶି ସାଂସଦ ଥିଲେ। କଂଗ୍ରେସ ଦଳର କୌଣସି ସାଂସଦ ଏ ମହାଭିଯୋଗ ଦରଖାସ୍ତରେ ଦସ୍ତଖତ କରି ନଥିଲେ।

ଆଉଥରେ ରବିରାୟଙ୍କୁ ନିଜେ ସିଦ୍ଧାନ୍ତ ନେବାକୁ ପଡ଼ିଲା। ନିଜର ସଚିବ ହୃଷିକେଶ ପଣ୍ଡାଙ୍କ ବ୍ୟତୀତ ସେ ଆଉ କାହାକୁ ବିଶ୍ୱାସକୁ ନେଲେ ନାହିଁ। ଉଲ୍ଲେଖଯୋଗ୍ୟ ଯେ ମହାଭିଯୋଗ କୌଣସି ରାଜନୈତିକ ବା ଆଇନଗତ କଥା ନଥିଲା। ଅଡ଼ିଟ୍ ରିପୋଟରେ ଲେଖାଯାଇଥିଲା ଯେ, ସଂପୃକ୍ତ ବିଚାରପତି କିଛି ଜିନିଷ ଓ ଅର୍ଥ ତୋଷରପାତ କରିଥିଲେ। ପ୍ରାଥମିକ ପ୍ରମାଣ ସୁଦୃଢ଼ ଥିଲା। ରବିରାୟ ଅନୁସନ୍ଧାନ କରିବା ପାଇଁ ନିଷ୍ପତ୍ତି ନେଲେ। ବହୁ ବିଚାରପତି, ଆଇନଜ୍ଞ ଓ ଜୁରିଷ୍ଟମାନଙ୍କର ପରାମର୍ଶ ନେଲେ।

ସୁପ୍ରିମ୍‌କୋର୍ଟର କୌଣସି ବିଚାରପତିଙ୍କୁ କୌଣସି କମିଶନ ବା ଅନୁସନ୍ଧାନରେ ଅଂଶ ନେବା ପୂର୍ବରୁ ସୁପ୍ରିମ୍‌କୋର୍ଟର ମୁଖ୍ୟ ବିଚାରପତିଙ୍କ ପରାମର୍ଶ ଆବଶ୍ୟକ ହୁଏ। ସାଧାରଣତଃ, ମୌଖିକ ପରାମର୍ଶ ଯଥେଷ୍ଟ ହେବାର କଥା। କେବଳ କମିଶନ ଇତ୍ୟାଦିରେ ଲିଖିତ ପରାମର୍ଶ ଆବଶ୍ୟକ। ଏହି ପରମ୍ପରା ଅନୁଯାୟୀ ଯେହେତୁ, ମହାଭିଯୋଗର କମିଟି ନିର୍ଦ୍ଧାରଣର ଦାୟିତ୍ୱ ବାଚସ୍ପତିଙ୍କର, ତେଣୁ ରବିରାୟ ତତ୍କାଳୀନ ସୁପ୍ରିମ୍‌କୋର୍ଟର ମୁଖ୍ୟ ବିଚାରପତିଙ୍କ ପରାମର୍ଶ ନେଇ ଜଷ୍ଟିସ୍ ସାୱନ୍ତଙ୍କୁ ଅନୁସନ୍ଧାନ କମିଟିର ମୁଖ୍ୟ ରୂପେ ନିଯୁକ୍ତ କରିବାରକୁ ସ୍ଥିର କଲେ। ସେଦିନ ଲୋକସଭା ଅଧିବେଶନର ଶେଷ ଦିନ ଥାଏ।

ବାଚସ୍ପତିଙ୍କ ସଚିବଙ୍କ ବ୍ୟତୀତ ଆଉ କେହି ଏ ସିଦ୍ଧାନ୍ତ ବିଷୟରେ ଜାଣି ନଥାନ୍ତି। ସେଦିନ ଲୋକସଭା ଅଧିବେଶନର ଶେଷ ଦିନ ଥାଏ। ସେଦିନ ଯଦି ବାଚସ୍ପତିଙ୍କର ରାୟ ପ୍ରକାଶ ନ ପାଏ, ତେବେ ସମୁଦାୟ ମହାଭିଯୋଗ ନିଷ୍ଫଳ ହୋଇଯିବ। ଏହା ଭିତରେ କଂଗ୍ରେସ ଦଳରୁ ପି. ଚିଦାମ୍ବରମ୍, ସନ୍ତୋଷମୋହନ ଦେବ ଓ ଅନ୍ୟମାନେ ଆସି ଏ ପ୍ରସ୍ତାବକୁ ଗ୍ରହଣ ନ କରିବାକୁ ଚାପ ପକାଇସାରିଛନ୍ତି। ସେମାନେ ଏ କଥା ମଧ୍ୟ କହିଥାନ୍ତି ଯେ, ଯଦି ବାଚସ୍ପତି ଏ ମହାଭିଯୋଗ ପ୍ରସ୍ତାବ ଗ୍ରହଣ କରନ୍ତି, ତେବେ ତାଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ମଧ୍ୟ ଅଣାଯାଇପାରେ। ଏହା ସତ୍ୟ ଓ ସାଧୁତା ବିରୁଦ୍ଧରେ ଏକ ଉଲଗ୍ନ ଧମକ ଛଡ଼ା ଆଉ କିଛି ନୁହେଁ।

ସେଦିନ ଲୋକସଭାର ଶେଷ ଦିନରେ ପ୍ରାୟ ସାଢ଼େ ଆଠଟା ବେଳକୁ ଅନ୍ୟ ସବୁ କାମଦାମ ସରିଲା ପରେ ବାଚସ୍ପତି ରବିରାୟ ତାଙ୍କର ରାୟ ପଢ଼ିଲେ। ସାଂସଦମାନେ ଆଶା କରିଥିଲେ ବାଚସ୍ପତି ତାଙ୍କର ସଂକ୍ଷିପ୍ତ ଘୋଷଣା "ଲୋକସଭା

ଅଧିବେଶନ ସମାପ୍ତ ହେଲା" ମାତ୍ର ଘୋଷଣା କରିବେ; କିନ୍ତୁ ସେ ଯେବେ ମହାଭିଯୋଗ ପଢ଼ିବାକୁ ଆରମ୍ଭ କଲେ, ସମସ୍ତେ ଆଚମ୍ବିତ ହେଲେ। ଲୋକସଭାରେ ସ୍ତବ୍ଧ ନୀରବତା ଥିଲା। ଶେଷ ଆଡ଼କୁ ଯେବେ ରବିରାୟ କହିଲେ ଯେ, ସେ ଏକ ଅନୁସନ୍ଧାନ କମିଟି ଗଠନ କରିଛନ୍ତି, ସେବେ ଲୋକସଭାର ପି. ଚିଦାମ୍ବରମ୍, ସନ୍ତୋଷମୋହନ ଦେବ ଓ ଆଉ କେତେ ଜଣ ସାଂସଦ ଧମକ ଦେବା ଭଙ୍ଗୀରେ ବାଚସ୍ପତିଙ୍କ ଆଡ଼କୁ ଆଗେଇ ଆସିଲେ। ଅତ୍ୟନ୍ତ ନିଷ୍ଠାର ସହ ଓ ଆଦୌ ବିବ୍ରତ ନହୋଇ ବାଚସ୍ପତି ରବିରାୟ ତାଙ୍କର ଆଦେଶ ପଢ଼ିଦେଲେ।

ଅନେକ ସମୟରେ ବାଚସ୍ପତିମାନେ ତାଙ୍କ ଆଦେଶ ଲୋକସଭାରେ ସମସ୍ତଙ୍କ ସମ୍ମୁଖରେ ରଖନ୍ତି ନାହିଁ। ଏଠି ଅସାଧୁତାର ପ୍ରଶ୍ନ ଉଠୁଛି। ରବିରାୟ ସବୁ ଗୁରୁତ୍ୱପୂର୍ଣ୍ଣ ଆଦେଶ ଲୋକସଭାର ଗୃହରେ ସମସ୍ତଙ୍କ ଅବବୋଧ ଓ ବିଚାର ପାଇଁ ଉଚ୍ଚସ୍ୱରରେ କହି ଆସିଛନ୍ତି। ଏହା ତାଙ୍କ ସ୍ୱଚ୍ଛତା, ସାଧୁତା ଓ ସହୃଦୟତାର ପରିଚାୟକ। ଲୋକସଭାରେ ସେଦିନ କେତେକ ମୁଷ୍ଟିମେୟ କଂଗ୍ରେସ ସଭ୍ୟ ରବିରାୟଙ୍କୁ ଆକ୍ରମଣ କରିବାକୁ ଯାଉଥିଲେ। ଯଦି ବାଚସ୍ପତି ନିଜ ଆଦେଶ ପଢ଼ିବା ଶେଷ କରିପାରି ନଥାନ୍ତେ, ତେବେ ଲୋକସଭାର ନିୟମ ଓ ପରମ୍ପରା ଅନୁଯାୟୀ ସୁପ୍ରିମ୍‌କୋର୍ଟର ଜଣେ ବିଚାରପତିଙ୍କ ବିରୁଦ୍ଧରେ ବର୍ତ୍ତମାନ ସୁଦ୍ଧା ପ୍ରଥମ ଓ ଶେଷ ମହାଭିଯୋଗ ବିଚାରକୁ ଗୃହୀତ ହୋଇନଥାନ୍ତା। ତେବେ ଅଧିକାଂଶ ସାଂସଦଙ୍କର ବାଚସ୍ପତିଙ୍କ ପ୍ରତି ଭକ୍ତି ହେତୁ ଏ ଆକ୍ରମଣ ହୋଇ ନଥିଲା। ଏହି ନିଷ୍ପତ୍ତି ବିରୁଦ୍ଧରେ ବିବିଧାତ୍ମକ ସମ୍ବାଦ ବାହାରିଲା। କେହି କେହି ଏହାକୁ ସମାଲୋଚନା କଲେ। ଏପରିକି ସୁପ୍ରିମ୍‌କୋର୍ଟର ମୁଖ୍ୟ ବିଚାରପତି ଫୋନ୍ କରି ରବିରାୟଙ୍କୁ କଠୋର ଭାଷାରେ ସମାଲୋଚନା କଲେ।

ରବିରାୟଙ୍କ ନିଷ୍ପତ୍ତିର ସାଧୁତା ଇତିହାସ ବହନ କରିଅଛି। ଅଳ୍ପଦିନ ପରେ ନୂଆ ଲୋକସଭା ଆସିଲା। ରାଜନୈତିକ ଦେଣନେଣରେ ମହାଭିଯୋଗ ପ୍ରସ୍ତାବ ସଂସଦ ଦ୍ୱାରା ଅନୁମୋଦିତ ହେବାର ସମ୍ଭାବନା କ୍ଷୀଣ ଥିଲା। କିନ୍ତୁ ଏତିକି ସତ୍ୟ, ରବିରାୟଙ୍କ ଦ୍ୱାରା ନିଯୁକ୍ତ କମିଟି ସଂପୃକ୍ତ ସୁପ୍ରିମ୍‌କୋର୍ଟ ବିଚାରପତିଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲା। ପରେ ସଂପୃକ୍ତ ବିଚାରପତି ଇସ୍ତଫା ଦେବେ ବୋଲି କହିଲେ। ସେତେବେଳେ, ରବିରାୟ ବାଚସ୍ପତି ନଥିଲେ। ସେ ଇସ୍ତଫା ଦେଲେ ନାହିଁ, କୌଣସି ମକଦ୍ଦମା ବିଚାର କଲେ ନାହିଁ, ତାଙ୍କୁ କୌଣସି ମକଦ୍ଦମାର ବିଚାର କରିବାକୁ ଦିଆଗଲା ନାହିଁ। ଏସବୁ କରାଗଲା ଏଇଥିପାଇଁ ଯେ, ବିଚାରପତିଙ୍କୁ ଏପରି ହୀନାବସ୍ଥା କରାଇବା ଭାରତୀୟ ବିଚାର ପଦ୍ଧତି ଉପରେ ଶକ୍ତ କୁଠାରାଘାତ କରିଥାନ୍ତା।

ତେବେ ରବିରାୟଙ୍କ ସିଦ୍ଧାନ୍ତ ସତ୍ୟ ପ୍ରମାଣିତ ହେଲା। ଦୋଷୀକୁ ଦୋଷୀ ବୋଲି ପ୍ରମାଣିତ କରାଗଲା। ଉଚ୍ଚ ନ୍ୟାୟାଳୟର ଦୁର୍ନୀତି ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିଥିବାର ପ୍ରଥମ ଓ ଶେଷ ବାଚସ୍ପତି ରବିରାୟ।

(୫)

ରବିରାୟ ଖୁବ୍ କମ୍ ଦିନ ବାଚସ୍ପତି ଥିଲେ। ଦଳଭଙ୍ଗା ଓ କଳୁଷିତ ରାଜନୀତି ହେତୁ ଲୋକସଭା ଭାଙ୍ଗିଗଲା, ନୂଆ ନିର୍ବାଚନ ହେଲା, ନୂଆ ବାଚସ୍ପତି ହେଲେ। ପ୍ରାୟ ଦେଢ଼ବର୍ଷର ବାଚସ୍ପତି କାଳରେ ସେ କମନ୍‌ୱେଲ୍‌ଥ ପାର୍ଲାମେଣ୍ଟାରୀ ଆସୋସିଏସନର ସଭାପତି ରହିଅଛନ୍ତି। ବିଭିନ୍ନ ସାଂସଦ ଦଳଙ୍କ ନେତୃତ୍ୱ ନେଇ ସେ ବିଶ୍ୱରେ ଆପଣା ସ୍ଥାନ ସ୍ୱତନ୍ତ୍ର ଭାବରେ ଲିପିବଦ୍ଧ କରିଅଛନ୍ତି। ଏପରି ଭ୍ରମଣ ସମୟରେ, ଅନ୍ୟମାନେ ମଉଜ ମଜଲିସ୍‌ରେ ବ୍ୟସ୍ତ ଥିବାବେଳେ ସେ ଦେଶପାଇଁ ଅନେକ କାମ କରିଅଛନ୍ତି। କଲମ୍ବିଆର ରାଜଧାନୀ ବୋଗୋଟାଠାରେ ସମୁଦାୟ ସାଂସଦ ଠିଆ ହୋଇ ତାଙ୍କ ପାଇଁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଥିଲେ। ଉରୁଗୁଏର ପୁନ୍ତା-ଦେଲ-ଏସ୍ତେଠାରେ ସେ ଆନ୍ତର୍ଜାତିକ ସାଂସଦ ସଂଗଠନରେ ଭାରତୀୟମାନଙ୍କର ପ୍ରତିନିଧିତ୍ୱ କରିଥିଲେ।

ରବିରାୟ ଖୁବ୍ କମ୍‌ଦିନ ବାଚସ୍ପତି ଥିଲେ। ଏ ସବୁ ଆନ୍ତର୍ଜାତିକ କାର୍ଯ୍ୟକଳାପର କଥା ନିଆରା। କିନ୍ତୁ ଭାରତରେ ସାମ୍ବିଧାନିକ ସ୍ୱାତନ୍ତ୍ର୍ୟ, ସାର୍ବଜନୀନ ସାଧୁତା ଓ ସଂସଦୀୟ ମାନବିକତାର ଯେଉଁ ଉଦାହରଣ ଉପରେ ନିଆଗଲା, ତାହା ଇତିହାସ ତାଙ୍କୁ ଏକ ଅନନ୍ୟ ବାଚସ୍ପତି ଭାବରେ ମନେରଖିବ। ନିର୍ଭୟ ଭାବରେ ଦୁର୍ନୀତି ବିରୁଦ୍ଧରେ ଏକା ଏକା ସେ ଯେପରି ଲଢ଼େଇ କରିଛନ୍ତି, ସେପରି ଆଉ କେହି ବୋଧେ କରିନାହାନ୍ତି।

(ସଂଗୃହୀତ ଲେଖା)

▮▮▮

# ମୁଁ ରବି ରାୟଙ୍କୁ ଯେପରି ଜାଣେ

ଡ. ହୁସେନ ରବି ଗାନ୍ଧୀ

ରବିରାୟ ଓଡ଼ିଶାର ଜନଜୀବନରେ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଛନ୍ତି। ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାରେ ଯେଉଁ କତିପୟ ବ୍ୟକ୍ତି ଇତିହାସ ସୃଷ୍ଟି କରିପାରିବାରେ ସକ୍ଷମ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ରବି ରାୟ ଅନ୍ୟତମ। ସେ ବ୍ୟକ୍ତି ନୁହଁନ୍ତି ଗୋଟିଏ ଅନୁଷ୍ଠାନ। ସବୁଦିନ ପାଇଁ ଓଡ଼ିଶା ତାଙ୍କୁ ନେଇ ଗର୍ବ କରିପାରିବ। ଆଜି କ୍ରମଶଃ ହଜିଯାଉଥିବା ମୂଲ୍ୟବୋଧ ଓ ସାମାଜିକ ସ୍ଖଳନକୁ ଦେଖି ମୋ ପରି ବ୍ୟକ୍ତିମାନେ ଦୁଃଖିତ ହେଉଥିବା ବେଳେ, ରବିରାୟଙ୍କ ପରି କତିପୟ ବିପ୍ଳବୀ ବ୍ୟକ୍ତିତ୍ୱଙ୍କୁ ସ୍ମରଣ କରି, ଏଇ ସ୍ଖଳନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଆମ ମନରେ ପ୍ରେରଣା ଉଦ୍ରେକ ହୁଏ। ସେ କେବଳ ଓଡ଼ିଶାର ପ୍ରଥମ ବ୍ୟକ୍ତି ଯେ କି ଲୋକସଭାରେ ବାଚସ୍ପତି ପଦ ମଣ୍ଡନ କରି ଓଡ଼ିଶାକୁ ଗୌରବାନ୍ୱିତ କରି ନଥିଲେ, ଆହୁରି ଅନେକ କ୍ଷେତ୍ରରେ ସେ ଓଡ଼ିଶା ପାଇଁ ସୁନାମ ଆଣି ଦେଇଥିଲେ ଏବଂ ସେ ଓଡ଼ିଆ ନବଯୁବକମାନଙ୍କର ବୈପ୍ଳବିକ ପ୍ରେରଣାର ଉତ୍ସ ହୋଇ ବିଗତ ଅର୍ଦ୍ଧଶତାବ୍ଦୀ ଧରି ରହି ଆସିଛନ୍ତି। ଗଣତାନ୍ତ୍ରିକ ସମାଜବାଦ, ଧର୍ମନିରପେକ୍ଷ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା କ୍ଷେତ୍ରରେ ତାଙ୍କର କ୍ରାନ୍ତିକାରୀ ଭୂମିକା ଓଡ଼ିଶା ଇତିହାସର ଏକ ସ୍ୱର୍ଣ୍ଣିମ ଅଧ୍ୟାୟ।

ଏହି ଐତିହାସିକ ବ୍ୟକ୍ତିତ୍ୱ ଶ୍ରୀ ରବି ରାୟଙ୍କ ସହିତ ମୋର ପ୍ରଥମ ପରିଚୟ ୧୯୭୦ ମସିହାର ଆଦ୍ୟଭାଗରେ ଘଟିଥିଲା। ଯେତେବେଳେ ମୁଁ ସମ୍ବଲପୁରସ୍ଥ ଗଙ୍ଗାଧର ମେହେର କଲେଜ ଛାତ୍ର ସଂସଦର ସଭାପତି ଭାବେ କାର୍ଯ୍ୟ ନିର୍ବାହ କରୁଥାଏ। ସେତେବେଳେ ଶ୍ରୀଯୁକ୍ତ ରାୟ ରାଜ୍ୟସଭା ସଦସ୍ୟ ଥାଆନ୍ତି। ତାଙ୍କର ଧର୍ମପତ୍ନୀ ଡାକ୍ତର ସରସ୍ୱତୀ ସ୍ୱାଇଁ ବୁର୍ଲା ମେଡ଼ିକାଲ କଲେଜର ଜଣେ ପ୍ରାଧ୍ୟାପିକା ଭାବେ କାର୍ଯ୍ୟରତ ଥାଆନ୍ତି। ମୁଁ ଖବର ପାଇଲି ରବି ରାୟ ତାଙ୍କ ପତ୍ନୀଙ୍କ ନିକଟକୁ ବୁର୍ଲା ଆସିଛନ୍ତି, ସେତେବେଳେ ମୋ ତଳ ବ୍ୟାଚ୍‌ରେ ପଢୁଥିବା ଶ୍ରୀ ଅଶ୍ୱିନୀ ମିଶ୍ର (ବର୍ତ୍ତମାନ ଓଡ଼ିଶା ହାଇକୋର୍ଟର ଅନ୍ୟତମ ବରିଷ୍ଠ ଆଇନଜୀବୀ) ସମାଜବାଦୀ ଯୁବ ଜନସଭାର ସମର୍ଥକ ଥାଆନ୍ତି। ସମ୍ବଲପୁରରେ ଏହି ସଂଗଠନର କୌଣସି ଅସ୍ତିତ୍ୱ ନଥିବା ହେତୁ, ସେ ମୋତେ

ସମର୍ଥନ କରୁଥାନ୍ତି, କାରଣ ମୁଁ ଷ୍ଟୁଡ଼େଣ୍ଟ ଫେଡ଼େରେସନ (ମାର୍କ୍ସବାଦୀ-ଲେନିନ୍‌ବାଦୀ) ଚିନ୍ତାଧାରାରେ ଅନୁପ୍ରାଣିତ ଥିଲି। ସମାଜବାଦୀ ଯୁବ ଜନସଭା ଲୋହିଆବାଦୀ ବିଘ୍ନର ଧାରାକୁ ସମର୍ଥନ କରୁଥାଏ। ତେଣୁ ଦକ୍ଷିଣପନ୍ଥୀ ଛାତ୍ର ସଂଗଠନମାନଙ୍କ ଅପେକ୍ଷା, ସମାଜବାଦୀ ଯୁବ ଜନସଭା ବିଘ୍ନର ଧାରାରେ ଷ୍ଟୁଡ଼େଣ୍ଟ ଫେଡ଼େରେସନ ଚିନ୍ତାର ନିକଟବର୍ତ୍ତୀ ଥିଲା। ଶ୍ରୀ ଅଶ୍ୱିନୀ ମିଶ୍ର ସେତେବେଳେ ବୁର୍ଲାରେ ରହୁଥିଲେ, କାରଣ ତାଙ୍କ ପିତା ବୁର୍ଲା ଇଂଜିନିୟରିଂ କଲେଜରେ କାର୍ଯ୍ୟ କରୁଥିଲେ। ମୁଁ ଅଶ୍ୱିନୀ ମିଶ୍ରଙ୍କ ନିକଟରେ ସମ୍ବଲପୁରରୁ ଯାଇ ବୁର୍ଲାରେ ପହଞ୍ଚିଲି। ଦୀନେଶ ଷଡ଼ଙ୍ଗୀ ନାମକ ସମାଜବାଦୀ ଯୁବ ଜନସଭାର ଜନୈକ ଛାତ୍ର ବୁର୍ଲା ମେଡ଼ିକାଲ କଲେଜର ଛାତ୍ର ଥାନ୍ତି, ତାଙ୍କ ଘର ସିଂହଭୂମି ଜିଲ୍ଲାରେ (ଝାଡ଼ଖଣ୍ଡ)। ପରେ ସେ ଝାଡ଼ଖଣ୍ଡର ମନ୍ତ୍ରୀ ହୋଇ ଥିଲେ। ସମ୍ବଲପୁରରୁ ବୁର୍ଲା ସାଇକେଲରେ ୩୦/୪୦ ମିନିଟ୍ ବାଟ। ଅଶ୍ୱିନୀ ମିଶ୍ରଙ୍କ ସହିତ ଡାକ୍ତର ଦୀନେଶ ଷଡ଼ଙ୍ଗୀଙ୍କୁ ସାଙ୍ଗରେ ଧରି ଡାକ୍ତର ସରସ୍ୱତୀ ସ୍ୱାଇଁଙ୍କ ସରକାରୀ ବାସଭବନରେ ପହଞ୍ଚି ଶ୍ରୀ ରବି ରାୟଙ୍କୁ ଜୀବନରେ ପ୍ରଥମ ଥରପାଇଁ ସାକ୍ଷାତ କରିବାର ସୁଯୋଗ ପାଇଥିଲି। ସେଦିନ ଥିଲା ଫେବୃୟାରୀ ମାସର ଏକ ଶିତୁଆ ଅପରାହ୍ନ। କିନ୍ତୁ ଶ୍ରୀଯୁକ୍ତ ରାୟଙ୍କୁ ସାକ୍ଷାତ କରି, ତାଙ୍କ ସହିତ ଦୀର୍ଘ ଏକ ଘଣ୍ଟା କାଳ ଆଲୋଚନା ପରେ ଶୀତର ସନ୍ଧ୍ୟା ମାଡ଼ିଆସି ଥିଲେ ବି ତାହା ମୋତେ ସ୍ପର୍ଶ କରିବା ପାଇଁ ସାହସ ଜୁଟାଇ ପାରି ନଥିଲା, କାରଣ ଶ୍ରୀଯୁକ୍ତ ରାୟଙ୍କର ବୈପ୍ଳବିକ ଆଲୋଚନା ମୋତେ ଯଥେଷ୍ଟ ଉତାପ ପ୍ରଦାନ କରିଥିଲା। ମୁଁ ତାଙ୍କୁ ତାଙ୍କ ବୁର୍ଲା ରହଣି କାଳ ମଧ୍ୟରେ କିଛି ସମୟ ଗଙ୍ଗାଧର ମେହେର ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେବାପାଇଁ ସାମାନ୍ୟ ସମୟ ଦେବା ନିମନ୍ତେ ଅନୁରୋଧ କରିଥିଲି, ଯାହାକୁ ସେ ସହଜେ ସ୍ୱୀକାର କରିଥିଲେ।

ଦୁଇଦିନ ପରେ ତାଙ୍କର ଭୁବନେଶ୍ୱର ଫେରିବାର କାର୍ଯ୍ୟକ୍ରମ ଥାଏ ଏବଂ ସେ ସଡ଼କ ପଥରେ ଭୁବନେଶ୍ୱର ଫେରିବା ବେଳେ ବାଟରେ ସମ୍ବଲପୁରଠାରେ କିଛି ସମୟ ଗଙ୍ଗାଧର ମେହେର ମହାବିଦ୍ୟାଳୟ ଯିବାପାଇଁ ସମୟ ପ୍ରଦାନ କରିଥିଲେ। ଏହାର ଦୁଇଦିନ ପରେ ସେ ଗଙ୍ଗାଧର ମେହେର ମହାବିଦ୍ୟାଳୟକୁ ଆସିଥିଲେ। ସେତେବେଳେ ଗଙ୍ଗାଧର ମେହେର ମହାବିଦ୍ୟାଳୟର ଅଧ୍ୟକ୍ଷ ଥାଆନ୍ତି, ପ୍ରଫେସର ଡକ୍ଟର ମହେନ୍ଦ୍ର କୁମାର ରାଉତ। ଡକ୍ଟର ରାଉତ ପରବର୍ତ୍ତୀ ସମୟରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଓ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ। ସେ ଯେତେବେଳେ ଜାଣିଲେ ଶ୍ରୀ ରବି ରାୟ ଆମ କଲେଜକୁ ଆସି ଛାତ୍ରଛାତ୍ରୀଙ୍କୁ ଉଦ୍‌ବୋଧ ଦେବାପାଇଁ ସମ୍ମତି ପ୍ରଦାନ

କରିଛନ୍ତି। ସେତେବେଳେ ସେ ଖୁବ୍ ଆନନ୍ଦିତ ହୋଇଥିଲେ ଏବଂ ତାଙ୍କର ସ୍ୱାଗତ ପାଇଁ ଛାତ୍ରସଂସଦ ସହିତ ସବୁପ୍ରକାର ସହଯୋଗ ପ୍ରଦାନ କରିଥିଲେ। ଏ ଘଟଣାର ଠିକ୍ ଦୁଇଦିନ ପରେ ଶ୍ରୀ ରବି ରାୟ ପୂର୍ବ ନିର୍ଦ୍ଧାରିତ ସମୟ ଅର୍ଥାତ୍ ପୂର୍ବାହ୍ନ ୧୧ ଘଟିକା ସମୟରେ ଆମ କଲେଜର ମୁଖ୍ୟ ଫାଟକରେ ନିଜ କାରରେ ଆସି ପ୍ରବେଶ କରିଥିଲେ। ଅଧକ୍ଷ ଡକ୍ଟର ରାଉତଙ୍କ ସମେତ ଆମ ଛାତ୍ରସଂସଦର ମୁଖ୍ୟ ଉପଦେଷ୍ଟା ପ୍ରଫେସର ଆଲତାପ୍ ହୁସେନ (ଇତିହାସ ପ୍ରଫେସର) ଓ ସହକାରୀ ଉପଦେଷ୍ଟା ଡକ୍ଟର ଗିରିଜା ଆଚ୍ଚର୍ଯ୍ୟ (ବାଣିଜ୍ୟ) ଡକ୍ଟର ଧରଣୀଧର ଜେନା (ଅର୍ଥନୀତି) ଇତ୍ୟାଦି ପୁଷ୍ପଗୁଚ୍ଛ ନେଇ ମୁଖ୍ୟ ଫାଟକ ପାଖରେ ଉପସ୍ଥିତ ଥିଲେ। ଆମ ଛାତ୍ର ସଂସଦର ସମସ୍ତ କର୍ମକର୍ତ୍ତା ଓ ଶ୍ରେଣୀ ପ୍ରତିନିଧିମାନେ ପୁଷ୍ପଗୁଚ୍ଛ ଦେଇ ଶ୍ରୀଯୁକ୍ତ ରାୟଙ୍କୁ ଉଚ୍ଛ୍ୱାସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ, ଯାହା ତାଙ୍କୁ ବହୁ ଆନନ୍ଦ ପ୍ରଦାନ କରିଥିଲା। ଏହା ସେ ନିଜ ବକ୍ତବ୍ୟରେ ମଧ ବ୍ୟକ୍ତ କରିଥିଲେ। କଲେଜର ମୁଖ୍ୟ ହଲ୍ ଶ୍ରୀ ରବି ରାୟଙ୍କର ଉଦ୍‌ବୋଧନୀ ସଭା ଆରମ୍ଭ ହୋଇଥିଲା। ମୁଁ ଏଥିରେ ସଭାପତିତ୍ୱ କରିଥିଲି। ସାଧାରଣ ସମ୍ପାଦକ ସ୍ୱାଗତ ଅଭିଭାଷଣ ଦେଇଥିଲେ। ଏହାପରେ କାର୍ଯ୍ୟକ୍ରମ ବାହାରକୁ ଯାଇ ଅଧକ୍ଷ ଡକ୍ଟର ମହେନ୍ଦ୍ର ରାଉତ ନିଜେ ଉଠି ଶ୍ରୀଯୁକ୍ତ ରାୟଙ୍କର ବିସ୍ତୃତ ପରିଚୟ ପ୍ରଦାନ କରିଥିଲେ। ସେତେବେଳେ ଶ୍ରୀଯୁକ୍ତ ରାୟ ଓଡ଼ିଶାର ଏକ ପ୍ରମୁଖ ଗଣ୍ୟମାନ୍ୟ ବ୍ୟକ୍ତି ହୋଇଥିଲେ ହେଁ, ସମ୍ବଲପୁରର ଲୋକମାନେ ତାଙ୍କୁ ସେତେଟା ଜାଣିନଥିଲେ। ଏହି ସଭାରେ ତାଙ୍କର ଓଜସ୍ୱିନୀ ବକ୍ତୃତାରେ ସେ ଛାତ୍ରଛାତ୍ରୀମାନଙ୍କ ସହିତ କଲେଜର ସମସ୍ତ ଅଧାପକ, ଅଧାପିକା ଓ ଉପସ୍ଥିତ ବ୍ୟକ୍ତିମାନଙ୍କୁ ଚମକୃତ କରି ଦେଇଥିଲେ। ଏହି ଛାତ୍ର ସଭାକୁ ଆମ ଛାତ୍ର ସଂସଦ ତରଫରୁ ସମ୍ବଲପୁର ସହରର ବହୁ ବୁଦ୍ଧିଜୀବୀ, ଆଇନଜୀବୀ, ସାମ୍ବାଦିକ, ନିର୍ବାଚିତ ପୌରସଭାର କାଉନ୍‌ସିଲର୍ ଓ ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା। ସମସ୍ତଙ୍କୁ ଶ୍ରୀଯୁକ୍ତ ରବିରାୟଙ୍କ ଯାଦୁକରୀ ଭାଷଣ ଏଭଳି ପ୍ରଭାବିତ କରିଥିଲା ଯେ ବହୁ ବିଶିଷ୍ଟ ବ୍ୟକ୍ତି ଓ ଅଧାପକ ଅଧାପିକାମାନେ ଦଣ୍ଡାୟମାନ ହୋଇ ଉଚ୍ଛ୍ୱସିତ କରତାଳି ଦେଇ ଶ୍ରୀଯୁକ୍ତ ରାୟଙ୍କୁ ସମ୍ମାନ ପ୍ରଦାନ କରିଥିଲେ।

ଏହି ସଭାରେ ନିଜ ବକ୍ତବ୍ୟରେ ଶ୍ରୀଯୁକ୍ତ ରାୟ ପ୍ରକୃତ ଗାନ୍ଧିବାଦ ହିଁ ହେଉଛି ସମାଜବାଦୀ ଗଣତନ୍ତ୍ର, ଯାହା ଗାନ୍ଧିଜୀଙ୍କର ପଟ୍ଟଶିଷ୍ୟ ଡକ୍ଟର ରାମମନୋହର ଲୋହିଆ ନିଜର ଜୀବନକାଳ ମଧରେ ବ୍ୟାଖ୍ୟା କରି ଯାଇଛନ୍ତି ବୋଲି ଯୁକ୍ତି ଦେଇ କହିଥିଲେ। ତେଣୁ କଂଗ୍ରେସର ସମାଜବାଦୀ ଗଣତନ୍ତ୍ର ଓ ଲୋହିଆଙ୍କର ସମାଜବାଦୀ ଗଣତନ୍ତ୍ର ଭିତରେ ପ୍ରଭେଦ ରହିଅଛି।

ଲୋହିଆ ଗାନ୍ଧିଜୀଙ୍କର ବିଚାରଧାରାକୁ ପ୍ରାଧାନ୍ୟ ଦେଇ ଗ୍ରାମ ସ୍ୱରାଜ୍ୟର କଥା କହୁଥିବାବେଳେ କଂଗ୍ରେସ ନେହେରୁଙ୍କ ସମାଜବାଦକୁ ଗୁରୁତ୍ୱ ଦେଇ ଦେଶୀ-ବିଦେଶୀ ପୁଞ୍ଜିପତିମାନଙ୍କୁ ପ୍ରୋତ୍ସାହିତ କରି ସମାଜବାଦ ଶବ୍ଦ ପ୍ରତି କପଟ ଆଚରଣ ପ୍ରଦର୍ଶନ କରୁଛି ବୋଲି ଅନେକ ଉଦାହରଣ ଦେଇ ଯୁକ୍ତି କରିଥିଲେ। ମୁଁ ମୋର ସଭାପତି ଅଭିଭାଷଣରେ ଉଭୟ ଡକ୍ଟର ଲୋହିଆ ଓ ନେହେରୁଙ୍କ ଚିନ୍ତାଧାରାରେ ତ୍ରୁଟି ରହିଥିବା କହି କେବଳ ଶ୍ରେଣୀ ସଂଗ୍ରାମ ମାଧ୍ୟମରେ ଭାରତର ଦରିଦ୍ର ଜନସାଧାରଣ ନିଜର ଅଧିକାର ସାବ୍ୟସ୍ତ କରିପାରିବେ ବୋଲି ଦର୍ଶାଇ ଥିଲି ଏବଂ ଆଗାମୀର ଇତିହାସ ଏ କଥାର ସାକ୍ଷ୍ୟ ଦେବ ବୋଲି ମୁଁ ଦୃଢ଼ଭାବେ ଦର୍ଶାଇଥିଲି। ଶ୍ରୀଯୁକ୍ତ ରାୟ ସ୍ମିତ ହସି ଡାକବାଜି ଯନ୍ତ୍ର ପାଖରେ ଠିଆହୋଇ ହଠାତ୍ କହିଥିଲେ – ହଁ ଆଗାମୀର ଇତିହାସ ସାକ୍ଷ୍ୟଦେବ, ଲୋହିଆଙ୍କର ଗାନ୍ଧୀବାଦ ତର୍ଜମା ଓ ସାମ୍ୟବାଦୀ ବନ୍ଧୁମାନଙ୍କର ମାର୍କ୍ସବାଦର ତର୍ଜମା ଭିତରୁ କେଉଁଟା ଠିକ୍, ତାହା କହିବ। ଆଜି ୪୫ ବର୍ଷ ପରେ ଶ୍ରୀଯୁକ୍ତ ରାୟଙ୍କର ଏହି କଥାପଦକ ମୋର ଏବେ ବି ଅକ୍ଷରେ ଅକ୍ଷରେ ମନେଅଛି। କିନ୍ତୁ ୧୯୯୧ରେ ତତ୍କାଳୀନ କେନ୍ଦ୍ର ଅର୍ଥମନ୍ତ୍ରୀ ସର୍ଦ୍ଦାର ମନମୋହନ ସିଂହ ଉଭୟ ସିଦ୍ଧାନ୍ତ ଭୁଲ୍ ବୋଲି ଘୋଷଣା କରି ଉଦାରୀକରଣ ଅର୍ଥନୀତିକୁ ଗ୍ରହଣ କରିବାପାଇଁ ସେ ସମୟର ପ୍ରଧାନମନ୍ତ୍ରୀ ସ୍ୱର୍ଗତ ପି.ଭି. ନରସିଂହ ରାଓଙ୍କୁ ରାଜି କରାଇ ପାରିଥିଲେ। ଫଳରେ କ୍ରମଶଃ କ୍ରମଶଃ ଭାରତବର୍ଷ ବିଦେଶୀ ପୁଞ୍ଜି ଓ ସଂସ୍କୃତିର ଏକ ଉପନିବେଶ ହେବାକୁ ଲାଗିଲା ଯାହାକି ବର୍ତ୍ତମାନ ପର୍ଯ୍ୟନ୍ତ ଅବ୍ୟାହତ ଅଛି।

ଏହି ତଥାକଥିତ ଉଦାରୀକରଣ ଏବଂ ସାଂସ୍କୃତିକ, ଆର୍ଥିକ ସାମ୍ରାଜ୍ୟବାଦ ବିରୁଦ୍ଧରେ ଭାରତରେ ଯେଉଁ ସଂଘର୍ଷ ଧରିଛି, ସେହି ସଂଘର୍ଷ ପାଇଁ ଏବେ ବି ଗାନ୍ଧି, ମାର୍କ୍ସ ଓ ଲୋହିଆଙ୍କର ଦର୍ଶନ ପ୍ରାସଙ୍ଗିକ ଓ ବିଜ୍ଞାନସମ୍ମତ, ଏଥିରେ ସନ୍ଦେହ ନାହିଁ। ଏହାପରେ ଶ୍ରୀଯୁକ୍ତ ରାୟଙ୍କ ସହିତ ମୋର ସଂପର୍କ ଘନିଷ୍ଠରୁ ଘନିଷ୍ଠତର ହୋଇଥିଲା, ଯାହା ଏବେ ବି ଅବ୍ୟାହତ ରହିଛି। ମୁଁ ୧୯୮୭ ନଭେମ୍ବରରେ ସ୍ୱର୍ଗତ ଭି.ପି. ସିଂହଙ୍କ ନେତୃତ୍ୱରେ ଗଠିତ ଜନମୋର୍ଚ୍ଚା ଦଳର ଓଡ଼ିଶା ରାଜ୍ୟ ଯୁବ ସଂଗଠନ 'ଯୁବ ଜନମୋର୍ଚ୍ଚା'ର ଆବାହକ ପଦ ପ୍ରାପ୍ତ ହୋଇଥିଲି। ଓଡ଼ିଶା ଜନମୋର୍ଚ୍ଚାର ଆବାହକ ପୂର୍ବତନ ମନ୍ତ୍ରୀ, ଶ୍ରୀ ଭଜମନ ବେହେରା, ପୂର୍ବତନ ସାଂସଦ ଶ୍ରୀ ଅନାଦି ଦାସ, ସ୍ୱର୍ଗତ ବାଙ୍କବିହାରୀ ଦାସ, ଶ୍ରୀଯୁକ୍ତ ତ୍ରିଲୋଚନ କାନୁନ୍‌ଗୋ, ବରିଷ୍ଠ ସାମ୍ବାଦିକ ଶ୍ରୀ ରବି ଦାସ, ଶ୍ରୀଯୁକ୍ତ ପଞ୍ଚାନନ କାନୁନ୍‌ଗୋ, ସ୍ୱର୍ଗତା ଶାନ୍ତି ଦାସ, ଶ୍ରୀ ସଂଜୀବ ପାଇକରାଏ, ଶ୍ରୀ ଦେବାଶିଷ ନାୟକ, ଶ୍ରୀ ସଂଜୀବ ସାହୁ, ଶ୍ରୀ ଗୌତମ ରାୟ ଇତ୍ୟାଦିଙ୍କ ସହ ଶ୍ରୀ

ରବି ରାୟ ଓ ସମାଜର ତତ୍କାଳୀନ ସମ୍ପାଦକ ଡକ୍ଟର ରାଧାନାଥ ରଥ ଘନିଷ୍ଠ ସମ୍ପର୍କ ରଖି ଶ୍ରୀ ଭି.ପି. ସିଂହଙ୍କର ଦୁର୍ନୀତି ବିରୋଧୀ ବାର୍ତ୍ତାକୁ ଓଡ଼ିଶାର ପୁରପଲ୍ଲୀରେ ପହଞ୍ଚାଇବା ପାଇଁ ମୁଁ ଯତ୍‌ପରନାସ୍ତି ଚେଷ୍ଟା କରୁଥାଏଁ। ୧୯୮୮ରେ ଜନମୋର୍ଚ୍ଚା, ଲୋକଦଳ ଓ ଜନତା ପାର୍ଟିର ମିଶ୍ରଣରେ ବାଙ୍ଗାଲୋରଠାରେ ଜନତା ଦଳ ଗଠିତ ହୋଇଥିଲା। ଜନମୋର୍ଚ୍ଚାର ସ୍ୱଳ୍ପକାଳୀନ କାର୍ଯ୍ୟକ୍ରମ ୧୯୯୦ର ସାଧାରଣ ନିର୍ବାଚନରେ ପ୍ରତିଫଳିତ ହୋଇଥିଲା ଏବଂ ଶ୍ରୀ ବିଜୁ ପଟ୍ଟନାୟକ ବିପୁଳ ସଂଖ୍ୟାରେ ଜୟଯୁକ୍ତ ହୋଇ ଓଡ଼ିଶାରେ ଜନତାଦଳର ସରକାର ଗଠନ କରିଥିଲେ। ଇଂରାଜୀରେ କଥାଟିଏ ଅଛି : ବିପ୍ଲବ ପ୍ରଥମେ ନିଜର ସନ୍ତାନଙ୍କୁ ହିଁ ହତ୍ୟା କରିଥାଏ। ଏହି କ୍ଷେତ୍ରରେ ଏହା ସତ୍ୟ ବୋଲି ପ୍ରମାଣିତ ହେଲା ଏବଂ ଓଡ଼ିଶାରେ ଭି.ପି. ସିଂହଙ୍କ ବାର୍ତ୍ତାବହମାନେ ବିଶେଷ କୌଣସି ରାଜନୈତିକ ସୁଯୋଗ ଆଉ କରିପାରିଲେ ନାହିଁ। ଏଥିପାଇଁ ଅନେକ କାରଣ ରହିଛି, ତାହା ଏଠାରେ ଆଲୋଚନା କରିବା ଅପ୍ରାସଙ୍ଗିକ ହେବ। ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଶା ତଥା ଭାରତରେ ଏକ ନୂତନ ଚିନ୍ତାଧାରା ତଥା ଗଣତାନ୍ତ୍ରିକ ସମାଜବାଦୀ ପ୍ରଜ୍ଞାର ଅନିର୍ବାଣ ଦୀପଶିଖା ହେଉଛନ୍ତି ଶ୍ରୀଯୁକ୍ତ ରବି ରାୟ। ତାଙ୍କ ସଂପର୍କରେ ଅଧିକ ଆଲୋଚନା କରି ପ୍ରବନ୍ଧକୁ ବଢ଼ାଇବାକୁ ଇଚ୍ଛା କରୁନାହିଁ। କେବଳ ଏତିକ ପ୍ରାର୍ଥନା କରୁଛି, "ହେ ପ୍ରଭୁ! ଶ୍ରୀଯୁକ୍ତ ରାୟଙ୍କ ଭଳି ବୈପ୍ଲବିକ ଦୀପଶିଖାଟିକୁ ଅନେକ ବର୍ଷ ଯାଏଁ ପ୍ରଜ୍ୱଳିତ ରଖି ଆମକୁ ଅନ୍ଧକାର ବିରୁଦ୍ଧରେ ସଂଘର୍ଷ କରିବାପାଇଁ ପଥ ପ୍ରଦର୍ଶନ କରାଉଥାଅ।"

■■■

# ରବି ରାୟଙ୍କୁ ଯେତିକି ଜାଣିଛି

**ସୁଶ୍ରୀ ଲକ୍ଷ୍ମୀପ୍ରିୟା ମହାନ୍ତି**

୧୯୬୭ ମସିହା ପୁରୀ ଲୋକସଭା ଆସନରୁ କଂଗ୍ରେସ ପ୍ରାର୍ଥୀ ବିଭୁଧେନ୍ଦ୍ର ମିଶ୍ରଙ୍କୁ ହରାଇ ସୋସାଲିଷ୍ଟ ପାର୍ଟିରୁ ରବି ରାୟ ୪୧ ବର୍ଷ ବୟସରେ ନିର୍ବାଚିତ ହୋଇଥିଲେ। ସେହି ଦିନଠାରୁ ରବି ରାୟଙ୍କୁ ଜାଣିଛି। ଯଦିଓ ଛୋଟପିଲା ବୟସ ମୋର ଥିଲା ତଥାପି ସମ୍ବାଦପତ୍ର ଜରିଆରେ ରେଡ଼ିଓରୁ ଖବର ଶୁଣିବା, ଗାଁଗଣ୍ଡାରେ ଆଲୋଚନା ହେବାରେ ମୁଁ ରବି ରାୟଙ୍କୁ ଜାଣିଥିଲି। ସେ ଜଣେ ଲୋହିଆ ବିଚ୍ଚରର ସମାଜବାଦୀ ନେତା। ଲୋକ କହୁଥାନ୍ତି ଯାହା ହେଉ ଓଡ଼ିଶାର ଇଜ୍ଜତ ରହିଗଲା। ଜଣେ ଟାଣୁଆ ଟୋକା ଲୋକସଭାକୁ ଯାଇଛି। ଦେଖାଯାଉ କ'ଣ ହେଉଛି। ସମସ୍ତେ ଖୁସିହେବା ସାଥିରେ ମୁଁ ମଧ ଖୁସି ହେଉଥାଏ। ଜଗତସିଂହପୁର ଅଞ୍ଚଳ ଏକ ସମାଜବାଦ ଆନ୍ଦୋଳନର ମୁଖ୍ୟ ଭୂମିକା ଗ୍ରହଣ କରୁଥିବା ଅଞ୍ଚଳ ନାମରେ ପରିଚିତ। ତେଣୁ ସମାଜବାଦ ବିଚ୍ଚରର ଛାପ ମୋ ଉପରେ ମଧ ପଡ଼ିଥିଲା। ରବି ରାୟଙ୍କୁ ଭେଟିବାର ଆଗ୍ରହ ବଢ଼ିଲା। ମନେମନେ ଭାବୁଥିଲି ଏତେ ବଡ଼ ଯୋଗ୍ୟ ବ୍ୟକ୍ତିଙ୍କ ସାଥିରେ ମୋର କେବେ ସାକ୍ଷାତ ହୁଅନ୍ତା କି ?

୧୯୭୦ ମସିହାରେ ମୁଁ ମାଟ୍ରିକ୍ ପାସ୍ କରି ରାଉରକେଲାରେ ପାଠ ପଢ଼ିଲି। ମୁଁ ଡି.ଏ.ଭି. କଲେଜରେ ପଢୁଥିଲାବେଳେ ଅଧାପକ ଡି.ଏନ୍. ସିଂ ନାମକ ଏକ ଲୋହିଆବାଦୀ ବିଚ୍ଚରକଙ୍କ ସଂସ୍ପର୍ଶରେ ଆସିଲି। ମୋର ଜଣେ ସମ୍ପର୍କୀୟ ଭାଇ, ଶ୍ରୀ ବ୍ରଜକିଶୋର ମହାନ୍ତି, ଶ୍ରମିକ ସଂଗଠକ, ପରବର୍ତ୍ତୀ ସମୟରେ ବିଧାନସଭା ସଦସ୍ୟ ହୋଇଥିଲେ। ସେ ଲୋହିଆଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ। ତାଙ୍କ ସମ୍ପର୍କରେ ମୁଁ ଆସିଲି। ଯେଉଁଠି ସଭା, ଆଲୋଚନାମାନ ହୁଏ, ମୁଁ ସେଥିରେ ଭାଗ ନେବାର ସୁଯୋଗ ପାଇଲି। ଲୋହିଆଙ୍କ ବିଚ୍ଚର ଓ ତାଙ୍କ ବିଚ୍ଚର ସହିତ ଯୋଡ଼ି ହୋଇଥିବା ଯୁବ ନେତୃତ୍ୱ ନେଉଥିବା ରବି ରାୟଙ୍କ ବିଷୟରେ ଜାଣିବାକୁ ପାଇଥିଲି। ୧୯୭୪ ମସିହାରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ଭ୍ରଷ୍ଟାଚ୍ଚର ବିରୁଦ୍ଧରେ ଏକ ଜନଆନ୍ଦୋଳନ ମୁଣ୍ଡ ଟେକୁଥାଏ। ଓଡ଼ିଶାରେ ସ୍ୱତନ୍ତ୍ର ପାର୍ଟି, ଉତ୍କଳ କଂଗ୍ରେସ ଓ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ମିଶ୍ରଣରେ ପ୍ରଗତିଶୀଳ ତରଫରୁ ଅନେକ ଚଞ୍ଚକତା ସତ୍ତ୍ୱେ ମଧ ରବି ରାୟ

ରାଜ୍ୟସଭାକୁ ନିର୍ବାଚିତ ହେଲେ। ଓଡ଼ିଶାର ଗୌରବ ବଢ଼ାଇବା ସହ ସେ ଭ୍ରଷ୍ଟାଚାର ବିରୁଦ୍ଧରେ ଆନ୍ଦୋଳନକୁ ଆହୁରି ତ୍ୱରାନ୍ୱିତ କରିଥିଲେ। ଦେଶରେ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱକୁ ଆଗକୁ ନେବାରେ ରବି ରାୟଙ୍କର ମଧ୍ୟ ଅନ୍ୟ ସମାଜବାଦୀଙ୍କ ଭଳି ମୁଖ୍ୟ ଭୂମିକା ଥିଲା। ଓଡ଼ିଶାରେ ଅନେକ ସାଥୀ ତାଙ୍କ ସହିତ ରହି ତାଙ୍କ ନେତୃତ୍ୱକୁ ସ୍ୱୀକାର କରୁଥାନ୍ତି। ସେମାନଙ୍କ ସହିତ ମୁଁ ମଧ୍ୟ ବିଚାରରେ ଯୋଡ଼ି ହୋଇ କିଛି କିଛି କାର୍ଯ୍ୟ କରିବାର ପ୍ରେରଣା ପାଇଲି। କ୍ଷମତାସୀନ ରାଜନୀତିରେ ଭ୍ରଷ୍ଟାଚାର, କ୍ଷମତାର ଅପବ୍ୟବହାର, ଯୁବକମାନଙ୍କ ନେତୃତ୍ୱ ନେବାକୁ ରବି ରାୟ ବିଭିନ୍ନ ମହଲରେ ତାଙ୍କର ମତାମତ ରଖୁଥାନ୍ତି। ୧୯୭୫ ମସିହା ଜୁନ୍ ୨୫ ତାରିଖ ମଧ୍ୟ ରାତ୍ରିରେ ଜରୁରୀକାଳୀନ ପରିସ୍ଥିତି ଜାରିହେଲା। ଅନେକ ନେତୃତ୍ୱଙ୍କୁ ଜେଲ୍‌ରେ ରଖାଗଲା। ଜୁଲାଇ ୧୨ ତାରିଖ ଦିନ ରବି ରାୟ ଜେଲ୍‌କୁ ଗଲେ। ଏହି ଆନ୍ଦୋଳନ ବହୁ ତୀବ୍ରତର ହୋଇଥିଲା। ବିଶେଷକରି ଓଡ଼ିଶାରେ ମଧ୍ୟ ତା'ର ପ୍ରଭାବ ଅନେକ ତୀବ୍ରତର ଥିଲା। ୧୯୭୭ ମସିହାରେ ମାର୍ଚ୍ଚ ୨୩ ତାରିଖ ଲୋହିଆଙ୍କ ଜନ୍ମତିଥି ଏବଂ ଭଗତ ସିଂହଙ୍କର ସହୀଦ ଦିବସରେ ଜନତା ପାର୍ଟିର ସରକାର ଗଠନ ହେଲା। ଚନ୍ଦ୍ରଶେଖର ଦଳର ସଭାପତି ଭାବରେ ମେ ପହିଲାରେ ଶପଥ ନେଲେ ଓ ରବି ରାୟ ସର୍ବଭାରତୀୟ ସାଧାରଣ ସମ୍ପାଦକ ଭାବରେ ଦାୟିତ୍ୱ ଗ୍ରହଣ କଲେ। ଏହି ସମୟରେ ରବି ରାୟଙ୍କ ସହିତ ମୋର ଦଳ ଅଫିସରେ ସାକ୍ଷାତ୍ ହୋଇଥିଲା। ତାଙ୍କର ଆପଣାର ଭଳି କଥା କହିବା ନାଁ, ଶିକ୍ଷାଗତ ଯୋଗ୍ୟତା, ବାପାଙ୍କ ନାମ, ଗାଁ ଓ ବୋଉ ନାମ ପଚାରି ବୁଝିବାର ଯେଉଁ ଆତ୍ମୀୟତା ଅନୁଭବ କରିଥିଲି ତାହା ଅନ୍ୟ କାହାଠାରୁ ପାଇନଥିଲି। ଯଦିଓ ତା'ପୂର୍ବରୁ ରାଉରକେଲାରେ ସୁରେନ୍ଦ୍ର ଦ୍ୱିବେଦୀ, ରାଜକିଶୋର ସାମନ୍ତରାୟ, ବାଙ୍କବିହାରୀ ଦାସ, ଭାଗବତ ବେହେରାଙ୍କ ଭଳି ଅନେକ ସମାଜବାଦୀ ନେତାଙ୍କ ସହିତ ମୋର ପରିଚୟ ଥିଲା ଓ ହିନ୍ଦ୍ ମଜଦୁର୍ ସଭା ଶ୍ରମିକ ସଂଗଠନ ସହିତ ଜଡ଼ିତ ହୋଇ ଅନେକ କାର୍ଯ୍ୟ କରୁଥିଲି କିନ୍ତୁ ରବି ରାୟ ଥିଲେ ସ୍ୱତନ୍ତ୍ର।

ରବି ରାୟଙ୍କ ମହିଳାମାନଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଥିଲା। ମହିଳାମାନଙ୍କର ଉତ୍ଥାନ ଓ ସମାଜରେ ତାଙ୍କର ସ୍ୱତନ୍ତ୍ର ସ୍ଥାନ ରହୁ ଏହା ସବୁବେଳେ ତାଙ୍କର ବିଚାରରେ ଥିଲା। ସେ ମୋତେ କହିଥିଲେ ମାଟ୍ରିକ୍ ସାର୍ଟିଫିକେଟ୍‌ରେ ବାପାଙ୍କ ନାଁ ଲେଖାଯାଉଛି ମା'ଙ୍କ ନାମ ଲେଖାଯାଉ ନାହିଁ କାହିଁକି ? ଏ ବିଷୟରେ କହିବ କିଏ ? ମହିଳାମାନେ ଯଦି ଏ କଥା ନ ଉଠାଇବେ, ତେବେ ସମାଜରେ ମାତୃ ପରିଚୟ ମିଳିବ କିପରି ? ଆଜି ଯେତେବେଳେ ପିଲାମାନଙ୍କ ସାର୍ଟିଫିକେଟ୍‌ରେ ମା'ର ନାମ ଦେଖେ ମୋର ରବି ରାୟଙ୍କର ସେହି ୩୫ ବର୍ଷ ତଳର ତାଙ୍କର ଦୂରଦୃଷ୍ଟି କଥା ମନେପଡ଼େ। ସେ ଜଣେ

ଦୂରଦୃଷ୍ଟିସମ୍ପନ୍ନ ଯୁଗଦ୍ରଷ୍ଟା ବ୍ୟକ୍ତି। ସାମ୍ପ୍ରତିକ ରାଜନୈତିକ ଦୃଷ୍ଟିଭଙ୍ଗୀକୁ ଆଖିରେ ରଖି ସବୁ ସମୟରେ କହୁଥିଲେ, "ଏ ସମାଜ କ'ଣ ହେବାକୁ ଯାଉଛି ? ମୋ ଜୀବଦଶାରେ ଏଭଳି ଘଟଣା ଘଟୁଛି ?" ଏହାର ବିକଳ୍ପ ବିଚର ମଧ୍ୟ ରଖୁଥିଲେ ଯୁବଛାତ୍ର ସମାଜର ଉତ୍‌ଥାନ। ସାମୂହିକ ଆଲୋଚନା ବିଗ୍ରର ବିମର୍ଷରେ ତଥ୍ୟ ଖୋଜିବା ତାଙ୍କର ପରାମର୍ଶ ରହୁଥିଲା। ସାମ୍ପ୍ରଦାୟିକ ମନୋଭାବରୁ ଦୂରରେ ରହିବା, ଦେଶର ଅଖଣ୍ଡତାକୁ ବଜାୟ ରଖିବା, ସାମ୍ପ୍ରଦାୟିକ ଦଳକୁ ବିରୋଧ କରିବା ତାଙ୍କର ଯୁବକମାନଙ୍କୁ ବଡ଼ ପରାମର୍ଶ ଥିଲା।

୧୯୭୮ ମସିହାରେ କେନ୍ଦ୍ରର ସ୍ୱାସ୍ଥ୍ୟମନ୍ତ୍ରୀ ଭାବରେ ରବି ରାୟ ଦାୟିତ୍ୱ ଗ୍ରହଣ କରିଥିଲେ। ତାଙ୍କ ସମୟରେ ଦେଶରେ ନୂତନ ଡାକ୍ତର ପଦବୀ ସୃଷ୍ଟିକରିବା, ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରମାନଙ୍କରେ ସ୍ୱାସ୍ଥ୍ୟକର୍ମୀ ପଦବୀ ସୃଷ୍ଟିକରିବା ଏବଂ ଗ୍ରାମୀଣ ସ୍ୱାସ୍ଥ୍ୟସେବାକୁ ତ୍ୱରାନ୍ୱିତ କରିବାପାଇଁ ଭ୍ରାମ୍ୟମାଣ ଅସ୍ତ୍ରୋପଚାର ବ୍ୟବସ୍ଥା ଥିବା ଆମ୍ବୁଲାନ୍ସ ସେବା ଯୋଗାଇ ଦେବା ଥିଲା ତାଙ୍କର ଅବଦାନ। ୧୯୭୭ ମସିହାରେ ଆନ୍ଦୋଳନ ଫଳରେ ଯେଉଁ ଜନତା ପାର୍ଟି ତିଆରି ହୋଇଥିଲା ତା'ର ବିଫଳତା ଫଳରେ ୧୯୭୮ ମସିହାରେ ସରକାର କରିବାର କ୍ଷମତା ହରାଇଥିଲା ଦଳ। ରବି ରାୟଙ୍କ ସ୍ପଷ୍ଟ ମତ ଥିଲା "ସରକାର ଗୋଟିଏ ଆଦର୍ଶରେ ତିଆରି ହୁଏ, ବିଚ୍ୟୁତ ହେଲେ, ଅସମର୍ଥ ହେଲେ ସରକାର ଭାଙ୍ଗିବ, ଏଥିରେ ବିବ୍ରତ ହେବାର କ'ଣ ଅଛି ?" ସରକାରକୁ ଆସିବାପାଇଁ ରାଜନୀତି ହୁଏ ନାହିଁ, ଲୋକଙ୍କ କାର୍ଯ୍ୟ କରିବାପାଇଁ ସରକାର ତିଆରି ହୁଏ। ତାଙ୍କ ନିକଟରେ ଜିତିବା ହାରିବାରେ କୌଣସି ଫରକ ନଥାଏ। ୧୯୮୦ ଓ ୧୯୮୫ ମସିହାରେ ଲୋକସଭା ନିର୍ବାଚନରେ ଜଗତସିଂହପୁର ନିର୍ବାଚନ ମଣ୍ଡଳୀରୁ ଦୁଇଥର ଅସଫଳ ପରେ ମଧ୍ୟ ସେ ଜଗତସିଂହପୁର ଲୋକଙ୍କୁ ଆପଣାର ମନେକରନ୍ତି। ନିର୍ବାଚନରେ ତାଙ୍କ ସହିତ ଅନେକ କାର୍ଯ୍ୟ କରିବାର ସୁଯୋଗ ପାଇଛି। ତାଙ୍କର କାର୍ଯ୍ୟଶୈଳୀ ନିର୍ବାଚନ କାର୍ଯ୍ୟର ସଚ୍ଚୋଟତା ବହୁତ କମ୍ ବ୍ୟକ୍ତିଙ୍କ ପାଖରେ ଦେଖାଯାଏ। ଆଜିର ନିର୍ବାଚନ ଓ ରବିରାୟଙ୍କ ନିର୍ବାଚନକୁ ତଉଲିଲେ ସହଜରେ ଅନୁମାନ କରିହୁଏ, ସେ କିଭଳି ଲୋକସମ୍ପର୍କ ରଖୁଥିଲେ। ତାଙ୍କ ନିର୍ବାଚନ ସମୟରେ ଏତେଦିନ କାର୍ଯ୍ୟ କରୁଥିଲେ ମଧ୍ୟ କେବେ ଆମ୍ଭେ ଘରେ ବ୍ୟତୀତ ହୋଟେଲରେ ଖାଇନଥିଲୁ। ସ୍ୱଳ୍ପ ଖର୍ଚ୍ଚରେ କିପରି ନିର୍ବାଚନ ଲଢ଼ିହେବ ତାଙ୍କଠାରୁ ଶିଖିବାର କଥା। ଶୁଣିଥିଲି ପୁରୀ ଲୋକସଭାରେ ମାତ୍ର ୧୭ ହଜାର ଟଙ୍କାରେ ସେ ନିର୍ବାଚନ ଲଢ଼ି ଜିତିଥିଲେ। ୧୯୮୯ ମସିହାରେ ରବିରାୟ କେନ୍ଦ୍ରାପଡ଼ା ଲୋକସଭା ଆସନରୁ ନିର୍ବାଚନ ଜିତି ଲୋକସଭାକୁ ନିର୍ବାଚିତ ହୋଇଥିଲେ ଓ ସବୁଠାରୁ ବଡ଼ ଗଣତାନ୍ତ୍ରିକ ମେଣ୍ଟ ଜନତାଦଳର ଲୋକସଭାର ଅଧ୍ୟକ୍ଷ ପଦ ଅଳଙ୍କୃତ କରି ଓଡ଼ିଶାର ଗୌରବ ଦ୍ୱିଗୁଣିତ ବଢ଼ାଇ ଓଡ଼ିଆ ଜାତିର ସମ୍ମାନକୁ ଉଚ୍ଚରେ ରଖିଥିଲେ।

୧୯୯୧ ମସିହାରେ ଜନତା ସରକାର ଭାଙ୍ଗିଗଲା। ସଂଖ୍ୟାଲଘୁ ବି.ଜେ.ପି. ସମର୍ଥନରେ କଂଗ୍ରେସ ଦଳ ସରକାର କଲା। ନରସିଂହ ରାଓ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ କଲେ। ଦେଶକୁ ବଡ଼ ଉପହାର ଦେଲେ 'ଗ୍ୟାଟ୍' ନାମକ ଚୁକ୍ତିରେ ଦସ୍ତଖତ କରି। ଦେଶରେ ଜଗତୀକରଣ, ଉଦାରୀକରଣ ଓ ବଜାରୀକରଣ ଯୋଗୁଁ ଘିଅ, ମହୁରେ ଭାସିଯିବାର ପ୍ରତଶ୍ରୁତି ଦେଲେ। ମୁକ୍ତ ଅର୍ଥନୀତିରେ ଦେଶ ଆଗକୁ ଯିବ ଏକଥା ପ୍ରଚାରକଲେ। ଏହାକୁ ବିରୋଧ କରି ରବି ରାୟ ଓ ଚନ୍ଦ୍ରଶେଖରଙ୍କ ଭଳି ଅନେକ ନେତୃତ୍ୱ ପ୍ରତିବାଦ କଲେ। ସେହି ସମୟରେ ହ୍ୟାଙ୍ଗ୍ ଚୁଙ୍ଗ ଗୁଆଲି ନାମକ ଜଣେ ଦକ୍ଷିଣ କୋରିଆର ଚାଷୀ ନକଲି ବିହନର ଶିକାର ହୋଇ ସେହି ଦେଶ ବିରୁଦ୍ଧରେ ପ୍ରତିବାଦ କରି ଆତ୍ମହତ୍ୟା କରିଥିଲେ। ରବି ରାୟ ଏହି କଥାକୁ ବାରମ୍ବାର ଆଲୋଚନା କରି କହୁଥିଲେ ଯେଉଁ ଦେଶର ବିହନକୁ ବ୍ୟବହାର କରି ସେହି ଦେଶର ଚାଷୀ ଆତ୍ମହତ୍ୟା କରେ ସେହି ଦେଶର ବିହନକୁ ବ୍ୟବହାର କରି ଭାରତବର୍ଷର ଚାଷୀ କ'ଣ ଲାଭ ପାଇବ ? ତେଣୁ ଗ୍ୟାଟ୍ ଚୁକ୍ତି ବଳରେ ଭାରତ ବର୍ଷର ଚାଷ, କଳକାରଖାନା, ଶିକ୍ଷା, ସ୍ୱାସ୍ଥ୍ୟ ଓ ଆର୍ଥିକ ବ୍ୟବସ୍ଥା ଭୁଷୁଡ଼ି ପଡ଼ିବ। ପୁଞ୍ଜିପତିମାନେ ଦେଶକୁ ଶୋଷଣ କରିବେ। ଦେଶ ତଳିତଳାନ୍ତ ହେବ । ସେ ଇଂରାଜୀ ସ୍କୁଲ ଓ ବଡ଼ଲୋକଙ୍କ ପାଇଁ ଦାମୀ ସ୍କୁଲର ବିରୋଧୀ ଥିଲେ। ଶିକ୍ଷାଦାନ ବ୍ୟବସ୍ଥା, ପ୍ରତି ପିଲାଙ୍କ ପ୍ରତି ସମାନ ହେବା ଉଚିତ ବୋଲି କହୁଥିଲେ। କଥାଛଳରେ ହସିହସି କୁହନ୍ତି ବାପାମାଆମାନେ କୋମଳମତି ଶିଶୁକୁ ୨୦ କେଜିର ବହି ବ୍ୟାଗ୍ ଧରାଇ ତାଙ୍କର ଶୈଶବ ନଷ୍ଟ କରୁଛନ୍ତି। ଭବିଷ୍ୟତରେ ଏଇ ଶିଶୁ କ'ଣ ହେବ ? ମ୍ୟାନେଜ୍‌ମେଣ୍ଟ ପାଠକୁ ସବୁବେଳେ ସମାଲୋଚନା କରି କୁହନ୍ତି ଏହାର ଅର୍ଥ କ'ଣ ? ଯେଉଁ ଭାରତୀୟ ସମାଜରେ ମହିଳା ହେଉଛନ୍ତି ସମାଜର ସବୁଠାରୁ ବଡ଼ ମ୍ୟାନେଜର ସେ ସମାଜରେ ମ୍ୟାନେଜ୍‌ମେଣ୍ଟ ଶିକ୍ଷା କ'ଣ ମାଆମାନେ ପିଲାଙ୍କୁ ଦେଇ ନଥିବେ ? ଦେଶକୁ ବିକ୍ରି କରିବାର ମସୁଧା ଚାଲିଛି। ସମସ୍ତଙ୍କୁ ବୁଝାଇବାକୁ ପଡ଼ିବ। ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଖରେ ଦେଶ ବନ୍ଧା ପଡ଼ିଲାଣି।

ଦେଶରେ ଘିଅ ମହୁ ଭସାଇବାର ମିଥ୍ୟା ପ୍ରତିଶ୍ରୁତି ଦେଇ ପୁଞ୍ଜିପତିମାନଙ୍କୁ ପ୍ରୋତ୍ସାହନ ଦେଇ ଗରିବଙ୍କୁ ଆହୁରି ଗରିବ କରିବା ଛଡ଼ା ଆଉ କିଛି ନାହିଁ। ମୋ ଭଳି ଲୋକଙ୍କ ପାଇଁ ଏହା ବଡ଼ ଅସହ୍ୟ। ସମାଜବାଦ ବିଚାର ଢାଞ୍ଚାରେ ୧୯୯୪ ମସିହାର ସମତା ପାର୍ଟି ନାମରେ ଜର୍ଜ ଫର୍ଣ୍ଣାଣ୍ଡିଜ୍‌ଙ୍କ ନେତୃତ୍ୱରେ ଦଳ ଗଠନ ହେଲା। ୧୯୮୫ ମସିହା ନିର୍ବାଚନରେ ପ୍ରାର୍ଥୀ ଦେଇ ନିର୍ବାଚନ ଲଢ଼ିଲେ। ରବି ରାୟ ମଧ୍ୟ ଏହାକୁ ସମର୍ଥନ କରିଥିଲେ। କାରଣ ସେ ଚାହୁଁଥିଲେ ଓଡ଼ିଶାରେ ସମାଜବାଦୀମାନେ କ୍ଷମତାକୁ ଆସନ୍ତୁ କିନ୍ତୁ ଏହା ସଫଳ ହୋଇପାରି ନଥିଲା। ପୁନର୍ବାର ସମତାପାର୍ଟି ଦଳ ଏକ ସାମ୍ପ୍ରଦାୟିକ

ଦଳ ସହିତ ମିଳି ନିର୍ବାଚନ ଲଢ଼ିବାପାଇଁ ନିଷ୍ପତ୍ତିକୁ ସେ ଦୃଢ଼ ପ୍ରତିବାଦ କରି ଦଳରୁ ଓହରି ଯାଇଥିଲେ। ଆଉ କେବେ ନିର୍ବାଚନ ନ ଲଢ଼ି କ୍ଷମତା ରାଜନୀତିରୁ ସନ୍ନ୍ୟାସ ନେଇଥିଲେ ମଧ୍ୟ ଦୃଢ଼ ରାଜନୈତିକ ବିଗ୍ଭରକୁ କେବେ ଦୂରେଇ ଯାଇନଥିଲେ।

ତାଙ୍କର ଦୃଢ଼ତା ପାଇଁ ବେଳେବେଳେ ସେ ଭୁଲ୍‌ବୁଝାମଣାର ଶିକାର ହୋଇପାରିଥାନ୍ତି କିନ୍ତୁ ନୀତିରୁ କେବେ ବିଚ୍ୟୁତ ହୋଇନାହାନ୍ତି। ଲୋକସଭାର ବାଚସ୍ପତି ଥିବା ସମୟରେ ନିଜର ପରମମିତ୍ର ଚନ୍ଦ୍ରଶେଖରଙ୍କ ସମାଜବାଦୀ ପାର୍ଟିର ସଭ୍ୟଙ୍କୁ ଦଳବଦଳ ଯୋଗୁଁ ଗୃହରୁ ବହିଷ୍କାର କରିଥିଲେ। ବି.ଜେ.ଡ଼ି ଗଠନ ପରେ ପ୍ରଥମ ବିଧାନସଭା ନିର୍ବାଚନରେ ଦଳର ସଂସଦୀୟ ବୋର୍ଡ଼ର ଅଧ୍ୟକ୍ଷ ବିଜୟ ମହାପାତ୍ରଙ୍କ ଦଳୀୟ ଟିକେଟ୍‌କୁ ଯେତେବେଳେ ପ୍ରତ୍ୟାହାର କରିନିଆଗଲା ବିଗତ ଦିନରେ ଶ୍ରୀ ମହାପାତ୍ର ବିରୋଧୀ ହୋଇଥିଲେ ମଧ୍ୟ ରବି ରାୟ ପ୍ରଥମେ ଏହି କାର୍ଯ୍ୟ ନିନ୍ଦା କରିଥିଲେ। ବିଶାଳ ହୃଦୟର ପରିଚୟ ଦେଇ ସେ କହିଥିଲେ ଏଭଳି ନିଷ୍ପତ୍ତି ସମ୍ବିଧାନ ବିରୋଧୀ ଓ ଦେଶର ଗଣତନ୍ତ୍ର ପ୍ରତି ବିପଦ।

ସେ ଜଣେ ଉଚ୍ଚକୋଟୀର ବିଗ୍ଭରବନ୍ତ ସମ୍ବିଧାନ ରକ୍ଷକ, ଦେଶପ୍ରେମୀ ମଣିଷଭଳି ମଣିଷ ଅଟନ୍ତି। ତାଙ୍କ ପାଖରେ ହିଂସା, କପଟ, କ୍ରୋଧ କେବେ ବି ମୁଁ ଦେଖିନାହିଁ। ସେ ବେନିୟମ କାର୍ଯ୍ୟକୁ କେବେ ବି ପ୍ରଶୟ ଦେଇନାହାନ୍ତି। ଜଣେ କିଏ ଚିଠିଟିଏ ଦେଲେ ଚିଠିର ଉତ୍ତରଟିର ନିଶ୍ଚୟ ମିଳେ। ବାରମ୍ବାର ମୁଁ ତାଙ୍କୁ ଚିଠି ଲେଖି ଚିଠିଟିଏ ପାଇଲେ ମୋ ମନ ଗର୍ବରେ ଫୁଲିଉଠେ। ଭୁଲ୍ ଦେଖିଲେ ଆକଟ କରିବାର ଯେଉଁ ସ୍ନେହପୂର୍ଣ୍ଣ ଶୈଳୀ ସେଥିରେ ସେ ମୋର ପ୍ରକୃତ ମୁରବୀ ପାଲଟି ଯାଆନ୍ତି। ଭକ୍ତିଭାବ ନେଇ ମୁଁ ମୋର ଭୁଲ୍ ନ ଦୋହରାଇବାର ସଂକଳ୍ପ ଆପେ ଆପେ ନେଇଯାଏ। ତାଙ୍କ ସ୍ନେହ ଜହ୍ନର ଜ୍ୟୋସ୍ନା ଭଳି ସ୍ନିଗ୍ଧ, ଶାନ୍ତ ଓ ଶୀତଳ, ତାଙ୍କର ହସ ଅତ୍ୟନ୍ତ ଉତ୍‌ଫୁଲ୍ଲ ଓ ତାଙ୍କର ବ୍ୟକ୍ତିତ୍ୱର ତେଜ ତାଙ୍କ ନାମକୁ ଚରିତାର୍ଥ କରିଛି।

ମୋର ସୌଭାଗ୍ୟ ତାଙ୍କର ଶ୍ରଦ୍ଧାଭାଜନ ହେବା ସହ ମୁଁ ତାଙ୍କ ବୃହତ୍ ପରିବାରର ଜଣେ ସଦସ୍ୟା ଭାବେ ସମସ୍ତଙ୍କର ସ୍ନେହ ପାଇଛି। ବିଶେଷକରି ତାଙ୍କ ଦୁଃଖସୁଖର ଚିରସାଥୀ, ସହଧର୍ମିଣୀ, ସକର୍ମିଣୀ ଓ ଜଣେ ଖାଣ୍ଟି ସମାଜବାଦୀ ମହିଳା ମୋର ସମ୍ମାନୀୟ ସ୍ନେହର ଅପା ଡାଃ ସରସ୍ୱତୀ ସ୍ୱାଇଁଙ୍କ ଅକୁଣ୍ଠ ଶ୍ରଦ୍ଧାର ଭାଜନ ହୋଇପାରିଛି ଯାହା ମତେ ପ୍ରତିମୁହୂର୍ତ୍ତରେ ପ୍ରେରଣା ଦେଇ ଆଗକୁ ବଢ଼ାଇଛି। ତାଙ୍କର ଦୀର୍ଘତମ ଜୀବନ କାମନା କରିବା ସହିତ ରବି ରାୟ (ରବି ଭାଇଙ୍କର) ଦୀର୍ଘମୟ ଜୀବନ କାମନା କରୁଛି।

■ ■ ■



ରବି ରାୟ, ସ୍ୱାଧୀନତା ପରବର୍ତ୍ତୀ ସମୟରେ ରାଜନୀତିର ଅନ୍ୟତମ ତୁଙ୍ଗ ପୁରୁଷ। ଭାରତୀୟ ସମାଜବାଦୀ ଆନ୍ଦୋଳନର ଏକ ଉତ୍ସର୍ଗୀକୃତ ନାମ। ମୂଲ୍ୟବୋଧଭିତ୍ତିକ ରାଜନୀତିର ଏକ ସଚ୍ଚୋଟ ପ୍ରବକ୍ତା। ଛାତ୍ରଜୀବନରୁ ହିଁ ଆଦର୍ଶବାଦିତା ତାଙ୍କର ପୁଞ୍ଜି। ଜଣେ ନିଷ୍ଠାପର ସାଂସଦ ଭାବରେ ଦେଶର ସଂହତି, ଧର୍ମନିରପେକ୍ଷତାର ସୁରକ୍ଷା ସହ ଆର୍ଥିକ ଓ ସାମାଜିକ ନ୍ୟାୟ ପାଇଁ ସର୍ବଦା ଆଗଧାଡ଼ିର ଜାତୀୟ ନେତାଙ୍କ ଭୂମିକାରେ ପ୍ରତିନିଧିତ୍ୱର ଦାୟିତ୍ୱ ସମ୍ପାଦନ କରିଛନ୍ତି। କେନ୍ଦ୍ରରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ଭାବରେ ସେ ଯେପରି ନିଜର ଦକ୍ଷତା ପ୍ରତିପାଦନ କରିପାରିଛନ୍ତି, ନବମ ଲୋକସଭାର ବାଚସ୍ପତି ଭୂମିକାରେ ସେହିପରି ପ୍ରଦର୍ଶନ କରିଛନ୍ତି ପଟାନ୍ତରହୀନ ସାହସୀକତା। ଡକ୍ଟର ରାମମନୋହର ଲୋହିଆଙ୍କଠାରୁ ଆରମ୍ଭ କରି ଜୟପ୍ରକାଶ ନାରାୟଣଙ୍କ ପର୍ଯ୍ୟନ୍ତ ପ୍ରଲମ୍ବିତ କ୍ରାନ୍ତିଧାରାର ସେ ଏକ ଉଜ୍ଜ୍ୱଳ ମଶାଲ। ସାଧାରଣ ମଣିଷର ସ୍ଥିତି ଓ ଅସ୍ତିତ୍ୱକୁ ବିପନ୍ନ କରୁଥିବା ସମସ୍ତ ପ୍ରକ୍ରିୟା ବିରୋଧରେ ଏକ ବେସାଲିସ ସ୍ୱର। ବ୍ୟକ୍ତିଗତ ଜୀବନରେ ତାଙ୍କର ଚଳିଚଳନ ଯେପରି ସରଳ, ରାଜନୈତିକ ଜୀବନ ସେହିପରି ନିଷ୍କପଟ। ସାଧୁତା ତାଙ୍କ ଜୀବନର ବଳିଷ୍ଠ ପାଥେୟ। କ୍ଷମତା ନୁହେଁ, ସମତା ହିଁ ତାଙ୍କ ଅଙ୍ଗୀକାରବଦ୍ଧ ଜୀବନର ବିରଳ ଆଦର୍ଶ।

–ପ୍ରକାଶକ

ଲୋହିଆ ଏକାଡେମୀ ଟ୍ରଷ୍ଟ,
ଭୁବନେଶ୍ୱର